ଭକ୍ତକବି ୰ ଅଚ୍ୟୁତାନନ୍ଦ ଦାସଙ୍କ କୃତ

# ସପ୍ତମଖଣ୍ଡ ହରିବଂଶ



ସପ୍ତମ ଖଣ୍ଡ
ମୂଲ୍ୟ
ଟ ୭ ୫୦

ପ୍ରକାଶକ—
ଶ୍ରୀରାଧାରମଣ ପୁସ୍ତକାଳୟ

# ହରିବଂଶ ସପ୍ତମ ଖଣ୍ଡର

# ସୂଚୀ







# ସମ୍ପୂର୍ଣ୍ଣ ହରିବଂଶ

## ସପ୍ତମ ଖଣ୍ଡ



ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ । ୧ ।
ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋ ରସିକା ଭୁବି ଭାବୁକାଃ ॥



### ଦଶ ଅବତାର ସ୍ତୁତି

ବନ୍ଦଇ ଶ୍ରୀଜଗନ୍ନାଥ ମତ୍ସ୍ୟରୂପଧାରୀ
ସପତ ସମୁଦ୍ରେ ପଶି ଶଙ୍ଖାସୁର ମାରି ।
ବେଦ ପୋଥି ଉଦ୍ଧରିଣ ବ୍ରହ୍ମାରେ ତୁ ଦେଲୁ
ବେଦବନ୍ତଙ୍କର ମନ ତୃପ୍ତି କରାଇଲୁ ।
ସମୁଦ୍ର ମନ୍ଥନକାଳେ କୂର୍ମରୂପ ଧରି
ପୃଥ୍ୱୀଭାର ଭାର ଉଦ୍ଧରିଲୁ ଦଇତ୍ୟାରି ।
କୂର୍ମରୂପର ମହିମା କହି ହେବ ନାହିଁ
ଦେବ ଦାନବରେ ତାହା ଗୋଚର ନୁହଇ ।
ବରାହ ମୂର୍ତ୍ତି ଧଇଲ ତୁମ୍ଭେ ଯେତେବେଳେ
ଦନ୍ତେକ ମାତ୍ରୁଁ ଫୁଟିଲି ସପତ ପାତାଳେ ।
କୂର୍ମର ପିଠିରେ ଦନ୍ତ ଫୁଟିଲାକ ଯାଇ
ଅନ୍ୟ ଦନ୍ତେ ବିଦାରିଲୁ ହିରଣ୍ୟାକ୍ଷେ ତୁହି ।
ପ୍ରହ୍ଲାଦ ଛଳେ ନୃସିଂହ ସ୍ୱରୂପକୁ ଧରି
ନଖାଗ୍ରେ ତା ପିତା ବକ୍ଷ ପକାଇଲୁ ଚିରି ।
ତାହାକୁ ସ୍ୱର୍ଗରେ ତୁହି ଇନ୍ଦ୍ର କଲୁ ନେଇ
ଭକତବତ୍ସଳ ନାମ ତୋର ଭବଗ୍ରାହୀ ।
ବାମନରୂପେ ବଳିକୁ ପାତାଳେ ଚାପିଲୁ
ଦ୍ୱାଦଶାଙ୍ଗୁଳ କାୟାରେ ବ୍ରହ୍ମାଣ୍ଡ ଘୋଟିଲୁ
ଏକ ପାଦ ବଢ଼ାଇଣ ଦେଲୁ ସ୍ୱର୍ଗପୁରେ
ତାଳରେ ଚୌରାଶୀ କାଠି ଗଙ୍ଗା ବେଦବରେ
ନଖର କୋଣରେ ଗଙ୍ଗା ଲୁଚିଲେ ଗୋସାଇଁ
ଲଜ୍ଜା ପାଇ ବେଦବର ଗଳିକ ପଳାଇ ।
ପର୍ଶୁରାମରୂପେ ଛିନ୍ନଛନ୍ଦ କଲୁ ମହୀ
କ୍ଷତ୍ରୀଦ୍ରୋହୀ ତୁମ୍ଭ ପରି ସମ ନୋହେ କେହି
ମାନଙ୍ଗି କନ୍ୟାରୂପରେ ଜନ୍ମିଲୁ ଶ୍ରୀହରି
ବୈନେତନକୁ ବଧିଲୁ ଭାର୍ଯ୍ୟା ରୂପ ଧରି ।
ପୁଣି ରାମଚନ୍ଦ୍ର ରୂପେ ହେଲୁ ଅବତାର
ତାଡ଼କାକୁ ବିନାଶିଲୁ ବାର ବରଷର ।
ସୀତା ଛଳେ ଲଙ୍କାପୁରେ ରାବଣକୁ ମାରି
ରାବଣାରି ନାମକୁ ତୁ ବହିଲୁ ଦୈତ୍ୟାରି ।

ରଙ୍ଗାବତୀରେ ରମିଲୁ ମଧୁପୁରେ ଯାଇ
ବସୁଦେବ ଲୁଚାଇଲେ କଂସ ଭୟ ପାଇ ।
ଅଷ୍ଟ ବର୍ଷ ଯାଏ ତହିଁ ବଢ଼ିଲୁ ଶ୍ରୀଧର
ଅଭିଶାପରୁ ମୁକତ କଲୁ ମୁନିବର
ସେଠାରୁ ଆସିଣ କଂସ କେଶୀ ନାଶ କଲୁ
ଅସୁରଙ୍କୁ ମାରି ମଲ୍ଲଭାର ଉଶ୍ୱାସିଲୁ ।
ଜରା ଭୟରେ ପଶିଲୁ ଦ୍ୱାରକାନଗରେ
ତହିଁ ବହୁକାଳ ତୁ ରହିଲୁ ଆନନ୍ଦରେ ।
ତହୁଁ ଆସି କଳିଯୁଗେ ଶ୍ରୀନୀଳକନ୍ଦରେ
ଦାରୁବ୍ରହ୍ମରୂପେ ବିଜେ କଲୁ ଚକ୍ରଧରେ ।
ଥୋକାଏ ଦିନ ଶବର ପାଦ ପୂଜୁଥିଲ
ଭୋଗଇଚ୍ଛା ଯେତେବେଳେ ତୋହର ହୋଇଲା
ପ୍ରାସାଦ ଅଟ୍ଟାଳୀମାନ ସବୁ ଗଲା ହୋଇ
ଚତୁର୍ଦ୍ଧାରୂପେ ବସିଲୁ କୁହି ଭାବଗ୍ରାହୀ ।
କଳିଯୁଗର ଅନ୍ତରେ କଳ୍କିରୂପ ଧରି
କଳାଘୋଡ଼ା ଚଢ଼ିକରି ବାହାରିବୁ ହରି ।
ଦୁଷ୍ଟଜନ ମାରି ସନ୍ଥ ଜନ ଉଦ୍ଧାରିବୁ
ତେଣୁକରି ପୃଥ୍ୱୀ ଭାର ଉଶ୍ୱାସ କରିବୁ ।
ବେଳେବେଳେ ଅବତାର ହେଉ ଭଗବାନେ
ପୃଥ୍ୱୀ ଦେବୀକ ଉଦ୍ଧାର କରୁ ନନ୍ଦବାଳେ ।
ନିରନ୍ତରେ ସ୍ମର ନରେ ମଦନଗୋପାଳ
ଭକତବତ୍ସଳ ନାମ ଅଟଇ ତାଙ୍କର ।
ମୋ ନାମ ଅଚ୍ୟୁତ ଦାସ ଅରକ୍ଷ ଅଟଇ
ଅତିହିଁ ଅଧମ ମୂର୍ଖ ଅଟେ ଭାବଗ୍ରାହୀ ।
ଅନ୍ନ ବସ୍ତ୍ର ମୋକ୍ଷଦାତା କରୁଣା ସାଗର
ଖୋଜି ଖୋଜି ଭେଟିଲି ମୁଁ କମଳାର ବର ।
ରଣପୁର ସୀମା ମଧ୍ୟେ ସେ ଗଣ୍ଡ ଗ୍ରାମରେ
ମୋହର ଘର ଅଟଇ ତହିଁର ମଧ୍ୟେ ।
ତହିଁର ରାଜା ଅଟନ୍ତି ପଦ୍ମନ ନରେନ୍ଦ୍ର
ସେହୁ ଆଶ୍ରେ କରିଥାନ୍ତି ପ୍ରଭୁ ଆନନ୍ଦକନ୍ଦ ।
ଖୋଜି ଖୋଜି ଅର୍ଥ ମୁହିଁ ପାଇଲିଇଁ ଯାହା
ଦୟାକରି ମୋତେ ତାହା ଦେଲେ ଲକ୍ଷ୍ମୀନାହା ।
ଶ୍ରୀହରିବଂଶ ପୁରାଣ ମୋତେ ସେହୁ ଦେଲେ
ଆପଣେ ଶ୍ରୀଜଗନ୍ନାଥମୁଖେ ଆଜ୍ଞା କଲେ ।
ଷଡ଼ଖଣ୍ଡ ହରିବଂଶ ବରଣିଲି ଆଣି
ସାତ ଖଣ୍ଡ ସମ୍ପୂର୍ଣ୍ଣେ ଭାଳଇ ପୁଣି ପୁଣି ।
ମଥୁରାମଙ୍ଗଳ ହରିବଂଶ କଲି ଗୀତେ
ସଂକୋଚଭାବରେ ତାହା ଭାଳଇ ମୁଁ ନିତ୍ୟେ
ଶ୍ରୀନାରାୟଣ ଯିବେ ସେ ବଇକୁଣ୍ଠ ଧାମେ
ପୃଥ୍ୱୀର ଜନମାନେ ମୁଁ ଭାଳଇ ମନେ ମନେ ।
ସାଧୁ ଜନମାନଙ୍କୁ ମୁଁ ବହୁତ ଡରଇ
ନୋହିଲା ବୋଲି କହିବେ ସଂକୋଚ କରଇ
ପୁଣି ମୁଁ ଈଶ୍ୱରଇଁ କହିଲେ ଭଗବାନ
ତାହାଙ୍କ ବ୍ୟତୀତ ମୁହିଁ ନ ଜାଣଇ ଆନ ।
ଅଧମ ଜନମାନଙ୍କୁ ଉଦ୍ଧାରିବା ପାଇଁ
ନୀଳଚକ୍ରେ ବାନା ନିରନ୍ତରେ ଉଡ଼ୁଥାଇ ।
ଆରତ ଭଞ୍ଜନ ତୁମ୍ଭେ ଅଟ ଜଗନ୍ନାଥ
ତୁମ୍ଭେ ଦୟା ନ କଲେ ମୁଁ ହୋଇବି ଅନାଥ
କଣ୍ଠରେ ବସିଣ ମୋର କହିବ ପୁରାଣ
ତେବେ ସିନା ଅରକ୍ଷିତ ପାଇବ କାରଣ ।
ଶ୍ରୀଜଗମୋହନଙ୍କୁ ମୋ ଅଟେ ସଦା ଆଣ
ଅଚ୍ୟୁତ ଦାସଙ୍କୁ ରକ୍ଷା କର ପୀତବାସ ।

---

## ଦେବସଭାରେ ଯଦୁବଂଶ ବିନାଶର ପରାମର୍ଶ

ଏଥୁ ଅନନ୍ତରେ ପରୀକ୍ଷିତ ନାମେ ରାଜା
ଶୁକ ମୁନିଙ୍କ ଚରଣେ କଲେ ଦିବ୍ୟ ପୂଜା ।
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଶ୍ରୀହରି ପୁରାଣ ମୋତେ କହିବା ବୁଝାଇ ।
କୃପାରେ ଶୁଣିଲି ଷଡ଼ଖଣ୍ଡ ହରିବଂଶ
ଏଥୁଅନ୍ତେ କିସ ହେଲା କହ ବ୍ରହ୍ମଶିଷ୍ୟ ।
ଅଷ୍ଟ ପାଟବଂଶୀ ଘେନି ପାତାଳକୁ ଗଲେ
ସେ ନିରାକାର ବିଷ୍ଣୁଙ୍କୁ ଦରଶନ କଲେ ।
ସମସ୍ତ ଚରିତ ତାଙ୍କୁ କହିଲେ ମଣାଇ
ଶୁଣି ସନ୍ତୋଷ ଲଭିଲେ ନିରାକାର ସାଇଁ ।
ବ୍ରାହ୍ମଣର ପୁତ୍ରଙ୍କୁ ସେ ସମର୍ପିଲେ ଆଣି
ପୃଥ୍ୱୀଭାର ଉଶ୍ୱାସି ଆସିବ ତତକ୍ଷଣି ।
ମେଲାଣି ପାଇ ଅଇଲେ ହରି ଅରଜୁନ
ଦ୍ୱାରକାରେ ପ୍ରବେଶ ହୋଇଲେ ଭଗବାନ
ବ୍ରାହ୍ମଣର ପୁତ୍ର ଅରଜୁନ ଘେନି ଗଲେ
ଚିହ୍ନି ଘେନ ବୋଲି କହି ସମର୍ପିଣ ଦେଲେ
ଥୋକାଏ ଦିନ ଅର୍ଜ୍ଜୁନ ସେଠାରେ ରହିଲେ
ଶ୍ରୀକୃଷ୍ଣଙ୍କୁ ଆଜ୍ଞାମାଗି ହସ୍ତିନାକୁ ଗଲେ ।

ଏଥି ଅନନ୍ତରେ ଜୟ କଲେ ଦାମୋଦର
ବଇକୁଣ୍ଠକୁ କେମନ୍ତେ ଗଲେ ଚକ୍ରଧର ।
ଏହା ମୋତେ ବିସ୍ତାରଣ କହ ମୁନିବର
ତୁମ୍ଭ କୃପାରେ କୃତାର୍ଥ ହୋଇବ ଶରୀର ।
ଏହା କହି ମୁନିଙ୍କର ଚରଣେ ନମିଣ
କୃତାଞ୍ଜଳି ହୋଇ ରଜା ବିନୟୀ ହୋଇଣ ।
ରଜାର ଭକତି ଦେଖି ଶୁକ ମହାସନ୍ତ
ବୋଇଲେ ରାଜନ ଶୁଣ ପୁରାଣର ଗ୍ରନ୍ଥ ।
ମଥୁରାମଙ୍ଗଳ ତୁମ୍ଭେ ଶୁଣ ସାବଧାନେ
ଯେଣୁ ଭାଗ୍ୟବନ୍ତ ତୁ ସେ କହିବା ଯତନେ ।
ଏକମନ ହୋଇ ଶୁଣ ଏ ମହାପୁରାଣ
ବୁଝାଇ କହିବା ତୋତେ ଆହେ ନୃପରାଣ ।
ପୁରାଣ ପୋଥିକି ଫେଡ଼ି କହେ ଶୁକ ଯତି
ଏକମନେ ଶୁଣ ତୁ ବୈଶମ୍ପାୟନ ନୃପତି ।
ଦ୍ୱାରକାପୁରେ ଶ୍ରୀକୃଷ୍ଣ ରହି ବହୁକାଳ
ପୁତ୍ର ପୌତ୍ର ଦେଖି ହେଲେ ବହୁତ ବିହ୍ୱଳ
ନରକାର କଥା ପାସୋରିଲେ ଦେବ ହରି
ବୈକୁଣ୍ଠ ଯିବାର କଥା ମନରୁ ବିସ୍ମରି ।
ସୁଖଭୋଗ ପାଇଣ ସେ ମର୍ତ୍ତରେ ରହିଲେ
ସ୍ୱର୍ଗ ସମ୍ପଦକୁ ଇଚ୍ଛା କେବେହେଁ ନ କଲେ
ନିଶ୍ଚିନ୍ତ ହୋଇଣ ସେ ରହିଲେ ଦ୍ୱାରକାରେ
କୌତୁକ ମାଇଲେ ଯେତେକ ଅସୁର ପୃଥ୍ୱୀରେ
ହସ୍ତିନାପୁରେ ଅର୍ଜ୍ଜୁନ ରହିଲେ ହର୍ଷରେ
ସୁଖେ ରାଜତ୍ୱ କରନ୍ତି ପାଣ୍ଡୁର କୁମରେ ।
ଏମନ୍ତ ପ୍ରକାରେ କାଳ ବଞ୍ଚାଇଣ ଥାନ୍ତି
ଦେବ ଦାନବ କାହାକୁ ମନେ ନ ଗଣନ୍ତି ।
ଯାଙ୍କୁ ନାରାୟଣ ହୋଇଅଛନ୍ତି ସପକ୍ଷ
କୃଷ୍ଣ ବିନା ଆନେ ନ ଜାଣନ୍ତି ପାଣ୍ଡୁବଂଶ ।
ଶୁଣ ହେ ପରୀକ୍ଷ ରଜା ଗୋବିନ୍ଦ କାହାଣୀ
ପଞ୍ଚ ମହାପାତକ ହରଇ ଯାହା ଶୁଣି ।
ବୈଶାଖ ଶୁକ୍ଳ ପକ୍ଷ ଏକାଦଶୀ ଦିନ
ସଭା ମଣ୍ଡାଇଣ ବସିଛନ୍ତି ସୁର-ଗଣ ।
ମରାଳପରେ ଚଢ଼ିଣ ବିରଞ୍ଚି ବେଦବନ୍ତ
ଆସି ପ୍ରବେଶିଲେ ତହୁଁ ସୁଧର୍ମା ସଭାର ।
ବ୍ରହ୍ମାଙ୍କୁ ଦେଖିଣ ଇନ୍ଦ୍ର ଶିରେ କର ଦେଲେ
ବସ ବସ ହୋ ବୋଲିଣ ଆସନ ସେ ଦେଲେ

କପିଳାସ କନ୍ଦରରୁ ବିଜେ ଶୂଳଧର
କଳପାଳକ ବୃଷଭ ବାହନ ଯାଙ୍କର ।
ଡବ ଡବ ଡମ୍ବରୁ ଯେ ବାଜଇ ଶୂନ୍ୟରେ
ଦିଗମ୍ବର ବେଶ ହୋଇଛନ୍ତି ଶୂଳଧରେ ।
ସପ୍ତ ନାଗ ଆଭରଣ ତାହାଙ୍କ ଅଙ୍ଗରେ
ମୁଣ୍ଡମାଳ ଲମ୍ବି ପଡ଼ିଅଛଇ ଗଳାରେ ।
ଗଙ୍ଗା ଯମୁନା ଅଛନ୍ତି ତାହାଙ୍କ ମଥାର
ଶିରରେ ଶୋଭଇ ଅର୍ଦ୍ଧଚନ୍ଦ୍ର ତାହାଙ୍କର ।
ଏମନ୍ତ ପ୍ରକାରେ ବେଶ ହୋଇ ଦେବଦେବ
ସଭାମଧ୍ୟରେ ପ୍ରବେଶ ହେଲେ ସଦାଶିବ ।
ଇନ୍ଦ୍ର ବ୍ରହ୍ମା ଈଶ୍ୱରଙ୍କୁ ଦେଖିଣ ଉଠିଲେ
ମାନ୍ୟବିଧି କରିଣ ସେ ନେଇ ବସାଇଲେ ।
ଏମନ୍ତ ସମୟରେ ଅଇଲେ ବୃହସ୍ପତି
ଅମର ସଭାରେ ଆସି ବସିଲେ ତତ୍କ୍ଷଣେ ।
ପବନ ଦେବ ଅଇଲେ ବେଳ କାଳ ଜାଣି
ତାହାଙ୍କ ପଛେ ଅଇଲେ ନବଗ୍ରହେ ପୁଣି ।
ଚନ୍ଦ୍ର ସୂର୍ଯ୍ୟ ବରୁଣ ଯେ ଅଇଲେ ବହନ
ଏମାନେ ମାନ୍ୟ ପାଇଣ ବସିଲେ ଆସ୍ଥାନ
ଅଶ୍ୱିନୀକୁମାର ସଙ୍ଗେ କୁବେର ଅଇଲେ
ଉଚିତେ ଯେଉଁ ସ୍ଥାନରେ ଯାଇଣ ବସିଲେ ।
ପାତାଳବୈକୁଣ୍ଠପୁରୁ ବାସୁକି ଅଇଲେ
ଗୌରବ ପାଇଣ ସେହୁ ସଭାରେ ବସିଲେ ।
ସୁଖା ଦେବୀ ଆସିଣ ମିଳିଲେ ତତକ୍ଷଣ
ଦେବସଭା ମଧ୍ୟରେ ସେ ଆନନ୍ଦେ ବସନ୍ତି ।
ନାନା ଦେବୀ ଏ ଅଇଲେ ଦିବ୍ୟରୂପ ହୋଇ
ବ୍ରହ୍ମାଙ୍କର ସନ୍ନିଧାନେ ମିଳିଲେକ ଯାଇ ।
ଦେବ ଦେବୀମାନେ ସର୍ବେ ସଭାର ଉପରେ
ସେ ସଭା ମଣ୍ଡାଇଣ ବସିଲେ ଯେ ଯାହାରେ
ଦେବର୍ଷି ବ୍ରହ୍ମର୍ଷି ରାଜର୍ଷିମାନେ
ଏକମୁଖ ହୋଇ ବସିଲେକ ବେଢ଼ାରଣେ ।
ନାରଦର୍ଷି ଅଇଲେ ବୀଣାଯନ୍ତ୍ର ବାଇ
କନଡ଼ା ରାଗରେ କନ୍ଦର୍ପ ଏ ଗୀତ ଗାଇ ।
ଗନ୍ଧର୍ବ ନାଚନ୍ତି ବିଦ୍ୟାଧର ସୁଖ ପାଇ
ସୁଧର୍ମା ସଭା ମହିମା କେ ପାରିବ କହି ।
ଯେ ସଭାରେ ବସିଥିଲେ କ୍ଷୁଧା ତୃଷା ନାହିଁ
ହାଇ ଅଳସ କାହାକୁ କେବେ ନ ମାଡ଼ଇ ।

ଆନନ୍ଦରେ ନୃତ୍ୟ ରଙ୍ଗ ଦେଖୁଛନ୍ତି ବସି
ଇନ୍ଦ୍ରଙ୍କ ମୁଖକୁ ଚାହିଁ ବୃହସ୍ପତି ହସି ।
ବୃହସ୍ପତି ବୋଲନ୍ତି ହେ ଶୁଣ ଦେବରାୟେ
କଥାଏକ କହିବି ମୁଁ କର ମୋତେ ଲୟେ
ବ୍ରହ୍ମାଦି ଶଙ୍କର ତୁମ୍ଭେ ଅଛ ପୁରନ୍ଦର
ବ୍ରହ୍ମର୍ଷି ରାଜର୍ଷି ବସିଛ ସଭାର ।
ଗନ୍ଧର୍ବ ବିଦ୍ୟାଧର କାମ ସହିତେଣ
ସର୍ପାଧିପ ବାସୁକି ଯେ ବାୟବ୍ୟ ବରୁଣ ।
ଏ ସଭାରେ ଅନାଗତ ଜଣେ କେହି ନାହିଁ
ଏକା ଜଣେ ନ ଥିବାରୁ ଅଲଗା ଦିଶଇ ।
ଶୋଭା ପାଉନାହିଁ ଏହି ଦେବସଭା ଗୋଟି
ତୁମ୍ଭେ ଦେବଗଣ ହୋଇଅଛ ଏକଗୋଷ୍ଠି ।
ବ୍ରହ୍ମାଣ୍ଡନାଥ ଅନନ୍ତ ପ୍ରଭୁ ନାରାୟଣ
ନ ଥିବାରୁ ନ ଶୋଭଇ ଏ ସ୍ୱର୍ଗ ଭୁବନ ।
କଂସର ବିନାଶ ପାଇଁ ମର୍ତ୍ତ୍ୟେ ଜନ୍ମାଇଲ
ଏବେ ପୃଥିବୀର ଭାର ଗଲାଣି ସକଳ ।
ବିଷ୍ଣୁ ରହିଲେ ଯାଇଣ ମର୍ତ୍ତ୍ୟମଣ୍ଡଳରେ
ଆଣିବାକୁ ନ ବିଚାର କପାଁ ଦେବାସୁରେ ।
ଅସୁରଙ୍କର ଭୟ ତ ପୃଥିବୀରୁ ଗଲା
ପୃଥିବୀର ଭାରଭର ଉଶ୍ୱାସ ତ ହେଲା ।
ଆଉ କପାଁ ମର୍ତ୍ତ୍ୟପୁରେ ଥିବେ ଭଗବାନ
ଏଥିର ନିମନ୍ତେ ତୁମ୍ଭେ କର ବିଚାରଣ ।
ବୃହସ୍ପତି ଯହୁଁ ଏହା ସଭାରେ କହିଲେ
ବ୍ରହ୍ମାଙ୍କମୁଖକୁ ଇନ୍ଦ୍ର ଦେବତା ଚାହିଁଲେ ।
ବୋଇଲେ ହେ ବେଦବର ଅବଧାନ କର
ବୃହସ୍ପତି ଯା କହିଲେ ଏ ଦେବ ସଭାର ।
ବିଷ୍ଣୁ ନ ଥିବାରୁ ଶୋଭା ନ ପାଇଲା ସଭା
ଏଥିର ବିଚାର କର ଆହେ ସର୍ବଦେବା ।
ଏହି କଥା ଶୁଣି ବ୍ରହ୍ମା ଉଚ୍ଚେ ହାସ୍ୟ କଲେ
ପୁରନ୍ଦରଙ୍କୁ ଚାହିଁଣ ବଚନ ଭାଷିଲେ ।
ବୃହସ୍ପତି ପ୍ରକାଶିଲେ ଯେବଣ ବଚନ
ତହିଁର ଉତ୍ତର ଏବେ ଆମ୍ଭଠାରୁ ଶୁଣ ।
ଆଉ କିଛି ଦିନ ମର୍ତ୍ତ୍ୟେ ଥିବେ ନାରାୟଣ
ପୃଥିବୀର ଭାର ହୋଇନାହିଁ ନିବାରଣ ।
ଯେ ପର୍ଯ୍ୟନ୍ତ ଯଦୁବଂଶ ପୃଥ୍ୱୀରେ ଅଛନ୍ତି
ସହିବ କି ତାହାଙ୍କର ଭାର ବସୁମତୀ ।

ଯେତେବେଳେ ଯଦୁବଂଶ ହେବ ବିନାଶନ
ସେତେବେଳେ ବୈକୁଣ୍ଠକୁ ଆସିବେ ମୋହନ
ଇନ୍ଦ୍ର ବୋଲେ ଅବଧାନ କର ବେଦବର
ଯଦୁବଂଶ ନାଶି କି କରିବେ ଚକ୍ରଧର ।
ସେହି ଅନ୍ତର୍ଯ୍ୟାମୀ ନାଥ ସମସ୍ତ ଜାଣନ୍ତି
ତାହାଙ୍କୁ ବା ଅଗୋଚର କେବଣହିଁ ରୀତି ।
ବେଦବର ଇନ୍ଦ୍ରଙ୍କର ବଚନ ଶୁଣିଲେ
ଦୃଷ୍ଟାନ୍ତର କଥାମାନ ଦେଖାଇ କହିଲେ ।
ଆହେ ଦେବତାଏ ତୁମ୍ଭେ ସବୁ କହିପାର
ହାନି ଲାଭ କଥାମାନ ବିଚାର ନ କର ।
ରାମ ଅବତାରେ ପ୍ରଭୁ ଯେତେ କଷ୍ଟ ପାଇ
ରାବଣକୁ ବଧ କଲେ ବ୍ରହ୍ମାଣ୍ଡ ଗୋସାଇଁ ।
ବ୍ରହ୍ମହତ୍ୟାକାରୀ ବୋଲି ଲଗାଇଲ ବାଦ
ତାଙ୍କ ମୁଖ ନ ଚାହିଁଲ ଏହି ସଭା ମଧ୍ୟ ।
ସେହି କ୍ରୋଧେ ନାରାୟଣ କଂସେ ଜନ୍ମ କରି
ଅନନ୍ତ ଶଯ୍ୟା ଉପରେ ଶୋଇଲେ ଶ୍ରୀହରି ।
ଯେଣୁ ନିଶ୍ଚିନ୍ତେ ଶୋଇଲେ ପ୍ରଭୁ ଜଗନ୍ନାଥ
କେତେ କଷ୍ଟ ଦେଲା ସେହି ଉଗ୍ରସେନ ସୁତ ।
ଏମନ୍ତ ହୋଇଣ କେତେ କାଳ ଗଲା ବହି
ନିଶ୍ଚିନ୍ତେ ଶୋଇଣ ତହିଁ ରହିଲେ ଗୋସାଇଁ ।
ଭୂମିର ବିକଳ ମୁଖେ କହି ନ ସରଇ
ସେଥିପାଇଁ ଭେଟିଗଲା କ୍ଷୀରାବ୍ଧିର ତହିଁ ।
ତାଙ୍କୁ ଯାଇ ଜଣାଇଲା ଅନନ୍ତ ଶଯ୍ୟାର
ଗୁହାରି କରନ୍ତେ ଦୟା କଲେ ଦାମୋଦର ।
ଧଳା କଳା ରୋମ ଦୁଇଗୋଟି ପ୍ରଭୁ ଦେଲେ
ନିଶ୍ଚିନ୍ତ ହୋଇଣ ତହିଁ ନିଦ୍ରାରେ ଶୋଇଲେ
ଯେ ଦୁଇ ରୋମରୁ ରାମ କୃଷ୍ଣ ଅବତାର
ନିରାକାର ବିଷ୍ଣୁ ଛନ୍ତି ଅନନ୍ତ ଶଯ୍ୟାର ।
ଆଉରି କଥାଏ ମୁହିଁ ପାଇଛୁ ବାରତା
ଦ୍ୱିଜପୁତ୍ରେ ହରି ନେଇଥିଲେ ବ୍ରହ୍ମବେତ୍ତା ।
ଅର୍ଜ୍ଜୁନ ପ୍ରତିଜ୍ଞା କରୁଁ କୃଷ୍ଣାର୍ଜ୍ଜୁନ ଗଲେ
କ୍ଷୀର ସମୁଦ୍ରରେ ନିରାକାରଙ୍କୁ ଭେଟିଲେ
ସେ ନିରାକାର ବୋଇଲେ ଏତେକାଳ ଯାଏ
ମର୍ତ୍ତ୍ୟମଣ୍ଡଳରେ କପାଁ ଅଛ ଦେବରାୟେ ।
ପୃଥ୍ୱୀର ମହାଭାର ଉଶ୍ୱାସ ହୋଇଲା
ଅସୁରମାନଙ୍କ ଭୟ ବସୁଧାରୁ ଗଲା ।

ସେ ଦୁହେଁ ବୋଇଲେ ଅଳ୍ପଦିନରେ ଆସିବୁ
ମଞ୍ଚ ମଣ୍ଡଳରେ ଆମ୍ଭେ କପାଁ ରହିଥିବୁ ।
ଏମନ୍ତ ବଚନ କହି ହୋଇଲେ ବାହାର
ବ୍ରାହ୍ମଣ ପୁତ୍ରକୁ ଦେଲେ ଆଣି ତା ଆଗର ।
ଅଳ୍ପ ଦିନରେ ଆସିବେ ପ୍ରଭୁ ଭଗବାନ
ଚିନ୍ତା କପାଇଁ କରୁଛ ଆହେ ଦେବଗଣ ।
ଆମ୍ଭମାନଙ୍କର କଷ୍ଟ ନିବାରଣ କଲେ
ସୁଖଭୋଗ ପାଇଁ ମଞ୍ଚମଣ୍ଡଳେ ରହିଲେ ।
ଲକ୍ଷେ ଷାଠିଏ ସହସ୍ର ତାଙ୍କର ନନ୍ଦନ
ଆସେ କେମନ୍ତେ କରିବେ ତାହାଙ୍କୁ ନିଧନ
ଆରବେଳ ଯିବେ କ୍ଷୀରସମୁଦ୍ର ମଧ୍ୟକୁ
ଏହି କଥା ଜଣାଇବେ ସେ ନିରାକାରଙ୍କୁ ।
ତହୁଁ ଆସି ଦ୍ୱାରକାରେ ହୋଇବେ ପ୍ରବେଶ
ନିଜ ହସ୍ତେ ବିନାଶିବେ ପ୍ରଭୁ ଯଦୁବଂଶ ।
ଏଥିପାଇଁ ତୁମ୍ଭେମାନେ ଚିନ୍ତା କର ନାହିଁ
ସେ ଯଦୁବଂଶ ନ ମଲେ ଭାର ଥିବ ରହି ।
କୃଷ୍ଣର ବଂଶ ବଢ଼ିଲେ ପଦ୍ମ ବନ ଜାଣି
ଗୋବିନ୍ଦର ସମ୍ପଦ କେ କହୁ ପରମାଣି ।
ଏତେ ସମ୍ପଦ ଛାଡ଼ିବେ କପରି ଶ୍ରୀଧର
ଅମର ପୁରକୁ ଇଚ୍ଛା ହେବ କି ତାଙ୍କର ।
ଦେବସଭାରେ ଯା କହିଥିଲେ ବୃହସ୍ପତି
ତାହା ଶୁଣିଣ ହସିଲେ ଇନ୍ଦ୍ର ଦେବପତି ।
ଇନ୍ଦ୍ର ପଚାରିଲେ ବୃହସ୍ପତି ମୁଖ ଚାହିଁ
କେମନ୍ତ ତେଜି ଆସିବେ ତ୍ରୈଲୋକ୍ୟଗୋସାଇଁ
ଏତେ ସମ୍ପଦ ତାଙ୍କର କେ କରିବ ନାଶ
କପରି ସ୍ୱର୍ଗେ ଆସିବେ ଦେବ ପୀତବାସ ।
ବ୍ରହ୍ମା ବୋଇଲେ ଅପେକ୍ଷା କର କିଛି କାଳ
ସୁଖଭୋଗ କରନ୍ତୁ ସେ ମଦନ ଗୋପାଳ ।
ଇନ୍ଦ୍ର ବ୍ରହ୍ମା ବଚନରେ କହେ ବୃହସ୍ପତି
ମର୍ତ୍ତ୍ୟ ଯାଆନ୍ତୁ ଦୁର୍ବାସା ନାମେ ବ୍ରହ୍ମଯତି ।
କପଟଭାବରେ ଦ୍ୱାରକାକୁ ଯାଉଥିବେ
କୃଷ୍ଣଙ୍କ କୁମରମାନେ ନୟନେ ଦେଖିବେ ।
ମୁନିଙ୍କି ଦେଖି ସେମାନେ ହୋଇବେ ଖତାଇ
ତାଙ୍କୁ ଅଭିଶାପ ଦେବେ ଋଷିଙ୍କ ତନୟି ।
ବୋଲିବେ ଆମ୍ଭଙ୍କୁ ତୁମ୍ଭେ କଲ ପରିହାସ
ଆମ୍ଭ ଅଭିଶାପେ ହେବ ଯଦୁବଂଶ ନାଶ ।

ସଭାର ବଣରେ ସର୍ବେ ହଣାହଣି ହୋଇ
ଯେ ଯାହା ହାତେ ମରିବେ କୃଷ୍ଣଙ୍କ ତନୟୀ
ଏତେକ ଶାପ ଦୁର୍ବାସା ମହାଋଷି ଦେବେ
ଗୋବିନ୍ଦ ଶୁଣି ଅନ୍ୟଥା କରି ନ ପାରିବେ
ଜରାଶବର ବାଣରେ କୃଷ୍ଣ ଯିବେ ନାଶ
ତେଣୁ ସ୍ୱର୍ଗକୁ ଆସିବେ ପ୍ରଭୁ ପୀତବାସ ।
ବୃହସ୍ପତି ଏହିକଥା ସଭାରେ କହିଲେ
ଦେବତାଏ ଶୁଣି ମନେ ଆନନ୍ଦିତ ହେଲେ ।
ମହର୍ଷି ଦୁର୍ବାସା ଏହା ସଭାରେ ଶୁଣିଲେ
ବୃହସ୍ପତିଙ୍କ ବଚନ ଅନ୍ୟଥା ନ କଲେ ।
ପୂର୍ବର ଆଦେଶ ହୋଇଅଛଇ ଯେ କଥା
କାହାର ବଳରେ ତାହା ହୋଇବ ଅନ୍ୟଥା
ଶୁଣ ଆହେ ପରୀକ୍ଷିତ ସୁଧାରସ ବାଣୀ
ପଞ୍ଚ ମହାପାପ ଯିବ ହରିବଂଶ ଶୁଣି ।
ଏଥୁ ଅନନ୍ତରେ ପୁଣ ଶୁଣ ଚର୍ଯ୍ୟରସ
ଦେବସଭା ମଧ୍ୟେ ଉପୁଜିଲା ଯେଉଁ ରସ ।
ସଭା ମଙ୍ଗଳିଲା ଦେବତାଏ ଉଠିଗଲେ
ଯେ ଯାହା ଯାନବାହନେ ସମସ୍ତେ ଚଢ଼ିଲେ
ଯଶୋବନ୍ତ ଭୁବନକୁ ବ୍ରହ୍ମା ଚଳିଗଲେ
ଦେବତାଏ ଯେ ଯାହାର ଭୁବନେ ଚଳିଲେ ।
ଏଥୁ ଅନନ୍ତରେ ପୁଣି କିଛିଦିନ ଗଲା
ଦ୍ୱାରକାରେ କୃଷ୍ଣଙ୍କର ସୁଖଭୋଗ ହେଲା ।
ନାଟ ଅଣନାଟ ପଣନାଟଙ୍କର ମୂଳେ
ଚନ୍ଦ୍ର ସୂର୍ଯ୍ୟଙ୍କ ପରାୟେ ଦିଶନ୍ତି ସକଳେ ।
ଦ୍ୱାରକାପୁର ମହିମା କହୁଁ ନ ସରଇ
ସୁଦର୍ଶନ ଚକ୍ର ଯହିଁ ନିରତେ ଭ୍ରମଇ ।
ଯହିଁରେ ମାଛି ପଡ଼ିଲେ ହୁଏ ନବଖଣ୍ଡ
ଯହିଁ ପ୍ରବେଶି ନ ପାରେ ଯମ କାଳଦଣ୍ଡ ।
ଦୁଃଖୀ ଦରିଦ୍ର ହୋଇଣ କେହି ଜଣେ ନାହିଁ
କୁବେର ସମାନେ ସର୍ବେ ଅଛନ୍ତି ଯେ ରହି ।
ଉଗ୍ରସେନ ମହାରାଜା ବଡ଼ଇ ଗରିଷ୍ଠ
ମନରେ ତାଙ୍କର ନାହିଁ ପୁତ୍ରଙ୍କର କଷ୍ଟ ।
ନିରନ୍ତରେ ଲକ୍ଷ୍ମୀ ଯହିଁ ଚରିତ୍ର କରଇ
ଅମୃତ ବରଷା ଯହିଁ ନିରନ୍ତରେ ହୋଇ ।
ଉଦ୍ଧବ ଅକ୍ରୂର ମୂଳେ ସମସ୍ତ ଯାଦବେ
ଗୋବିନ୍ଦଙ୍କ ଚରଣରେ ଖଟିଥାନ୍ତି ସର୍ବେ ।

କୃଷ୍ଣ ପାଦପଦ୍ମ ବିନା ନ ଜାଣନ୍ତି ଆନ
ନିରନ୍ତର ଗାବୁଥାନ୍ତି ପ୍ରଭୁ ଜନାର୍ଦ୍ଦନ ।
ଶ୍ରୀକୃଷ୍ଣ ଭୁମଣମାନେ ନେଖକ ଭକତକୁଳେ
ଯେ ଯାହାର ଇଚ୍ଛାଏ ଥାଆନ୍ତି ମନସୁଖେ ।
ଯାଦବବଂଶର କଥା ଅଟେ ଅନୁପମ
ଦୃଷ୍ଟାନ୍ତ ଦେବାକୁ ନାହିଁ ଏ ତିନଭୁବନ ।
ଅମରପୁର ସମାନ ଅଟଇ ନଗର
ବିଶ୍ୱକର୍ମା ନିର୍ମିଣିଛୁ ରହିବାକୁ ଘର ।
ପଟାନ୍ତର ଦେବା ପାଇଁ ମୋର ଶକ୍ତି ନାହିଁ
ମନୁଷ୍ୟ ଯୋନିରେ ଯେଣୁ ଜନ୍ମ ଲଭିଛଇଁ ।
ଦୟା ଯହୁଁ କଲେ ମୋତେ କମଳାର ବର
ତେଣୁ ହରି ପଦ ସ୍ତୁ ତୁଅଛଇ ମନର ।
ଜୟ ଜୟ ମହାପ୍ରଭୁ ନୀଳଗିରି ନାଥ
ମୁନଙ୍କର ଚରଣେ କରଇ ପ୍ରଣିପାତ ।
ଜୟ ଜୟ ଜଗନ୍ନାଥ ନୀଳଗିରିବାସୀ
ଚତୁର୍ଦ୍ଧା ମୂର୍ତ୍ତିରେ ତୁମ୍ଭେ ଚହିଁ ଅଛ ବସି ।
ଦାରୁବ୍ରହ୍ମରୂପେ ତୁମ୍ଭେ ଅଛ ବିଜେକରି
ଭକତ ଜନଙ୍କ ହିତେ ଶଙ୍ଖଚକ୍ର ଧରି ।
ମୁଁ ହୀନ ଅଲକ୍ଷ ଜନ ଶ୍ରୀଅଚ୍ୟୁତ ଦାସ
କଣ୍ଠେ ବସି ପଦ କହିବଅ ଗୀତବାସ ।

—❋—

## ବ୍ରହ୍ମାଙ୍କ ଦ୍ୱାରା ବତ୍ସାହରଣ

ଏଥୁଅନ୍ତେ ପରୀକ୍ଷିତ ନାମେ ନରନାଥ
ଶୁକମୁନି ଚରଣରେ କରି ପ୍ରଣିପାତ ।
ଅବଧାନ ହୋଇଣ ଶୁଣିମା ମୁନିବର
ହରିବଂଶ ପୁରାଣ ମୁଁ ଶୁଣିଲି କର୍ଣ୍ଣର ।
ମୋହର ଏହି ବଂଶରେ ଯେତେକ ପାପ ଥିଲା
ହରିବଂଶ ଶୁଣନ୍ତେଣ ସର୍ବ ଧ୍ୱଂସ ହେଲା ।
ମୁହିଁ ନିସ୍ତରିଲି ମୁନି ତୁମ୍ଭର ପ୍ରସାଦେ
ସର୍ବଜ୍ଞ ପୁରୁଷ ଅଟ ବ୍ୟାସଙ୍କର ସୁତେ ।
ଏଥୁ ଅନନ୍ତରେ କିସ କଲେ ଚକ୍ରଧର
ସେହି କଥା ବିସ୍ତାରଣ କହ ମୁନିବର ।
ରାଜାଙ୍କର ଭକତ ବିନୟ ଭାବ ଦେଖି
ପୁରାଣ ପୋଥି ଫେଡ଼ିଣ କହେ ଶୁକ ଯତି ।
ଏହିପରି କେତେ ଦିନ ଗତହେବା ପରେ
ଶ୍ରୀନାରାୟଣ ଉଚ୍ଚାଟ ହୋଇଲେ ମନରେ ।
ଏଣୁକରି ଗୋପ କଥା ମନରେ ପଡ଼ିଲା
ଗୋପୀଙ୍କର କ୍ରୀଡ଼ାରସ ସ୍ମରଣ ହୋଇଲା ।
ନନ୍ଦ ଯଶୋଦା ମୋତେ ପ୍ରତ୍ୟକ୍ଷେ ପାଳିଲେ
ବିଶେଷରେ ପ୍ରତିପାଳ ସେବା କରୁଥିଲେ ।
ଦୁଧ ଦହି ଛେନା ଆଉ ସର ଯେ ଲବଣୀ
ଅନେକ ପ୍ରକାର ମତେ ଦିଅନ୍ତି ଗୋପାଙ୍ଗଣୀ
ସେମାନେ ମୋହର ବିନୁ ନ ଜାଣନ୍ତି ଆନ
ନିରନ୍ତରେ ସ୍ମରୁଥାନ୍ତି ମୋର ରୂପ ଗୁଣ ।
ଦଧି ମନ୍ଥନେ ମୋହର ନାମ ଗାଉଥାନ୍ତି
ଦଧି ବିକଗଲେ ମୋର ନାମ ଉଚ୍ଚାରନ୍ତି ।
କୃଷ୍ଣ ନରହରି ଆଉ ମୁକୁନ୍ଦ ମୁରାରି
ଅଚ୍ୟୁତ କେଶବ ଆଉ ନାମ ଦଇତ୍ୟାରି ।
ନିରନ୍ତରେ ମୋର ନାମ କରନ୍ତି ଗାୟନ
ମୋହର ନାମ ବ୍ୟତୀତ ନ ଜାଣନ୍ତି ଆନ ।
ପ୍ରଭୁ ବଡ଼ ରାଧିକାକୁ ସ୍ମରିଣ ଅଇଲା
ଏବେ ଆସି କୁଶସ୍ଥଳୀ ପୁରରେ ରହିଲା ।
ଯେତେବେଳେ ନିରାକାର ମୋତେ ଆଜ୍ଞାଦେଲେ
ରାଧିକାକୁ ମର୍ତ୍ତ୍ୟପୁରେ ଜନ୍ମ କରାଇଲେ ।
ରାଧାକୃଷ୍ଣ ନାମ ଗୋଟି ଜଗତେ ଜାଣନ୍ତି
ରାଧାକାନ୍ତ ବୋଲି ମୋତେ ସମସ୍ତେ କହନ୍ତି
ଏମାନଙ୍କୁ କଷ୍ଟ ଦେଇ ମଥୁରା ରହିଲି
ଏହି କଥା ମନମଧ୍ୟେ ବିଚାରି ଶ୍ରୀହରି ।
ଦିନୁଦିନ ପ୍ରଭୁଙ୍କର ଦେହ ହେଲା କ୍ଷୀଣ
ରାଧିକାର କଥା ମନେ ସ୍ମରି ନାରାୟଣ ।
ଏମନ୍ତେଣ ଚିନ୍ତା କରୁଥାନ୍ତି ନନ୍ଦବାଳ
ପ୍ରଭୁଙ୍କ ଶରୀର ଗୋଟି ହୋଇଲା ଦୁର୍ବଳ ।
ଦିନେ ଚନ୍ଦ୍ରଶାଳା ପୁରେ ବିଜେ ନାରାୟଣ
ସନ୍ନିଧେ ଖଟନ୍ତି ଅଷ୍ଟ ପାଟବଂଶୀ ଜାଣ ।
ରୁକ୍ମିଣୀ କାଳନ୍ଦୀ ସତ୍ୟଭାମା ଜାମ୍ବୁବତୀ
ଏମନ୍ତରୂପେ ଅଷ୍ଟ କନ୍ୟା ପାଶେ ଖଟିଥାନ୍ତି ।
ଖଟ ଦୋଳ ବାଙ୍କି ସ୍ୱାରେ ବିଜେ ଚକ୍ରଧର
ଅଷ୍ଟ ପାଟବଂଶୀ ଉଭା ଅଛନ୍ତି ସୁନ୍ଦର ।
କର୍ପୂର ବଡ଼ିଆ ପାନ ଭୁଞ୍ଜି ପଦ୍ମମୁଖ
ହସିଣ କହନ୍ତି ବିମ୍ବାଧରେ ଧୀର ବାକ୍ୟ ।
ବୋଲନ୍ତି ସଖୀଏ ଶୁଣ ମୋର ଯେଉଁ ବାଣୀ
ତୁମ୍ଭେ ଅଷ୍ଟ ପାଟବଂଶୀ ପିଣ୍ଡରକାରିଣୀ ।

ଏସନ ବଚନ ଯହୁଁ କହୁ ଭଗବାନ
ଶୁଣି କନ୍ୟାମାନେ ହେଲେ ଆନନ୍ଦିତ ମନ ।
ରୁକ୍ମଣୀ ବିଚାର କଲେ ଆପଣା ମନକୁ
ତିନିଭୁବନରେ ଲକ୍ଷ୍ୟନାହିଁ ନା ଆମ୍ଭଙ୍କୁ ।
ଆମ୍ଭର ରୂପ ନିରେଖି ପ୍ରଭୁ ଭଗବାନ
କ୍ଷଣେ ପାଶ ନ ଛାଡନ୍ତି ପ୍ରଭୁ ନାରାୟଣ ।
ଏମନ୍ତେ ଗର୍ବର କଥା ବିଚାରନ୍ତି ମନେ
ଅନ୍ତର୍ଯ୍ୟାମୀନାଥ ତାହା ଜାଣିଲେ ତକ୍ଷଣେ ।
ରୁକ୍ମଣୀଙ୍କର ମନରେ ମାୟା ଲଗାଇଲେ
ଆପେ ନାରାୟଣ ତହୁଁ ବିରୂପ ହୋଇଲେ ।
ଗୋବିନ୍ଦ ରୂପ ଦେଖିଣ ସର୍ବ କାମିନୀଏ
ତହୁଁ କରପଦ୍ମ ଯୋଡ଼ି ଜଣାନ୍ତି ବାମାଏ ।
ସାବଧାନ ହୋଇ ତୁମ୍ଭେ ଶୁଣ ଚକ୍ରଧର
ଶ୍ୟାମବର୍ଣ୍ଣ ରୂପ ତ ଦିଶଇ ଅସୁନ୍ଦର ।
ଏଥିର କାରଣ ତୁମ୍ଭେ କହ ଦାମୋଦର
ଦେଖିକରି ଆମ୍ଭ ମନ ହେଉଛି ଅସ୍ଥିର ।
ଭୋଜନର ତରସ୍ତ କି ନ ହୋଇଲା ସୁସ୍ଥ
ସେବା କରି ନପାରିଲୁ ତୁଷ୍ଟି ଘର ମାଦ ।
ଫୁଲ ଚନ୍ଦନେ ତୁମ୍ଭର ଅରୁଚି ଜନ୍ମିଲା
ତେଣୁ ଭାବନାରେ ମନ ଅସୁସ୍ଥ ହୋଇଲା ।
ତୁମ୍ଭ ଦେହ ଦେଖି ମନ ହେଉଛି ବିକଳ
ଏଥିର କାରଣ ବୋଲ ମଦନ ଗୋପାଳ ।
ରୁକ୍ମଣୀ ପଚାରନ୍ତେ ଯେ କୃଷ୍ଣ ତୁନି ହେଲେ
ଗରବ ଭଞ୍ଜିବାପାଇଁ ମନେ ବିଚାରିଲେ ।
ବ୍ରହ୍ମା ଯାହାଙ୍କର ମାୟା ଜାଣି ନ ପାରିଲା
ବୃନ୍ଦାବନରୁ ଗୋବତ୍ସ ସବୁ ହରିନେଲା ।
କମଣ୍ଡଳେ ପୁରାଇଣ ରଖେ ଯତ୍ନକରି
ଏସନ କଥା ଜାଣିଲେ ଦେବ ନରହରି ।
ଗୋପାଳ ପୁଅଙ୍କ ସଙ୍ଗେ ଯତ୍ନେ ଥିଲେ ରହି
ମାୟାକରି ଗୋବତ୍ସ ଖୋଜନ୍ତି ଚକ୍ରଗ୍ରାହୀ ।
ନ ପାଇ ଗୋବିନ୍ଦ ତାହା ଆକୁଳ ହୋଇଲେ
ଆପଣା ଅଙ୍ଗୁ ବାଳକ ବତ୍ସ ଜନ୍ମାଇଲେ ।
ଯାହାର ଯେମନ୍ତେ ବତ୍ସ ସେହିରୂପେ କରି
ସେହି ପ୍ରକାରେ ଗୋପାଳ ପୁଏ ଅବତରି ।
ବତ୍ସ ଘେନିଣ ଗୃହକୁ ଗଲେ ଦାମୋଦର
ଏ ପ୍ରକାରେ ଗତ ହେଲା କେତେହେଁକ କାଳ

ବତ୍ସ ଘେନି ଯାଇ ବ୍ରହ୍ମା ନିଜ ଗୃହେ ଥିଲେ
ବତ୍ସ ବାଳକଙ୍କୁ ଘେନି ଆନନ୍ଦେ ରହିଲେ ।
ତାହାଙ୍କୁ ହେବାର କଥା ମନୁ ପାସୋରିଲେ
ଗୋବିନ୍ଦଙ୍କ ମାୟାକଥା ଜାଣି ନ ପାରିଲେ ।
ଦିନେ ବ୍ରହ୍ମା ଦେଖିଲେକ ସ୍ୱର୍ଗପୁରେ ଥାଇ
ବତ୍ସ ଚରାଉଅଛନ୍ତି ପ୍ରଭୁ ଚକ୍ରଗ୍ରାହୀ ।
ସେହି ଗୋପାଳଙ୍କ ପୁଅ ବତ୍ସମାନ ଘେନି
କଉତୁକେ ଗୋପେ ବିହରନ୍ତି ଚକ୍ରପାଣି ।
ବ୍ରହ୍ମାଙ୍କର ଆସିବାର ଜାଣିଲେ ଶ୍ରୀଧର
ବସି ବିମ୍ବାଧରେ ବଂଶୀ ବଜାନ୍ତି ସୁସ୍ୱର ।
ବିଶ୍ୱମ୍ଭର ଦେହଗୋଟି ହେଲେ ନନ୍ଦବଳା
ସପ୍ତବ୍ରହ୍ମାଣ୍ଡ ଯାକରେ ତେଜ ବିକାଶିଲା ।
ଯେଉଁ ପ୍ରଭୁ ଜଗତରେ ଅଟନ୍ତି ଠାକୁର
ବ୍ରହ୍ମା ଅବା ତାଙ୍କଠାରେ କେତେକ ମାତର
କୃଷ୍ଣଙ୍କର ବିଶ୍ୱରୂପ ଦେଖି ବେଦବର
ପଞ୍ଚଭୂତ ଆତ୍ମାରେ ସେ କରନ୍ତି ବିଚାର ।
ଏକେ ପ୍ରଭୁଠାରେ ମୁହିଁ ଅପ୍ରାଧ ଅର୍ଜିଲି
ବିନାଶ କାରଣେ ବତ୍ସ ଗୋପାଳ ହରିଲି ।
ଏତେ ଗୋପବାଳକ ଗୋବତ୍ସ ଜାତ କଲି
କିବା କମଣ୍ଡଳମଧ୍ୟୁ ଫେରାଇ ଆଣିଲି ।
କିବା ବଂଶୀରେ ଡାକିଲେ ବତ୍ସ ନାମ ଧରି
କମଣ୍ଡଳୁର ଭିତରୁ ଅଇଲେ ବାହାରି ।
ବିଚାରିଣ ବ୍ରହ୍ମା କମଣ୍ଡଳକୁ ଦେଖିଲା
ଗୋପାଳ ଗୋବତ୍ସ ତହିଁ କରୁଛନ୍ତି ଲୀଳା
ଦେଖିକରି ବେଦବର ମହାଭୟ କଲେ
ବୃନ୍ଦାବନର ନିକଟେ ଯାଇଣ ମିଳିଲେ ।
ଦୁଇ ହାତ ଦୂରେ ଛିଡ଼ା ହେଲେ କୁଶପାଣି
ବେଦବର ଚତୁର୍ମୁଖେ ସ୍ତୁତି କଲେ ପୁଣି ।
ହେ କୃଷ୍ଣ ଗୋବିନ୍ଦ ହରି ଗୋପଚୂଡ଼ାମଣି
ହେ ଶ୍ୟାମ ହେ ଦାମୋଦର ପ୍ରଭୁ ବେଣୁପାଣି
ରାଧାକାନ୍ତ ନଟବର ହେ ମୁରଲୀଧର
ହେ ଗୋପୀନାଥ ଗୋପାଳ ମୋହନ ଠାକୁର
ବ୍ରହ୍ମା ଆସିବା ଗୋପାଳ ଯୋଏ ନ ଜାଣିଲେ
ଶ୍ରୀକୃଷ୍ଣଙ୍କ ମାୟାରେ ସେ ସର୍ବେ ମୋହଗଲେ
ଶୁଣ ଆହେ ପରୀକ୍ଷିତ ଅମୃତ ରସବାଣୀ
ଭାଗବତ ପୁରାଣ ଏ ସୁଧାମୟ ବାଣୀ ।

କରପତ୍ର ଯୋଡ଼ି ବ୍ରହ୍ମା କରନ୍ତି ଯେ ସ୍ତୁତି
ଜଗତର ନାଥ ତୁମ୍ଭେ ଅଟ ଲକ୍ଷ୍ମୀପତି ।
ଯାହାର ଗର୍ଭେ ଅଶେଷ ବ୍ରହ୍ମାଣ୍ଡ ସୃଜିଛ
ଲକ୍ଷ୍ମୀ ସରସ୍ୱତୀ ତୋର ଅର୍ଦ୍ଧାଙ୍ଗ ଅଟନ୍ତି ।
ସେମାନେ ତୋହର ମାୟା ନ ପାରନ୍ତି ଜାଣି
ମୁହିଁ କାହିଁ ଜାଣିବି ବା ଅଜ୍ଞ ମୂଢ଼ ପ୍ରାଣୀ ।
ତୋହର ବୈଷ୍ଣବୀ ମାୟାରେ ଈଶ୍ୱର ପୁରୁଷ
କନ୍ୟାରୂପ ଦେଖାଇଣ କଲୁ ତାଙ୍କୁ ବଶ ।
ଜଳ ନାଗଫେଣି ତୁହି ବାଲୁକା ସ୍ୱରୂପ ।
ଜଗତ ଜନର ହିତେ ଧରୁ ନାନା ରୂପ ।
ଅସୁର ବଧନେ ପ୍ରଭୁ ନାନା ରୂପ ଧରି
ମର୍ତ୍ତ୍ୟରେ ଜନମିଅଛୁ ନନ୍ଦ ଚକ୍ରଧାରୀ ।
ହୀନ ଅରକ୍ଷିତ ମୁହିଁ ଶ୍ରୀ ଅଚ୍ୟୁତ ଦାସ
ଘୋର ନରକରୁ ମୋତେ ରଖ ପୀତବାସ ।

— —

## ଷୋଳ ସହସ୍ର ଗୋପାଙ୍ଗଣୀଙ୍କର ପୂର୍ବଜନ୍ମ ବିବରଣ

ଏସନକ ସ୍ତୁତି ଯହୁଁ କରେ ବେଦବର
ବୃନ୍ଦାବନେ ଥାଇ ତାହା ଜାଣିଲେ ଶ୍ରୀଧର
ଗୋପୀ ମୋହନ ମୁରଲୀ ଧରିଣ ଗୋସାଇଁ
ବ୍ରହ୍ମାର ସମ୍ମୁଖରେ ଉଭା ହୋଇଲେ ସେ ଯାଇ
ଶୂନ୍ୟପଥେ ଥାଇ ଦେଖିଲେକ ବେଦବର
ଆପଣାର ଶିରେ ନେଇ ଦେଲେ ବେନି କର
ଦଣ୍ଡ ଦୋଷ କ୍ଷମା ମୋର କରିବା ଗୋସାଇଁ
ଅନ୍ତର୍ଯ୍ୟାମୀ ନାଥ ମୋତେ କର ପରିତ୍ରାହି ।
ବେଦବର ମୁଖରୁ ଏସନ ବାକ୍ୟ ଶୁଣି
ହସିଣ ବୋଇଲେ ତହୁଁ ପ୍ରଭୁ ଚକ୍ରପାଣି ।
ତୁମ୍ଭେ ଦେବତାଏ ମୋତେ ମର୍ତ୍ତ୍ୟେ ଜନ୍ମାଇଲ
କଂସ କେଶୀ ଦୁଷ୍ଟ ଦୈତ୍ୟ ସଂହାର ବୋଇଲ
ସେଥିଯୋଗେ ମଧୁପୁରେ ହୋଇଲି ମୁଁ ଜାତ
କଂସଡରେ ଗୋପପୁରେ ଲୁଚାଇଲା ତାତ ।
ଗୋପାଳ ପୁତ୍ରଙ୍କ ସଙ୍ଗେ ଖେଳେ ନାନାରଙ୍ଗେ
ଯହିଁରେ ଅନ୍ତର ମୋହିତ କଲି ଦେବ ବୃନ୍ଦ
ଗୋପାଳ ପୁଅଙ୍କୁ ନେଇ ବନ ଭୋଜି କଲି
ତୁମ୍ଭେ ବେଦବର ମୋର ବତ୍ସା ନେଲ ହରି
ଧେନୁକ ଦୁଷ୍ଟ ସେନ ପିଟିଲେ ମୋତେ ନନ୍ଦ
ନିର୍ଭଙ୍ଗିମା ଚକ୍ର ମୋର କଲେ ଖଣ୍ଡ ଖଣ୍ଡ ।
ତୁମ୍ଭେ ଦେବତାଏ ମିଳି ସବୁ କରିପାର
ନାନାବିଧ ପ୍ରକାରେ ଅସୁରଙ୍କୁ ବଧ କର ।
ମାରି ନ ପାରି ପଳାଇଯାଅ ଏଣେ ତେଣେ
ଅସୁର ମାରିଲେ ହତ୍ୟାଦୋଷ ବଧ ଏଣେ
ଗୋବିନ୍ଦଙ୍କ ମୁଖୁଁ ଏସନକ ବାକ୍ୟ ଶୁଣି
କ୍ଷଣକାଳ ସ୍ତମ୍ଭୀଭୂତ ହେଲେ କୁଶପାଣି ।
ଏତେ ଦୋଷ କଲେ ମୁହିଁ ମୋତେ କର କ୍ଷମା
ଅଖିଳ କୋଟି ବ୍ରହ୍ମାଣ୍ଡେ ଉଡ଼େ ତୁମ୍ଭ ବାନା
ତୁମ୍ଭ ଶ୍ରୀଚରଣେ ମୁହିଁ ଅପ୍ରାଧ କଲଇଁ
ମୋହର ଏ ଅପରାଧ ଫେଡ଼ ଭାବଗ୍ରାହୀ ।
ବତ୍ସା ଗୋପାଳ ପୁଅଙ୍କୁ ନେଇଛି ମୁଁ ହରି
ସେମାନଙ୍କୁ ତୁମ୍ଭେ ଏବେ ଦିଅ ଚକ୍ରଧାରୀ ।
ବ୍ରହ୍ମାର ବଚନେ ପ୍ରଭୁ ସନ୍ତୋଷ ଭଇଲେ
ସନ୍ତୋଷରେ ବ୍ରହ୍ମାଙ୍କୁ ସେ ନିଜ ପଥ ଦେଲେ
ଯେ ବତ୍ସା ବାଳକ ଦେହୁଁ ଜାତ କରିଥିଲେ
ସେଛି ବତ୍ସାମାନଙ୍କୁ ସେ ଅଙ୍ଗେ ଲୀନ କଲେ ।
ବ୍ରହ୍ମା ହରିଥିବା ବତ୍ସା ବନରେ ଛାଡ଼ିଲେ
ନମସ୍କାର କରି ବେଦବର ଚଳିଗଲେ ।
ଯଶୋମତୀପୁରେ ଯାଇ ହୋଇଣ ପ୍ରବେଶ
ଗୋପାଳଙ୍କ ସଙ୍ଗରେ ରହିଲେ ପୀତବାସ ।
ଜଗପ୍ରି ତାଙ୍କୁ ଏସନ କଲେ ଦାମୋଦର
ସ୍ତ୍ରୀଗଣଙ୍କର ଜନମ ବା କେତେକ ମାତର ।
ଶୁଣ ପରୀକ୍ଷିତ ହରିବଂଶର ଚରିତ
ନାନାବିଧ ମାତକ ନ ଥିବ ତୁମ୍ଭ ଗାଡ଼ ।
ଏଥୁଅନନ୍ତରେ ପରୀକ୍ଷିତ ନୃପବର
ଶୁକ ମୁନିଙ୍କ ଚରଣେ କଲେ ନମସ୍କାର ।
ବୋଇଲେ ତପୋବନ୍ତ ଜସ ହୋଇଲି ଗୋସାଇଁ
ସାବଧାନ ହୋଇ ମୋତେ କହିବା ବୁଝାଇ
ଦେବକଥା ଯେଣୁକରି କହିଲେ ରୁକ୍ମିଣୀ
ଗରବଗଞ୍ଜନ ବାନା ଜାଣିଲେ ସେକ୍ଷଣି ।
ରୁକ୍ମିଣୀଦେବୀଙ୍କ କଥା ଛଟକେ ମୋହିଲେ
ଅନ୍ତର୍ଯ୍ୟାମୀ ନାଥ ତାଙ୍କୁ ମାୟା କରାଇଲେ ।
ରୁକ୍ମିଣୀ ବୋଇଲେ ତୁମ୍ଭେ ଶୁଣ ଭାବଗ୍ରାହୀ
ଯାହା ପଚାରିଲୁଁ ତା ନ କହିଲ ଗୋସାଇଁ ।

ତହୁଁ ଗୋବିନ୍ଦ ବୋଇଲେ ଶୁଣ ଗୋ ରୁକ୍ମଣୀ
ଯାହା ପଚାରିଲେ ତା କହିବୁ ଏହିକ୍ଷଣି ।
ଏକ ମନ ହୋଇ ତୁମ୍ଭେ ସବୁନାରୀ ଶୁଣ
ଷୋଳ ସହସ୍ର ନାୟିକା ମୂଳେ ଯେତେ ଜଣ
ସମସ୍ତଙ୍କ ସମ୍ମୁଖେ କହିବୁ ଆମ୍ଭେ ଯାହା
ମୋହଠାରେ କେହି ଜାଣ ନ କରିବ ମାୟା
ମଥୁରାରେ ଜନ୍ମି ଗୋପେ ବଢ଼ିଲୁ ଯୋଗାଇ
କଂସଡରେ ବସୁଦେବ ନେଲଟି ଚୋରାଇ ।
ସେହି ଗୋପପୁର ମଧ୍ୟେ ନବଲକ୍ଷ ଗୃହ
ଗୋପାଳ ଗୋପାଙ୍ଗଣୀଏ କରଥାନ୍ତି ସ୍ନେହ ।
ତହିଁରେ ଅଛନ୍ତି ଷୋଳସହସ୍ର ଗୋପାଙ୍ଗଣୀ
ପୁରୁଷମାନେ ତାଙ୍କର ନପୁଂସକ ଜାଣି ।
ମୋହର ରୂପରେ ଗୋପାଙ୍ଗଣୀ ମୋହ ଗଲେ
ତାଙ୍କ ପଞ୍ଚଭୂତ ଆତ୍ମା ମତେ ତହିଁ ଦେଲେ ।
ତାଙ୍କ ମନ ବଚନେ ମୋତେହିଁ ଅନ୍ୟ ନାହିଁ
ଚନ୍ଦ୍ରସେଣା ନାମେ ତହିଁ ଗୋପାଳ ଅଛଇ ।
ତାହାର ଭାରିଯା ଅଟେ ରାଧିକା ସୁନ୍ଦରୀ
ତିନି ଭୁବନରେ ନାହିଁ ତା ସମାନ ସ୍ତିରୀ
ତାହାର ରୂପ ସମାନ ତୁମ୍ଭେ ନୁହ କେହି
ଚନ୍ଦ୍ରସେଣା ରାଧିକାର ଭରତା ଅଟଇ ।
ନପୁଂସକ ସେ ଅଟଇ ପୁରୁଷତ୍ୱ ନାହିଁ
ନନ୍ଦ ଲେଖାରେ ସେ ମୋର ମାତୁଳ ଅଟଇ
ବୃଷଭାନୁର ନନ୍ଦନୀ ଅଟଇ ରାଧିକା
ପଦ୍ମବନ ଭିତରୁ ସେ ଜନମିଲା ଏକା
ତେଣୁକରି ତାହାଙ୍କୁ ତ ଗୋ ବୋଲି କମଳନୀ
ଏକମନେ ଶୁଣ ଆଗୋ ଭୀଷ୍ମକ ନନ୍ଦନୀ ।
ସେହି ରାଧିକାର ସଖୀ ଦୂତିକା ଅଟଇ
ମୋ ସଙ୍ଗତେ ରାଧିକାକୁ ଭେଟାଇଲା ନେଇ ।
ରାଧିକା ବ୍ୟତୀତ ଅନ୍ୟେ ନ ବଳଇ ମନ
ମୂରୁଛି ନ ପାରେ ଷୋଳସହସ୍ର ଗୋପୀଗଣ ।
ତାହାଙ୍କ ପ୍ରେମର ଭାବ ମନରେ ପଡ଼ିଲା
ତେଣୁକରି ଆତ୍ମଦେହ ଦୁର୍ବଳ ହୋଇଲା ।
ଶୁଣି ଅଷ୍ଟ ପାଟବଂଶୀ ହେଲେ ସ୍ତମ୍ଭୀଭୂତ
କୃଷ୍ଣଙ୍କର କଥା ତାଙ୍କୁ ଲାଗେ ଆଚମ୍ବିତ ।
ସମସ୍ତେ ମିଳି ଗୋବିନ୍ଦଠାରେ ଦୁଃଖ କଲେ
ଆପଣା ହୃଦ ମଧ୍ୟରେ କଥାନ୍ତ ବାନ୍ଧିଲେ ।

ରୁକ୍ମଣୀ ସତ୍ୟଭାମା ଯେ କରନ୍ତି ବିଚାର
ଆମ୍ଭଠାରୁ ରାଧିକା କି ଅଟନ୍ତି ସୁନ୍ଦର ।
ଷୋଳସହସ୍ର ଗୋପୀ ଏତେ ସୁନ୍ଦରୀ ହୋଇଲେ
ମାୟାଧର ପୁରୁଷ ମୂରୁଛି ନ ପାରିଲେ ।
ଧନ୍ୟ ଗୋପାଙ୍ଗଣୀ ଏ କି ଭାଗ୍ୟ କରିଥିଲେ
ତ୍ରିଭୁବନର ନାଥଙ୍କୁ ପ୍ରେମରେ ମୋହିଲେ ।
ଏସନକ ବିଚାରକୁ କରି ଦୁଇ ବାମା
ଡରେ ଉତ୍ତର ନ ଦ୍ୟନ୍ତି ଗୋବିନ୍ଦର ସୀମା
ଏମନ୍ତ ପ୍ରକାରେ ଥୋକେ କାଳ ଗଲା ବହି
ଦିନେ ଦଶା ଖେଳେ ସତ୍ରାଜିତର ତନୟୀ ।
ପ୍ରେମରସେ ଭୋଳ ହୋଇ ପରମା ସୁନ୍ଦରୀ
ଗୋବିନ୍ଦ ଚରଣ ଧରି ନମସ୍କାର କରି ।
ବୋଇଲେ ହେ ନାରାୟଣ ସାବଧାନେ ଶୁଣ
କଥାଏ ପୁଚ୍ଛିବୁଁ ଆମ୍ଭେ ହୁଅ ସାବଧାନ ।
ରାଧାହୁଁ ସୁନ୍ଦରୀ ନାହିଁ ଆମ୍ଭଙ୍କୁ ବୋଇଲ
ଗୋପୀଙ୍କର ରୂପକୁ ଯେ ରତି ନୁହେ ତୁଲ୍ୟ ।
ସେହୁ ରାଧିକା ତୁମ୍ଭର ଅଟେ ମଉଜାଣୀ
କେସନେ ତାଙ୍କୁ ରମଣ କଲ ଚକ୍ରପାଣି ।
ଯେଣୁ ମାୟାଧର ତୁମ୍ଭେ ଦେଲ ହୋ ଭୁଲାଇ
ଏଣୁ ଆମ୍ଭର ମନରେ ପ୍ରତେ ହେଉ ନାହିଁ ।
ଏକଥା ବିସ୍ତାରି ମୋତେ କହିବା ବୁଝାଇ
ତେବେ ମନରେ ପ୍ରତ୍ୟୟ ହେବ ଭାବଗ୍ରାହୀ
ଗୋବିନ୍ଦ ବୋଲନ୍ତି ତୁମ୍ଭେ ଯାଅ ଏହିକ୍ଷଣି
ସବୁଙ୍କୁ ଡ଼କାଇ ଆଣ କହି ଏହି ବାଣୀ ।
କାଳିନ୍ଦୀ ଜମ୍ବୁବତୀଙ୍କ ସଙ୍ଗେ ଘେନି ଆସ
ତେବେ ଯେ କହିବା ଆମ୍ଭ ସକଳ ସନ୍ଦେଶ
ଗୋପାଙ୍ଗଣୀ କଥାମାନ ନ ଜାଣନ୍ତି କେହି
ପ୍ରେମରସ କଥା ସବୁ କହିବୁ ବୁଝାଇ ।
ଏତେ କହି କୃଷ୍ଣ ସିଂହାସନରେ ବସିଲେ
ସତ୍ୟଭାମା ବେଗେ ଯାଇ ଭିତରେ ପଶିଲେ ।
ରୁକ୍ମଣୀଙ୍କ ନିକଟରେ ହେଲେ ପରବେଶ
ଦେବକୀ ପାଶେ କହିଲେ ଶ୍ରୀକୃଷ୍ଣ ସନ୍ଦେଶ ।
ଆଜ୍ଞା ଦେଇଛନ୍ତି ମୋତେ ଆସିବ ଏକ୍ଷଣି
ସଙ୍ଗେ ଘେନି ଆସିବ ଗୋ କାଳିନ୍ଦୀ ତରୁଣୀ
ଏହାଙ୍କର ମୂଳେ ଯେତେ ଶ୍ରୀକୃଷ୍ଣ ଘରଣୀ
ସମସ୍ତଙ୍କୁ ହକାରିଣ ଛନ୍ତି ବେଣୁପାଣି ।

ତେଣୁ ସମସ୍ତ ତରୁଣୀ ବାହାର ହୋଇଲେ
ଶ୍ରୀକୃଷ୍ଣଙ୍କର ଚରଣ ଦରଶନ କଲେ ।
ନମସ୍କାର କରି ସର୍ବେ ଉଭା ହୋଇଛନ୍ତି
ମଦନମୋହନ ରୂପ ନୟନେ ଦେଖନ୍ତି ।
ତହୁଁ ଗୋବିନ୍ଦ ବୋଇଲେ ବସ ସର୍ବ ସଖି
ତୁମ୍ଭ ପ୍ରେମ ଭାବମାନ ନ ପାରୁ ମୁରୁଛି ।
ପଞ୍ଚଭୂତ ଆତ୍ମାର ଗୋ ତୁମ୍ଭେ ମୋର ସାକ୍ଷୀ
ତୁମ୍ଭ ବ୍ୟତୀତ ମୋହର କେହି ନାହିଁ ସାକ୍ଷୀ ।
ତାହାଙ୍କର ହସ୍ତ ଧରି ବସାଇଣ ପାଶେ
କଥାବାର୍ତ୍ତା ହୁଅନ୍ତି ସେ ପ୍ରେମର ହରଷେ ।
ଗୋବିନ୍ଦ ବୋଇଲେ ତାଙ୍କୁ ବସ ସର୍ବ ସଖୀ ।
ତୁମ୍ଭ ପ୍ରେମ ଭାବକୁ ସେ ନ ପାରୁ ମୁରୁଛି ।
ନାରାୟଣଙ୍କ ମୁଖରୁ ଏସନକ ଶୁଣି
କରପଦ ଯୋଡ଼ି ତହୁଁ କହନ୍ତି ରୁକ୍ମିଣୀ ।
ସାବଧାନ ହୋଇ ଶୁଣ ମଦନଗୋପାଳ
ମାୟା କଥାମାନ କେଉଁପରି କହ ଦାମୋଦର ।
ଏହି ମାୟା କରି ତୁମ୍ଭେ ଗୋପୀଙ୍କି ମୋହିଲ
ବୃନ୍ଦାବନରେ ରହିଣ ବଂଶୀ ବଜାଇଲ ।
ମୋହି ଘେନ ଯାଅ ଷୋଳସହସ୍ର ଗୋପନାରୀ
ବଂଶୀସ୍ୱରେ ରାଧିକାକୁ ମୋହିଲ ଶ୍ରୀହରି ।
ସେ ତୁମ୍ଭର ମଉଳାଣୀ ଲାଜ ନ ପାଇଲ
ବୃନ୍ଦାବନର ମଧ୍ୟରେ ତାହାକୁ ହରିଲ ।
ଏବେ ଛଦ୍ମମର କଥା କହ ଚକ୍ରଧର
ବୁଝାଇ କହିବା ମୋତେ ଏଥିର ବେଭାର ।
ଏହି କନ୍ୟାମାନେ ଥିଲେ ପୂର୍ବେ ବ୍ରହ୍ମର୍ଷି
ସ୍ତ୍ରୀରୂପେ ବୃନ୍ଦାବନେ ଜନମିଲେ ଆସି ।
ଏହା ଶୁଣିଣ ପୁଚ୍ଛନ୍ତି ଭୀଷ୍ମକ କୁମାରୀ
ଏହି ଚରିତ ଆମ୍ଭଙ୍କୁ କହ ଶିରୀହରି ।
ରୁକ୍ମିଣୀ ପୁଚ୍ଛା କରନ୍ତି ଶ୍ରୀହରି କହନ୍ତି
ଏକମତ ହୋଇ ଶୁଣ ପରୀକ୍ଷ ନୃପତି ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟ ରସ
ଗୋବିନ୍ଦ ଲୀଳା ଆଖ୍ୟାନ ଶ୍ରୀହରିର ବଂଶ ।
ପୂର୍ବେ ତ୍ରେତୟା ଯୁଗରେ ରାମ ଅବତାରେ
ନାରାୟଣ ଅବତାର ହେଲେ ମର୍ତ୍ତ୍ୟପୁରେ ।
ଯେଣୁକରି ଅସୁର ହୋଇଲେ ବଳୀୟାର
ଦେବତାମାନଙ୍କୁ କଷ୍ଟ ଦେଲେକ ଅପାର ।

କ୍ଷୀର ସମୁଦ୍ରରେ ନାରାୟଣ ଶୋଇଥିଲେ
ଦେବତା ଗୁହାରି କରୁଁ ଉଠିଣ ବସିଲେ ।
ତୁମ୍ଭେମାନେ କି ଗୁହାରି କେଉଁପରା ଆସି କର
ଦେବତା ବୋଇଲେ ଦୈତ୍ୟହେଲେ ବଳୀୟାର
ଅସୁରଙ୍କ ଭୟେ ସ୍ୱର୍ଗେ ନ ପାରିଲୁ ରହି
ବେଗେ ରକ୍ଷାକର ତୁମ୍ଭେ କମଳାର ସାଇଁ ।
ନାରାୟଣ ପୁଚ୍ଛାକଲେ କାହୁଁ ହେଲେ ଜାତ
କାହାର ବଳେ ସେମାନେ ଏଡ଼େ ବଳବନ୍ତ ।
ବିଶ୍ରବା ଋଷିର କୁଳେ ଲଭିଛନ୍ତି ଜନ୍ମ
ରାବଣ ନାମ ତାହାର ଅଟଇ ଅନୁପମ ।
ଜଗତର ପିତା ତାକୁ ଦେଇଛନ୍ତି ବର
ଚତୁର୍ଦ୍ଦଶ ଯୁଗକୁ ଆୟୁଷ ତାହାର ।
ଖଡ଼୍‌ଗେ ନ ଛିଡ଼ଇ ଅନଳରେ ନ ପୋଡ଼ଇ
ମୁଣ୍ଡ ଛିଡ଼ଗଲେ ପୁଣି ଆସିଣ ଲାଗଇ ।
ଏସନ ପ୍ରକାର ତାର ନୁହଇ ମରଣ
ଏଥିର ଉପାୟ ତୁମ୍ଭେ କର ନାରାୟଣ ।
ଦେବତାଙ୍କର ବିକଳ ଦେଖି ଜଗନ୍ନାଥ
ମନରେ ଚିନ୍ତା ବହୁତ କଲେ ଆଦିନାଥ ।
ବୋଇଲେ ମର୍ତ୍ତ୍ୟପୁରରେ ଲଭିବୁ ଜନମ
ଅସୁରଙ୍କୁ ନଷ୍ଟେ ଆମ୍ଭେ କରିବୁ ନିଧନ ।
ଦେବଗଣଙ୍କୁ ମେଲାଣି ଦେଲେ ନିରଞ୍ଜନ
ମର୍ତ୍ତ୍ୟପୁରେ ପ୍ରଭୁ ଆସି ଲଭିଲେ ଜନମ ।
ଅଯୋଧ୍ୟା କଟକେ ଦଶରଥ ରାଜା ଘରେ
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ରୂପରେ ।
ଚତୁର୍ଦ୍ଧା ରୂପରେ ହରି ହେଲେ ଅବତାର
ବାଳକାଳେ ଯଜ୍ଞରକ୍ଷା କଲେ ଚକ୍ରଧର ।
ତଦନ୍ତରେ ମିଥିଳାକୁ ବିଜେହୋଇ ଗଲେ
ଜନକ ଗୃହରେ ଶିବଧନୁକୁ ଭାଙ୍ଗିଲେ ।
ଲକ୍ଷେ ନରପତିଙ୍କର ମୁଖେ କାଳି ଦେଇ
ସୀତା ସଙ୍ଗଙ୍କି ବିବାହ ହେଲେ ରାଘବରାୟ ।
ତହୁଁ ଆସି ପରଶୁରାମେ ବାଟରେ ଜଣିଲେ
ବଇଷ୍ଣବୀ ଧନୁ ପରଶୁରାମ ସମର୍ପିଲେ ।
ତଦନ୍ତରେ ଅଯୋଧ୍ୟାରେ ହୋଇଲେ ପ୍ରବେଶ
ସୀତା ଘେନ ଥୋକେ ଦିନ ରହି ରଘୁଶିଷ୍ୟ
ଏମନ୍ତେଣ ଦଶରଥ ପାତ୍ର ମନ୍ତ୍ରୀ ଘେନ
ରାମେ ରାଜା କରିବାକୁ ବିଚାରିଲେ ପୁଣି ।

ଜ୍ୟୋତିଷ ଗଣିଣ ଶୁଭଲଗ୍ନ ଖୋଜାଇଲେ
ଖୋଜି ଖୋଜି ଶୁଭଦିନ କେବେ ନପାଇଲେ
ରାମଚନ୍ଦ୍ର ରାଜା ହେବେ ଶୁଭିଲା ନଗରେ
ଦେବଦୂତ ମନ୍ଥରା ଥିଲାକ ରାଜପୁରେ ।
କୈକେୟୀର ଅଟଇ ସେ ପ୍ରିୟ ସହଚରୀ
ରାମ ରାଜା ହେବା କଥା ଜଣାଏ ଚଞ୍ଚୁରୀ ।
କୈକେୟୀ ଏ ବାଣୀ ଶୁଣି ଆନନ୍ଦିତ ହେଲେ
ବଧାଇ ରୂପେ ତାହାକୁ ଧନ ରତ୍ନ ଦେଲେ ।
ସତେ କଣ ରାମଚନ୍ଦ୍ର ହେବେ ନୃପବର
ଆହୁରି ବଧାଇ ତୋତେ ଦେବଇଁ ଅପାର ।
ଏହା ଶୁଣିଣ ତାହାର ସାହସ ଭାଙ୍ଗିଲା
ଦେବଙ୍କ କାର୍ଯ୍ୟ ନୋହିବ ମନେ ବିଚାରିଲା ।
ବହୁତ ପ୍ରକାରେ ତାଙ୍କୁ କହିଲା ମଣାଇ
ସେ କଥାକୁ କାନ ଦେଲେ ନାହିଁ ମହାଦେଈ
ଯେଣୁକରି ମହାଦେଈ ସମ୍ମତ ନୋହିଲେ
ସ୍ୱର୍ଗେ ଶଚୀପତି ଥାଇ ସେ କଥା ଜାଣିଲେ ।
ସଭା ମଣ୍ଡାଇଣ ଇନ୍ଦ୍ର ବସିଲେ ସ୍ୱର୍ଗରେ
ମନ୍ଥରାକୁ ପଠାଇଲୁ ଦଶରଥ ଘରେ ।
ବହୁ ପ୍ରକାରେ ମଣାଇ କହିଲା ଚତୁରୀ
କେତେ ନ ମାନଇ ଦଶରଥର ଘରଣୀ ।
ଅଧର୍ମର କଥା ସେ ନ ଜାଣଇ କେକେୟୀ
ମନ୍ଥରାର ବୋଲ ସେହୁ କେତେ ମାନଇ
କିସ ଉପାୟ କରିବା ଏବେ ଦେବତାଏ
ବିଚାରି କରିଣ ବୋଲ ସକଳ ବିଷୟେ ।
ଇନ୍ଦ୍ରଙ୍କର ବଚନରେ କହେ ବୃହସ୍ପତି
ସାବଧାନ ହୋଇ ତୁମ୍ଭେ ଶୁଣ ସୁରପତି ।
ଆମ୍ଭର ପାଇଁ ମନ୍ଥରା କହିଲାକ ମିଛ
ତା କଥାରେ ଅନ୍ତର ନ ମଣଇ ପ୍ରତ୍ୟକ୍ଷ ।
ଏବେ ଖଳବଳ ତାଙ୍କଠାକୁ ଚଳିଯାନ୍ତୁ
କୈକେୟୀ ଦେହରେ ଦୁହେଁ ବିଶ୍ରାମ କରନ୍ତୁ
ଦେବତାଏ ଖଳ ବଳ ଦୁହିଙ୍କି ଗାଇଲେ
ମର୍ତ୍ତ୍ୟପୁରେ ଯାଅ ବୋଲି ତାଙ୍କୁ ଆଜ୍ଞା ଦେଲେ
ଆଜ୍ଞା ପାଇଣ ଚଳିଲେ ସେହି ଖଳ ବଳ
ଅଯୋଧ୍ୟା କଟକେ ଯାଇ ମିଳିଲେ ତତ୍କାଳେ ।
କୈକେୟୀ କଣ୍ଠରେ ଖଳ ଯାଇଣ ବସିଲା
ବଳ ଯାଇ ଦଶରଥ ହୃଦେ ସମାଇଲା ।

ନଗ୍ର ବୁଲି ଯାଇଥିଲା ମନ୍ଥରା ଚତୁରୀ
କୈକେୟୀ ଆଗରେ ଆସି ମିଳିଲା ଛନ୍ଦିଣି ।
କୈକେୟୀ ପୁଚ୍ଛିଲା ମନ୍ଥରାକୁ ଥିଲୁ କାହିଁ
ସେ ବୋଇଲା ତୋତେ ମୁହିଁ କିସ କହିବଇଁ
ଖାଇବାର ଖତ ତୁ ପରକୁ ଦେଉ ଯାଚ
ନିଜ ପୁତ୍ରେ ଛାଡ଼ି ପୁତ୍ର କାଖାଉ ମୃଗାକ୍ଷି ।
ଶ୍ରୀରାମ ଯଦ୍ୟପି ରାଜା ହେବେ ଅଯୋଧ୍ୟାରେ
ତୋହର ପୁତ୍ର ରାମଙ୍କୁ ଖଟିବ ନିରନ୍ତରେ ।
ଦୋଷ ଦେଖି ରାମ ଭରତକୁ ଦଣ୍ଡ ଦେବେ
ତୋହର ପୁତ୍ର ପାଇକ ସଙ୍ଗତରେ ଥିବେ ।
ଯେଣୁ ଖଳ ପୁରୁଷ କେକେୟୀ ହୃଦେ ଥିଲା
ମନ୍ଥରା ବାକ୍ୟ ଅମୃତ ପରାଏ ମଣିଲା ।
ଆଜ ରାତେ ରାଜାଙ୍କୁ ମୁଁ ସତ୍ୟ କରାଇବି
ଭରତକୁ ଅଯୋଧ୍ୟାରେ ରାଜପଣ ଦେବି ।
ସୁମନ୍ତ୍ରକୁ ଗାଇ ଦଶରଥ ଆଜ୍ଞା ଦେଲେ
ଅଭିଷେକ ଦ୍ରବ୍ୟମାନ ଅଣାଅ ବୋଇଲେ ।
ରାଜା ଆଜ୍ଞାରେ ସୁମନ୍ତ୍ର ତହୁଁ ଚଳିଗଲା
ଅଭିଷେକ ଦ୍ରବ୍ୟମାନ ସବୁ ଅଣାଇଲା ।
କାଲି ପ୍ରଭାତରେ ରାମ ହେବେ ନୃପବର
ନଗରେ ଘୋଷଣା ଦିଆଇଲେ ତତପର ।
ରାଜାର ଆଜ୍ଞାରେ ମନ୍ତ୍ରୀ ସବୁ ଭିଆଇଲା
ନଗର ପୁରବାସୀରେ ଘୋଷଣା ଶୁଭିଲା ।
ଏଥୁ ଅନନ୍ତରେ ପୁଣି ଶୁଣ ହୋ ବିଧାନ
କୈକେୟୀ ପୁରେ ପ୍ରବେଶ ହେଲେ ନୃପଗଣ
ମଥାପୋତି କଇକେୟୀ ବସି କାନ୍ଦୁଅଛି
ନୃପତିଙ୍କ ମଥା ଟେକି ନ କହଇ କିଛି ।
ମନ୍ଥରାକୁ ଡକାଇଣ ପୁଚ୍ଛେ ନୃପରାୟ
କଇକେୟୀର ଦୁଃଖରେ ଦହେ ମୋର କାୟ
ଦଶରଥ ପୃଚ୍ଛା କଲେ ମନ୍ଥରା ତୁ ଶୁଣ
ଭରତ ଜନନୀ କପାଁ କରନ୍ତି କ୍ରନ୍ଦନ ।
ଶ୍ରୀରାମ ରାଜା ହୋଇବେ ଜାଣ ଆଜଦିନ
ଉତ୍ସବ କାଳେ ବିରସ କିପାଇଁ ବଦନ ।
ମନ୍ଥରା ବୋଲେ ଅନେକ ଦିନୁ କାନ୍ଦୁଅଛି
ଏଥିର କାରଣ ମୁଁ ତ ନ ଜାଣଇ କିଛି ।
ଦଶରଥ ବୋଇଲେ ଗୋ ତାହାଙ୍କୁ ପଚାର
କପାଁ କ୍ରନ୍ଦନ କରନ୍ତି ଉତ୍ସବ ଦିନର ।

ମନ୍ଥରା ବୋଇଲା କପାଁ କାନ୍ଦ ମହାରାଣି
ମଥା ଟେକି କଥା କପାଁ ନ କହୁ ତରୁଣି ।
ତହୁଁ କୈକେୟୀ ବୋଇଲା ପୌରୁଷ ବଚନେ
କେବେହେଁ ପ୍ରତେ ନ କରିବ ଆପଣାର ମନେ ।
ପୂର୍ବେ ତିନବର ମୋତେ ରାଜା ଦେଇଥିଲା
ଏକବର ଆଜ ଯାଏ ମୋତେ ସେ ନ ଦେଲା
ଏକଥା ଶୁଣି ନୃପତି ବୋଲନ୍ତି ବଚନ
ଏବେ ଯାହା ମାଗିବ ତା ଦେବି ଏହିକ୍ଷଣ ।
ସତ୍ୟକରି ବଚନ ମୁଁ କହୁଅଛୁ ଯାହା
କେବେହେଁ ଅନ୍ୟଥା ମୁହିଁ ନ କରିବ ତାହା
ନରପତିଙ୍କର ରାଣୀ ଦୃଷ୍ଟା ବାକ୍ୟ ଶୁଣି
ବୋଇଲା ଭରତେ ରାଜା କର ନୃପମଣି ।
ଶ୍ରୀରାମ ବନକୁ ଯିବେ ଚଉଦ ବରଷ
ଅଯୋଧ୍ୟା କଟକେ ରାଜା ହେବ ମୋର ଶିଷ
ଏସନକ ବର ମୋତେ ଦିଅ ନୃପବର
ତୋହର ବର ଦେବାରୁ ହେବ ପୁରସ୍କାର
ଯେବଣ ଦଳ ପୁରୁଷ ହୃଦେ ବସିଥିବ
ଖଳ ପୁରୁଷ ତାହାକୁ ବେଗେ ଚେତାଇଲା ।
ଖଳବଚନ ଦୁହେଁ ଯାକ ହେଲେ ଏକ ମେଳ
ତେଣୁକରି କାର୍ଯ୍ୟ ସିଦ୍ଧ ହେଲା ଦେବଙ୍କର ।
ରାଣୀର ବଚନେ ରାଜା ସ୍ତବଧ ହୋଇଲା
କ୍ଷଣକାଳ ମୂର୍ଚ୍ଛିଭୂତ ହୋଇଣ ରହିଲା ।
ତାଳୁରେ ପାଣି ପଶିଲେ ଯେମନ୍ତେ ହୁଏ ପ୍ରାଣୀ
ତେସନକ ପରକାରେ ହେଲେ ନୃପମଣି ।
କୈକେୟୀକି ବୋଇଲେ ତୁ ମନ୍ଦକୃତ୍ୟ କଲୁ
ରାମଚନ୍ଦ୍ର ଭରତକୁ ଭିନ୍ନ କରାଇଲୁ ।
ଯାହା ହେବାର ତା ହେଲା ସତ୍ୟ କରିଛଇଁ
ଏତେବେଳେ ତାହା ନାସ୍ତି କରି ନ ପାରଇ
ରାମଚନ୍ଦ୍ର ଚଉଦ ବରଷ ବନେ ଯାଉ
ଭରତ ଅଯୋଧ୍ୟାପୁରେ ନୃପତି ବୋଲଉ ।
ଏତେକ ବୋଲିଣ ରାଜା ପଲଙ୍କେ ବସିଲା
କଇକେୟୀ ରାଣୀ ଯାଇ ଚରଣେ ଖଟିଲା ।
ଏହି ପରକାରେ ତହୁଁ ରାତ୍ର ଗଲା ପାହି
ଅଭିଷେକ ଦ୍ରବ୍ୟମାନ ସୁମନ୍ତ୍ର ଅଣାଇ ।
ଦେଖିଲା ସେ ନରପତି ମୌନେ ଛନ୍ତି ବସି
କରପଦ୍ମ ଯୋଡ଼ି ମନ୍ତ୍ରୀ ବଚନ ପ୍ରକାଶି ।
ଅଭିଷେକର ବେଳ ଯେ ହେଉଛୁ ଉତ୍ତର
କାହିଁ ପାଇଁ ସମସ୍ୟା ନ ଦିଅ ନୃପବର ।
ମନ୍ତ୍ରୀର ବଚନେ ବୋଲେ କଇକେୟୀ ରାଣୀ
କାଲି ତିନବର ଦେଇଛନ୍ତି ନୃପମଣି ।
ରାମଚନ୍ଦ୍ର ଚଉଦ ବରଷ ବନେ ଯିବ
ଭରତ ଅଯୋଧ୍ୟାପୁରେ ନୃପତି ହୋଇବ ।
ଉପରୋଧ କରି କଥା ନ ପାରନ୍ତି କହି
ମଉନ ହୋଇଣ ବସିଛନ୍ତି ନୃପସାଇଁ ।
ମନ୍ତ୍ରୀକି ଚାହିଁଣ ରାଜା ଏସନ କହିଲେ
ରାମଙ୍କୁ ହକାରିବାକୁ ମନ୍ତ୍ରୀକି ବୋଇଲେ ।
ଅତିବେଗେ ମନ୍ତ୍ରୀବର ତହୁଁ ଚଳିଗଲା
ବଶିଷ୍ଠ ଋଷିଙ୍କି ସବୁ ଚରିତ କହିଲା ।
ଶ୍ରୀରାମଚନ୍ଦ୍ରଙ୍କ ପାଶେ ପ୍ରବେଶିଲା ଯାଇ
ରାଜାଙ୍କ ଆଦେଶ ତୁମ୍ଭ ଚଳ ବେଗ ହୋଇ
ଶୁଣିକରି ରାମଚନ୍ଦ୍ର ଉଠିଲେ ବହନ
ଦଶରଥଙ୍କ ସମ୍ମୁଖେ ମିଳିଲେ ତକ୍ଷଣ ।
ନୃପତିଙ୍କି ଦେଖି ରାମ ନମସ୍କାର କଲେ
ଆପଣାର ଶିରେ ନେଇ ପାଦଗୋଟି ଦେଲେ
ଦଶରଥ ବୋଲନ୍ତି ରେ ରାମଚନ୍ଦ୍ର ଶୁଣ
ଚଉଦ ବରଷ ତୁହି ଯିବୁ ଘୋରବନ ।
ଭରତ ଅଯୋଧ୍ୟାପୁରେ ନୃପତି ହୋଇବ
ଯାହା ତୋହର କର୍ମରେ ଲେଖିଛୁ ଦଇବ
ଏତେ କହି ନରପତି ମଉନ ହୋଇଲେ
ଦୁଃଖଭରେ ରାମଚନ୍ଦ୍ରେ ଏରୂପେ କହିଲେ ।
ଶ୍ରୀରାମଚନ୍ଦ୍ର ବୋଇଲେ ନ ଭାଳ ହୋ ରାୟେ
ଚଉଦ ବରଷ ବନେ ଯିବଇଁ ନିଶ୍ଚୟେ ।
ପିତାଙ୍କ ପଦ୍ମରେ ନମି ହୋଇଲେ ବାହାର
ଯାଇଣ ମିଳିଲେ ବେଗେ କୌଶଲ୍ୟାର ପୁର
ମାତାଙ୍କର ମୁଖ ଚାହିଁ ଉଲଗି ହୋଇଲେ
ବନକୁ ଯିବାର କଥା ତାହାଙ୍କୁ ବୋଇଲେ
ଭରତ ଅଯୋଧ୍ୟାପୁରେ ହେବ ନୃପବର
କୈକେୟୀ ରାଣୀ ପିତାଙ୍କୁ ମାଗିଲେ ଏ ବର
ଶୁଣିକରି କଉଶଲ୍ୟା ହୋଇଲେ ବିକଳ
କାହିଁ ପାଇଁ ବନବାସ ଯିବୁ ରେ କୁମର ।
ରାମ ବୋଇଲେ ପିତାର ବାକ୍ୟ ନ ଲଙ୍ଘଇ
ଚୌଦବରଷ ବନକୁ ଅବଶ୍ୟ ଯିବଇଁ ।

ମାତାଙ୍କ ଓଳଗି ତହୁଁ ଶୀଘ୍ର ଚଳିଗଲେ
ସୀତାଙ୍କ ପୁରରେ ଯାଇ ପ୍ରବେଶ ହୋଇଲେ
ବୋଇଲେ ସଖି ଗୋ ଥାଅ ନିଶ୍ଚିନ୍ତରେ ରହି
ଚୌଦବର୍ଷ ପାଇଁ ମୁହିଁ ବନକୁ ଯିବଇଁ ।
ଏମନ୍ତ ବୋଲିଣ ପିତା ଅଜ୍ଞା ଦେଲେମୋତେ
କଳି ନ କରିବ ଶାଶୁମାନଙ୍କ ସଙ୍ଗତେ ।
ଏହି କଥା ଶୁଣି ସୀତା ଦୁଃଖିତ ହୋଇଲେ
ମୁହିଁ ତୁମ୍ଭ ସଙ୍ଗେ ଯିବି ଜାଣିଥାଅ ଭଲେ ।
ତୁମ୍ଭେ ଗଲେ ମୁହିଁ ନିଶ୍ଚେ ଛାଡ଼ିବି ଜୀବନ
ମୋତେ ଛାଡ଼ିକରି ତୁମ୍ଭେ ଯାଅନାହିଁ ବନ ।
ଜଳ ତେଜିଣ ମୀନ କି ବଞ୍ଚଇ ହେ ନାଥ
ତୁମ୍ଭେ ଛାଡ଼ିଗଲେ ମୁହିଁ ହୋଇବି ଅନାଥ ।
ସୀତାର ମୁଖରୁ ରାମ ଏସନକ ଶୁଣି
ତାଙ୍କ ହସ୍ତ ଧରିଣ କହନ୍ତି ରଘୁମଣି ।
ଏମନ୍ତେ ସୁମିତ୍ରା ମାତା ପାଇଲେ ବାରତା
ବୋଇଲେ ବନକୁ ନ ଯାଅ ତୁ ରଘୁଜାତା ।
ଶ୍ରୀରାମ ବୋଇଲେ ପିତା ବାକ୍ୟ ନ ଲଙ୍ଘଇ
ଆଗୋ ମାତ ନିଶ୍ଚେ ମୁହିଁ ବନକୁ ଯିବଇଁ ।
ବଚନ ନ ଲଙ୍ଘି ନିଶ୍ଚେ ଯିବି ଘୋର ବନ
ଚଉଦ ବରଷ ମୁହିଁ ରହିବି ଅରଣ୍ୟ ।
ଶ୍ରୀରାମ ବଚନ ଦୃଢ଼ କରି ରାଣୀ ଶୁଣି
ଭିତର ପୁରକୁ ଚଳିଗଲେ ଯୋଷାମଣି ।
ଲକ୍ଷ୍ମଣଙ୍କୁ ସଜକରି ଉଚିତ ଆଣିଲେ
ରାମ ସଙ୍ଗେ ଅରଣ୍ୟକୁ ଯିବାକୁ କହିଲେ ।
ସୀତା ଲକ୍ଷ୍ମଣ ଦୁହିଙ୍କୁ ସଙ୍ଗତରେ ଘେନି
ବନକୁ ଗମନ କଲେ ପ୍ରଭୁ ରଘୁମଣି ।
ସୁମନ୍ତ ସରଯୂ କୂଳେ ଛାଡ଼ିଣ ଅଇଲେ
ଶୂନ୍ୟ ରଥ ଘେନି ଅଯୋଧ୍ୟାରେ ପ୍ରବେଶିଲେ
ଦଶରଥ ନୃପତିଙ୍କୁ କଲେ ଦରଶନ
ହା ହା ରାମ ବୋଲି ପ୍ରାଣ ଛାଡ଼ିଲେ ରାଜନ ।
ଶୁଣ ଆଗୋ ଶଶୀମୁଖି ଶ୍ରୀକୃଷ୍ଣନନ୍ଦନୀ
ସରଯୂ ପାରି ହୋଇଣ ଗଲେ ରଘୁମଣି ।
ଗୁହକ ଶବରେ ଯାଇ ବାଟରେ ଭେଟିଲେ
ତାହାର ସହିତେ ରାମ ମିତ୍ରପଣ କଲେ ।
ବଟ କ୍ଷୀର ଘେନି ବାନ୍ଧିଲେକ ଜଟାଭାର
ଚିତ୍ରକୂଟରେ ତହୁଁ ଚଳିଗଲେ ରଘୁବୀର ।

ଚିତ୍ରକୂଟ ଗିରିରେ ପ୍ରବେଶ ହେଲେ ଯାଇ
ଥୋକେଦିନ ସେଠାରେ ରହିଲେ ରଘୁସାଇଁ
ମୃଗ ମାରିଣ ପ୍ରତ୍ୟହ କରନ୍ତି ଆହାର
କନ୍ଦମୂଳ ଭକ୍ଷି ପୁଷ୍ଟ ରଖନ୍ତି ଶରୀର ।
ରାମ ବନଯିବା ଭରତକୁ ଜଣା ନାହିଁ
ବେନି ସହୋଦର ଥିଲେ ଅଜାଘରେ ରହି
ଦଶରଥ ମୃତ୍ୟୁକଥା ବଶିଷ୍ଠ ଶୁଣିଲେ
ସୁମନ୍ତକୁ ଡାକି ସେହି ବିଚାର କରିଲେ ।
ତଇଳ କୁଣ୍ଡରେ ଶବ ଦେହକୁ ପକାଇ
ଗୁପତ କରିଣ ତହିଁ ରଖିଲେ ଲୁଚାଇ ।
ଭରତେ ଆଣିବାପାଇଁ ଚାର ପଠାଇଲେ
ତତ୍ପର ହୋଇ ବଶିଷ୍ଠ ତାଙ୍କୁ ଅଣାଇଲେ ।
ସବୁକଥା ବୁଝାଇଣ ଦୁହିଁଙ୍କୁ କହିଲେ
ଶୁଣି ଭରତ ଶତ୍ରୁଘ୍ନ ବିକଳ ହୋଇଲେ ।
ମାତାଙ୍କୁ ଝିଙ୍ଗାସି ସେହି ବହୁତ କହିଲେ
ପୁଣି ମନ୍ଥରାକୁ ବହୁଦଣ୍ଡ ସେ ଚହିଲେ ।
ପିତାଙ୍କ ଶବକୁ ଅନଳରେ ଦାହ କରି
ଦଶଦିନ କ୍ରିୟାଯାକ ବିଧିମତେ ସାରି ।
ଅନେକ ଦାନ ଧ୍ୟାନ ଯେ କଲେ ଭରତବୀର
ବିଧି ବିଧାନରେ କ୍ରିୟା ସାରିଲେ ସକଳ ।
ଏମନ୍ତେ ଚଉଦ ଦିନ ଯହୁଁ ବହିଗଲା
ବଶିଷ୍ଠଙ୍କୁ ଘେନିଣ ଭରତ ବିଚାରିଲା ।
ବୋଇଲା ଭରତ ବୀର ରାମ ଛନ୍ତି କାହିଁ
ଏହି କଥା ମୋତେ କହ ବଶିଷ୍ଠ ଗୋସାଇଁ ।
ତହୁଁ ବଶିଷ୍ଠ ବୋଇଲେ ଶୁଣ ହେ ଭରତ
ଚିତ୍ରକୂଟରେ ଅଛନ୍ତି ରଘୁକୁଳନାଥ ।
ଥାଟ ସଜକରି ଆମ୍ଭେ ଯିବା ବେଗେ ଚଳି
ଲେଉଟାଇ ଆଣିବାକ ତହୁଁ ବୃପଧାରୀ ।
ସାଜସଜ୍ଜା କରି ଥାଟ ନେଲେ ତତକ୍ଷଣେ
ଚିତ୍ରକୂଟେ ଯାଇ ମିଳିଲେକ ଛନବନେ ।
ଶ୍ରୀରାମଚନ୍ଦ୍ରଙ୍କୁ ତହିଁ ପାଇଲେକ ଭେଟି
ଆଗୁ ହୋଇ ତାଙ୍କଠାରେ ମିଳିଲେ ବଶିଷ୍ଠ ।
ପଛରେ ଯାଇ ଭରତ ଦରଶନ କଲେ
ଗଡ଼ଗଡ଼ି ରାମଙ୍କର ଚରଣେ ଶୋଇଲେ ।
ପିତା ମୃତ୍ୟୁବାରତା ପାଇଣ ରଘୁସାଇଁ
ବହୁତ କ୍ରନ୍ଦନ କଲେ ଶିରେ ହସ୍ତ ଦେଇ ।

ମନ୍ଦାକିନୀ ଜଳେ ଯାଇଁ କଲେକ ସ୍ନାହାନ
ନଳ୍ପ ପିଣ୍ଡ ତହୁଁ ଦେଲେ ପ୍ରଭୁ ରଘୁରାଣ ।
ପିଣ୍ଡ ଦେଇଣ ସେଠାରୁ ଶ୍ରୀରାମ ଆଇଲେ
ରାଜ୍ୟ ଗ୍ଲୁଡ଼ କର । ଆସ ଭରତେ ପୃଚ୍ଛିଲେ ।
ବଶିଷ୍ଠ ବୋଇଲେ ଶୁଣ ଆହେ ରଘୁନାଥ
ମାତାମାନେ ଆସିଛନ୍ତି ବେଗ ହୋଇ ଦେଖ ।
ମାତାଙ୍କୁ ଦେଖିଣ ରାମ ଓଳଗି ହୋଇଲେ
ସେମାନେ ତାହାଙ୍କୁ ଦେଖି କଲ୍ୟାଣ ବାଞ୍ଛିଲେ
ସୁମନ୍ତ ବୋଇଲେ ଶୁଣ ଆହେ ରାମ ରାଣ
ଭରତ ଆସିଅଛନ୍ତି ଯେକଣ କାରଣ ।
ଅଯୋଧ୍ୟାକୁ ଫେରି ଚଳ ଆହେ ରାମରାଣ
ନୃପତିପଣକୁ ତୁମ୍ଭେ ଅଟ ହେ ଭାଜନ ।
ଶ୍ରୀରାମ ବୋଇଲେ ଏହା କେବେହେଁ ନୁହଇ
ପିତାଙ୍କ ସତ୍ୟ ବଚନ ଲଙ୍ଘି ନ ପାରଇ ।
ଚୌଦ ବର୍ଷ ନ ପୂରିଲେ କେଭେ ଯିବ ନାହିଁ
ଏହି କଥା ଗୋଟି ମୋର ମନକୁ ନ ଯାଇ
ଶ୍ରୀରାମଙ୍କ ଦୃଢ଼ ବାକ୍ୟ ଶୁଣି ଭ୍ରତବୀର
ତାଙ୍କୁ ବୁଝାଇ କହିଲେ ଅନେକ ପ୍ରକାର ।
କେବେହେଁ ସେ ରାମଚନ୍ଦ୍ର ସମ୍ମତ ନୋହିଲେ
ଦେବକାର୍ଯ୍ୟ ପାଇଁ ସେହୁ ନିଷ୍ଠୁର ହୋଇଲେ
ରାମ ବୋଇଲେ ଭରତ ବେଗେ ଏଥୁ ଯାଅ
ଅଯୋଧ୍ୟା କଟକେ ଯାଇ ନୃପତି ତୁ ହୁଅ
ଚଉଦ ବରଷ ମୁହିଁ ପିତା ସତ୍ୟ ପାଳି
ତଦନ୍ତରେ ନୃପତି ହୋଇବି ତପଶାଳି ।
ଶ୍ରୀରାମଙ୍କ ବଚନ ଜାଣିଣ ମୁନିବର
ବୋଲେ ଦେବକାର୍ଯ୍ୟ ଏଥେ ହୋଇବ ଅପାର
ଶ୍ରୀରାମ କାଷ୍ଠ ପାଦୁକା ଭରତକୁ ଦେଲେ
ଏହା ସ୍ଥାପି ରାଜ୍ୟ ତୁମ୍ଭେ କର ଯାଇ ଭଲେ
ସେ ପାଦୁକାକୁ ଘେନିଣ ଭରତ ଫେରିଲେ
ନନ୍ଦି ଗ୍ରାମରେ ଯାଇଣ ପ୍ରବେଶ ହୋଇଲେ ।
ଶ୍ରୀରାମଙ୍କର ପାଦୁକା ସିଂହାସନେ ଥୋଇ
ଉଦାସ ରୂପେ ଭରତ ରାଜତ୍ୱ କରଇ ।
ଚିତ୍ରକୂଟ ପର୍ବତରେ ଶ୍ରୀରାମ ରହିଲେ
ସୀତା ଲକ୍ଷ୍ମଣଙ୍କୁ ଘେନି ତହୁଁ ଚଳିଗଲେ ।
ଦଣ୍ଡକାରଣ୍ୟରେ ଯାଇ ହୋଇଲେ ପ୍ରବେଶ
ସେ ବନରେ ଦେଖିଲେକ ବହୁ ମୃଗଶିଷ ।

ନବ ମୃଗ ଶମ୍ବରାଦ ମାରିଣ ଆଣନ୍ତି
ରନ୍ଧନ ଭୋଜନ କରି ଏବମ୍ ବଞ୍ଚନ୍ତି ।
ଏକେକ ଦିନ ସେଠାରେ ରହି ରଘୁରାଣ
ଅତିସୁଖେ ଦିନ କଟାଇଲେ ତିନିଜଣ ।
ତହୁଁ ରାମ ଅରଣ୍ୟରେ ବୁଲିବାକୁ ଗଲେ
ଋଷିମାନଙ୍କ ମଠିସ୍ଥା ଯାଇଣ ଦେଖିଲେ ।
ଦେଖିଲେ ଋଷିଏ ତହିଁ ଆନନ୍ଦରେ ଛନ୍ତି
ତାହା ଦେଖି ନିକଟେ ମିଳିଲେ ରଘୁପତି ।
ସେମାନଙ୍କୁ ରାମଚନ୍ଦ୍ର କଲେ ନମସ୍କାର
ସୀତା ଲକ୍ଷ୍ମଣଙ୍କୁ ଘେନି ବସିଲେ ପାଖର ।
ଶ୍ରୀରାମଙ୍କୁ ଦେଖିକରି ସର୍ବ ମୁନିମାନେ
ଆସନ ଗ୍ଲୁଡ଼ିଣ ଛିଡ଼ା ହେଲେ ତତକ୍ଷଣେ ।
କୃତାଞ୍ଜଳି ହୋଇ ସେହୁ କଲ୍ୟାଣ କରିଲେ
ପୁଣି ସ୍ୱର୍ଣ୍ଣପୀଠ ଘେନି ତାହାଙ୍କୁ ବନ୍ଦିଲେ ।
ଷଡ଼ର୍ଘ୍ୟ ଦେଇଣ ରାମଚନ୍ଦ୍ରଙ୍କୁ ପୂଜିଲେ
ତାହାଙ୍କ ମସ୍ତକେ ନେଇ ଦୂର୍ବାକ୍ଷତ ଦେଲେ
ପରଂବ୍ରହ୍ମ ଅଟନ୍ତି ସେ ପ୍ରଭୁ ନାରାୟଣ
ଶ୍ୟାମଳ ବର୍ଣ୍ଣ ତାଙ୍କର କମଳ ଲୋଚନ ।
ତାଙ୍କ ରୂପ ଦେଖିକରି ସର୍ବ ଋଷିମାନେ
କନ୍ଦର୍ପ ଜ୍ୱରରେ ଘାରି ହୋଇଲେ ତକ୍ଷଣେ ।
ବୃକ୍ଷମାନଙ୍କ ମୂଳରେ ଆଉଜିଲେ ଯାଇ
କନ୍ଦର୍ପର ଜ୍ୱରରେ ବୁଡ଼ିଲା ତାଙ୍କ ଦେହି ।
ମୁନିଙ୍କର କାମଜ୍ୱର ଜାଣିଲେ ଶ୍ରୀରାମ
ବୋଇଲେ ମୋ ରୂପ ଦେଖି ହୋଇଲେ ଅଜ୍ଞାନ
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ତପୀଗଣେ
ତୁମ୍ଭର କଥା ସକଳ ଜାଣିଲୁ ସୁମନେ ।
ଆମ୍ଭ ରୂପ ଦେଖି ମଦନରେ ବଶ ହେଲ
କନ୍ଦର୍ପ ରସରେ ତୁମ୍ଭେ ଚିତ୍ତ ବୁଡ଼ାଇଲ ।
ଏଥିର କାରଣ ଆମ୍ଭେ କହିବା ଥୋକାଏ
କାମଭୋଗ ଇଚ୍ଛା ଯେବେ ହେଲା ତୁମ୍ଭ କାୟେ
ସୁନ୍ଦରୀର ରୂପ ତୁମ୍ଭେ ଧରିବ ହେ ମୁନି
ତହିଁର ଉପାୟ କହିଦେବା ପରିମାଣି ।
ଦ୍ୱାପରଯୁଗରେ ତୁମ୍ଭେ ସ୍ତ୍ରୀ ରୂପ ହୋଇ
ଗୋପେ ଜନମିବ ଗୋପାଙ୍ଗିଣି ନାମ ବହି ।
ଷୋଳସହସ୍ର ମୁନି ତୁମ୍ଭେ ଗୋପାଙ୍ଗନା ହେବ
ଗୋପନଗରରେ ତୁମ୍ଭେ ଜନମ ଲଭିବ ।

ମଥୁରାରେ କଂସ ପାଇଁ ଜନମ ଲଭିବୁ
ପୃଥିବୀର ମହାଭାର ଉଶ୍ୱାସ କରିବୁ ।
କଂସ ଡରେ ବସୁଦେବ ମୋତେ ନେଇବ
ଗୋପପୁରେ ନନ୍ଦଘରେ ଛାଡ଼ିଣ ଆସିବ ।
ଅଷ୍ଟବର୍ଷ ଆମ୍ଭେ ଯାଇ ରହିବୁ ସେଠାରେ
ଅଷ୍ଟମଲ୍ଲ ବିନାଶିବୁ ମଥୁରା ପୁରରେ ।
ଗୋପରେ ତୁମ୍ଭେ ତରୁଣୀ ରୂପେ ଜନମିବ
ନିଜ ଭର୍ତ୍ତା ଗୋପାଳଙ୍କୁ ସେଠାରେ ପାଇବ
ସେ ଗୋପାଳମାନେ ତୁମ୍ଭ ଅଙ୍ଗ ନ ଛୁଇଁବେ
ନପୁଂସକ ରୂପେ ଘର ବନ ନେଉଥିବେ
ନନ୍ଦର ଗୃହରେ ଆମ୍ଭେ ବାଳରୂପ ଧରି
କ୍ରୀଡ଼ା ଛଳେ ଚରାଇବୁ ଆନନ୍ଦେ ବାଛୁରୀ ।
ଯମୁନା କଦମ୍ବ ମୂଳେ କରିଥିବୁ ଠଣା
ବୃନ୍ଦାବନେ କେଳି ଆମ୍ଭେ କରିବୁ ରଚନା ।
ମୋହନ ବଂଶୀ ବଜାଇ ତୁମ୍ଭଙ୍କୁ ମୋହିବୁ
ବୃନ୍ଦାବନେ ତୁମ୍ଭସଙ୍ଗେ କେଳି ଆରମ୍ଭିବୁ ।
ପ୍ରେମାଲିଙ୍ଗନ କରିବ ତୁମ୍ଭେ ଆମ୍ଭ ତୁଲେ
ନିଜ ଶରୀର ପାଇବ ତେବେ ଅନ୍ତଃକାଳେ ।
ଏସନ ପ୍ରକାରେ ବାକ୍ୟ କହି ଭଗବାନ
ସୀତା ଘେନି ଅରଣ୍ୟରେ ପଶିଲେ ଯାଇଣ ।
ତୁମ୍ଭେ ଶୁଣିଲଟିକି ଗୋ ଦେବୀ ମହାମାୟି
ଏସନକ ପ୍ରକାରେ ଗୋ ଥିଲେ ମୋର ଋଷି
ଏଣୁକରି ଆମ୍ଭେ ତାଙ୍କୁ ନ ପାରୁ ମୁହିଁ
ସ୍ୱକୃତଗତ ସେମାନେ ନ ପାନ୍ତି ଉପେକ୍ଷି ।
ପୂର୍ବେ ବିଶ୍ୱନାଥ ତାଙ୍କୁ ଦେଇଥିଲେ ବର
ଋଷିଙ୍କର ପୂରୁବ କଥା ଶୁଣ ତୁ ଈଶ୍ୱର ।
ସତ୍ୟଯୁଗର ବାରତା ଶୁଣ ସଙ୍ଗାତୁଣି
ଏକମନେ ଶୁଣ ତୁହେ ପ୍ରାଣର ମିତଣି ।
ଋଷି ଥାଆନ୍ତି ଷୋଡ଼ଶ ସହସ୍ର ମୁନିମାନେ
ଗଙ୍ଗାକୂଳେ ତପ କରୁଛନ୍ତି ଅନୁକ୍ଷଣେ ।
ବାଲୁକାର ଲିଙ୍ଗ ସ୍ଥାପି ଧୂପଦୀପ ଦେଇ
ଗଈଶ ବିଲ୍ୱ ପତର ଦୁବୁରି ଚଢ଼ାଇ ।
ଘଣ୍ଟାର ଶବଦକରି କରତାଳ ବାଇ
ଶ୍ରୀବିଶ୍ୱନାଥଙ୍କୁ ମନମଧ୍ୟେ ଥାନ୍ତି ଧ୍ୟାୟି ।
ତାହାଙ୍କର ତପସ୍ୟା ଦେଖିଣ ବିଶ୍ୱନାଥ
ପରସନ୍ନ ହୋଇଣ ବୋଇଲେ ଉମାକାନ୍ତ ।

ଏତେବଡ଼ ତପ ଗୋଟା କିପାଇଁ କରୁଛ
କାୟା କଦର୍ଥନ କରି ବ୍ୟଥା ପାଉଅଛ ।
ଏହା ଶୁଣି ତପୀମାନେ ବୋଲନ୍ତି ବଚନ
ଯେବେ ଆମ୍ଭଙ୍କୁ ପ୍ରସନ୍ନ ହେଲେ ତ୍ରିଲୋଚନ
ଏକ ବର ମାଗିବୁଁ ହୋ ଯେବେ ପାରି ଦେଲ
ତେବେ ଆମ୍ଭମାନଙ୍କର କଷ୍ଟ ପାରି ହୋଇ
ଆମ୍ଭମାନଙ୍କୁ ପୁଛିଲ କିପାଁ ତପ କରି
ସାବଧାନ ହୋଇ ଶୁଣ ଋଷିଙ୍କ ଈଶ୍ୱର
ଏଡ଼େ ତପ ଆମ୍ଭେମାନେ କରୁଛୁ ଯହିଁକି
ତପସ୍ୟା ଫଳରୁ ଆମ୍ଭେ ପାଇବୁ ଯେପରିକି ।
ବିଶ୍ୱନାଥ ବୋଇଲେକି ନିଶ୍ଚେ ଦେବୁଁ ବର
ପ୍ରସନ୍ନ ଚିତ୍ତରେ ତୁମ୍ଭେ ମାଗ ଆମ୍ଭଠାରୁ ।
ତପସ୍ୱୀମାନେ ତାଙ୍କର ଆଜ୍ଞାରେ କହନ୍ତି
ଏକମନ ହୋଇ ତୁମ୍ଭେ ଶୁଣ ପଶୁପତି ।
ମୋକ୍ଷଗତି ପାଇବୁଁ ଏସନ ବର ଦେବ
ତେବେ କୃତାର୍ଥ ହୋଇବୁ ଆହେ ମହାଦେବ
ମୁନିଙ୍କର ମୁଖରୁ ଏସନ ବାକ୍ୟ ଶୁଣି
ବିସ୍ମିତ ହୋଇ ରହିଲେ ପ୍ରଭୁ ଶୂଳପାଣି ।
ମୋକ୍ଷଗତି ପାଇଁ ତୁମ୍ଭେ ଯେ ବର ମାଗିଲ
ଆମ୍ଭଯୋଗେ ସେହି କଥା ନୋହିବ ସଫଳ
ଯେ ନାରାୟଣ ଅଟନ୍ତି ଜଗତର ସାଇଁ
ସେହି ବିନା ମୋକ୍ଷ ବର ସବୁଙ୍କୁ ନ ଦିଅଇ ।
ଭକତବତ୍ସଳ ସେହୁ କରୁଣାସାଗର
ସମସ୍ତ ଦେବତାଙ୍କର ଅଟନ୍ତି ଠାକୁର ।
ଯେଣୁକରି ମୋତେ ତୁମ୍ଭେ ସେବା କଲ ମୁନି
ଏଥିର କାରଣ ଶୁଣ ଆହେ ତପୋଧନୀ ।
ସେବା କରିବା ତୁମ୍ଭର ବିଫଳ ନ ହେଉ
ସେବାରେ ଫଳ ତୁମ୍ଭଙ୍କୁ ନିଶ୍ଚେ ପ୍ରାପ୍ତ ହେଉ
ତ୍ରେତା ଅନ୍ତେ ଦ୍ୱାପରରେ କହ୍ନା ଅବତାରେ
ନାରାୟଣ ଅବତାର ହେବେ ମର୍ତ୍ତ୍ୟପୁରେ ।
ପୃଥିବୀର ମହାଭାର ଉଶ୍ୱାସିବା ପାଇଁ
ମଥୁରାପୁରେ ଜନ୍ମିବେ ଦେବ ହରିଗ୍ରାହୀ ।
ବସୁଦେବଙ୍କ କୁଳରେ ହରି ହେବେ ଜାତ
କଂସ କେଶୀ ଅଷ୍ଟମଲ୍ଲ କରିବେ ନିପାତ ।
କଂସ ଡରେ ବସୁଦେବ ଗୋଟାଇଣ ନେବ
ଗୋପେ ନନ୍ଦର ଗୃହରେ ଛାଡ଼ିଣ ଆସିବ ।

ଆଠବର୍ଷ ପୂରିଯନ୍ତେ ସେଠାରେ ରହିବେ
ତେବେ ସେ ଅସୁରବଳ ନିଧନ କରିବେ ।
ତୁମ୍ଭେ ଷୋଳସହସ୍ର ମୁନି ଏମନ୍ତ କରିବ
ଗଉଡ଼ୁଣୀ ରୂପେ ଗୋପେ ଜନମ ଲଭିବ ।
ବ୍ରଜସ୍ତ୍ରିରି ରୂପେ ତହିଁ ହେବ ତୁମ୍ଭେ ଜାତ
ନପୁଂସକ ହୋଇବେଟି ତୁମ୍ଭ ନିଜ କାନ୍ତ ।
ତୁମ୍ଭ ଅଙ୍ଗ କେବେହେଁ ନ ଛୁଇଁବେ ଗୋପାଳ
ନପୁଂସକ ହୋଇ ବଞ୍ଚିଥିବେ ସବୁ କାଳ ।
ତୁମ୍ଭେମାନେ ସ୍ତ୍ରିରିରୂପେ ଗୋପେ ଜାତ ହେବ
ପ୍ରେମ ଭକତି ଭାବରେ କୃଷ୍ଣଙ୍କୁ ପାଇବ ।
ସର୍ବଦା ଭଜିବ ତୁମ୍ଭେ ଗୋବିନ୍ଦଙ୍କୁ ମନେ
ଭୋଜନ ଶୟନେ ଭଳୁଥିବ ଜନାର୍ଦ୍ଦନେ ।
ପ୍ରେମଭାବେ ସେ ତୁମ୍ଭଙ୍କୁ ମୁର୍ଚ୍ଛି ନ ପାରିବେ
ହାସ୍ୟ ପରିହାସରେ ସେ ସବୁ ବଞ୍ଚୁଥିବେ ।
ବେଣୁଧ୍ୱନି କରି ମୋହୁଥିବେ ତୁମ୍ଭ ଚିତ୍ତ
ଏକମନେ ଶୁଣ ତୁମ୍ଭେ ତହିଁର ବୃତ୍ତାନ୍ତ ।
ଶୁଣ ତୁ ହେ ପରୀକ୍ଷିତ ଏ ପୁରାଣ ଧ୍ୱନି
ପଞ୍ଚ ମହାପାତକ ତୁ ଖଣ୍ଡ ଏହା ଶୁଣି ।
ଶ୍ରୀବାସୁଦେବ ରୁକ୍ମିଣୀ ଆଗରେ କହନ୍ତି
ଶୁଣିଲେ ମହାପାତକ ନ ଆସଇ ଜନ୍ତି ।
ତୁ ଯେ ପୁଚ୍ଛିଲୁ ମଥୁରା ମଙ୍ଗଳ ଚରିତ
ଏକମନେ ଶୁଣ ତୁମ୍ଭେ ତହିଁର ବୃତ୍ତାନ୍ତ ।
ବନ୍ଦଇ ଶ୍ରୀଜଗନ୍ନାଥ ଜଗତର ପତି
ଜଗତଜନଙ୍କ ହିତେ ଚତୁର୍ଦ୍ଧା ମୂରତି ।
ରତନ ସିଂହାସନରେ ବିଜେ କରିଅଛ
ଭକ୍ତଜନମାନଙ୍କର ଆରତ ନାଶୁଛ ।
ଅବିକାର ପୁରୁଷ ହେ ବିକାର ତୋ ନାହିଁ
କଇବଲ୍ୟଦାତା ତୁହି ଅଛୁ ଭବଗ୍ରାହୀ ।
ଗୋପୀଙ୍କ ଯେସନ ଗୋପେ କରୁ ତୁ ରହସ
ରାଧା ତୁମ୍ଭ ବାମପାର୍ଶ୍ୱେ ଥାଆନ୍ତି ପୀତବାସ ।
ଶତେକ ଫଣା ଉପରେ ବିଜେ ଦେବବର
ଅଷ୍ଟଦଳ ଅଷ୍ଟକନ୍ୟା ଥାଆନ୍ତି ଆଧାର ।
ସେ ସିଂହାସନ ମହିମା କେ କହି ପାରଇ
ପଟାନ୍ତର ଦେବା ପାଇଁ ଆଉ କିଛି ନାହିଁ ।
କୋଟି ଯୁଗ ଧ୍ୟାୟି ହେବେ ନ ପାଇଲେ ଯାହା
ମୋର କିବା ଶକ୍ୟ ଅଛି ବର୍ଣ୍ଣିବାକୁ ତାହା ।
ମୁହିଁ ଅଚ୍ୟୁତଦାସ ଅଟେ ଜ୍ଞାନହୀନ ଅତି
ଗୋବିନ୍ଦ ଚରଣବିନ୍ଦୁ ନାହିଁ ଅନ୍ୟଗତି ।

---

## ରାଧିକାଙ୍କର ଜନ୍ମ ବୃତ୍ତାନ୍ତ ଓ ନାରଦଙ୍କର ଦେବକୀ ବସୁଦେବଙ୍କୁ ଆଶ୍ୱାସନା ଓ ଗୋପପୁରେ ଭ୍ରମଣ

ଏଥିଅନନ୍ତରେ ପରୀକ୍ଷିତ ନାମେ ରାଜା
ଶୁକମୁନି ଚରଣରେ କଲେ ଦିବ୍ୟ ପୂଜା ।
ତଦନ୍ତରେ କେଉଁ କଥା ହୋଇଲା ଗୋସାଇଁ
ଅପୂର୍ବ କଥା ଗୋଟିଏ ପଚାରିବି ମୁହିଁ ।
ତୁମ୍ଭେ ସର୍ବଜ୍ଞ ପୁରୁଷ ଅଟ ନାରାୟଣ ।
କଥାଏ ପୁଚ୍ଛିବି ମୁହିଁ କର ଅବଧାନ ।
ରାଧିକା ତୁମ୍ଭର ଲେଖାରେ ତ ମଉଳାଣୀ
ତାଙ୍କୁ କେମନ୍ତେ ହରିଲ ଆହେ ଚକ୍ରପାଣି ।
ବୃଷଭାନୁ ନୃପଙ୍କର ଅଟନ୍ତି ସେ ଜେମା
ଗଉଡ଼ ଚନ୍ଦ୍ରସେଣାଙ୍କୁ ବିଭା ହେଲା ବାମା ।
ବିଭା ହେବାର ବୃତ୍ତାନ୍ତ କହ ଚକ୍ରପାଣି
ସେ କଥା ଶୁଣିଲେ ଭ୍ରାନ୍ତି ଯିବ ଏହିକ୍ଷଣି ।
ପୂର୍ବର କଥା କେମନ୍ତେ ଗୋପୀଏ ଜାଣିଲେ
ବିମ୍ବାଧରେ ମନ୍ଦ ମନ୍ଦ ହାସ୍ୟ ପ୍ରକାଶିଲେ ।
ମାୟାଧର ପୁରୁଷ ତୁ ଜାଣୁ ସର୍ବମାୟା
ଅଷ୍ଟପାଟରାଣୀ ଦେହେ ଲଗାଇଲୁ କାୟା ।
ତହୁଁ ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ସର୍ବ ନାରୀ
ଶ୍ରୀରାଧାଙ୍କର ଚରିତ କହିବା ବିସ୍ତାରି ।
ବ୍ରହ୍ମା କ୍ଷୀରାବ୍ଧି ନିକଟେ ଯାଇ ଜଣାଇଲେ
ଅସୁର ଭୟରୁ ରକ୍ଷା କର ତୁମ୍ଭେ ଭଲେ ।
ବ୍ରହ୍ମାଙ୍କର ସ୍ତୁତି ବାକ୍ୟ ଶୁଣି ଶ୍ରବଣରେ
ଚକ୍ଷୁ ଫେଡ଼ଣ ତାହାଙ୍କୁ ଚାହିଁଲି ସତ୍ୱରେ ।
ଆମ୍ଭଙ୍କୁ ଦର୍ଶନ କରି ନମସ୍କାର କଲେ
ତେତିଶ କୋଟି ଦେବତା ପାଦରେ ଲୋଟିଲେ
ମଥା ପୋତିଣ ବସିଲୁ ଆମ୍ଭେ ମୌନହୋଇ
ମୌନ ଦେଖି ବ୍ରହ୍ମାଙ୍କର କର୍ମ୍ମ ଲିକ ଦେହି ।
ତହୁଁ ବହୁତ ବିକଳ ହେଲେ ଦେବବର
ଦେବତାମାନେ ବିକଳ ହୋଇଲେ ଅପାର ।
ବହୁ ସ୍ତୁତି କଲେ ସର୍ବେ ଆମ୍ଭ ମୁଖ ଚାହିଁ
ନ ରଖିଲେ ନାଶ ଆମ୍ଭେ ଗଲୁ ଭବଗ୍ରାହୀ ।

ଦେବତାଙ୍କର ଆତଙ୍କ ମନରେ ଜାଣିଲୁଁ
ପଞ୍ଚଭୂତ ଆମ୍ଭରେ ଯେ କଥାନ୍ତ ବାଣ୍ଟିଲୁଁ ।
ବୋଇଲୁ ଦେବତାଗଣ ଅଟ ମଦମତ୍ତ
ଅସୁରଙ୍କୁ ବର ଦଅ ଏସନକ ଖ୍ୟାତ ।
ନ ନବାର ମୋ ପାଶରେ ଗୁହାରି ଯେ କର
ଏ କଥା ତୁମ୍ଭର ପୁଣ କେବଣ ବେଭାର ।
ଇତ ପୂର୍ବେ ତ୍ରେତାଯୁଗେ ରାମ ଅବତାରେ
ଅମରବର ଯେ ଦେଲ ରାବଣା କୁମରେ ।
ଚଉଦଭୁବନ ସେହୁ ଜିଣିଲାକ ବଳେ
ଚଢ଼ିଁ ସେ ବାହିଲା ରଥ ଅମର ମଣ୍ଡଳେ ।
ତୁମ୍ଭେମାନେ ବଶୀଭୂତ ହୋଇଲ ତାହାର
ସେବାକଲ ଯାଇ ତାକୁ ଆସ୍ଥାନ ଚଳର ।
ବେଦବର ତାହା ପାଶେ ବେଦ ପଢ଼ୁ ଥିବ
ଏଣୁ ସୁରପତ ଦ୍ୱାରପାଳ ହୋଇଥାଇ ।
ଚନ୍ଦ୍ର ଦେବତା ତା ପାଶେ ଗନ୍ଧ ପରଷଇ
ବୈଦ୍ୟପଣେ ତାକୁ ଯମଦେବତା ଖଟଇ ।
ଅଗ୍ନି ଦେବତା ତାହାର ବସ୍ତ୍ର ପଖାଳଇ
ପବନ ଦେବତା ତାକୁ ଚାମର ଢାଳଇ ।
ଏହିରୂପେ ରାବଣକୁ ସେବାକରି ନତ୍ୟେ
ବୃହସ୍ପତି ଯାଇ ପାଞ୍ଜି କହଇ ନରତେ ।
ମହାବଳବନ୍ତ ସେହୁ ଅଟଇ ଅସୁର
ଦେବତାଙ୍କଠାରୁ ସେହୁ ଅଟେ ବଳୀୟାର ।
ଢକଲେ ମୋ ପାଶେ ଯାଇ ଗୁହାରି କରିଲ
ରାବଣ ଭୟେ ଛାଡ଼ିଲୁଁ ଆମ୍ଭେ ସ୍ୱର୍ଗପୁର ।
ତୁମ୍ଭର ଢକଲେ ମୁହିଁ ମଞ୍ଚେ ଜନମିଲି
ଗରୁଡ଼ ନ ଚଢ଼ି ଶଙ୍ଖଚକ୍ର ନ ଧଇଲି ।
ମନୁଷ୍ୟ ରୂପ ଧରଣ ମାଇଲି ରାବଣ
ଏଥିକୁ ବଞ୍ଚିର ଯେ ନ କଲ ସୁରଗଣ ।
ତୁମ୍ଭ ଛଳେ ମୁହିଁ ଯାଇ ଅସୁର ନାଶିଲି
ତୁମ୍ଭପାଇଁ ରାବଣକୁ ସଂହାର ମୁଁ କଲି ।
ସେକାଳରେ ବ୍ରହ୍ମହତ୍ୟା ଦୋଷଦେଲ ମୋତେ
ମୁଖ ନ ଚାହିଁବ ବୋଲି ବୋଇଲ ସମସ୍ତେ ।
ରାମ ଅବତାରେ ମୁହିଁ ପାଇଲି ଯେ କଷ୍ଟ
କହୁତର କଷ୍ଟ ମୋତେ ଦେଲ ସେ ପାପିଷ୍ଟ
ଦୁଃଖରେ ଆସିଣ ମୁହିଁ ଶୋଇଅଛୁ ଏଠେ
ପୁଣି ତୁମ୍ଭେମାନେ ଆସି ଜଣାଉଛ ମୋତେ ।

ମଞ୍ଚପୁରେ ମୁହିଁ ଆଉ ନୋହିବି ଜନମ
ରାକ୍ଷସ ନ ବଧିବି ମୁଁ ଭଲରୂପେ ଜାଣ ।
ଆମ୍ଭର ମୁଖରୁ ଏସନକ କଥା ଶୁଣି
କରପଦ୍ମ ଯୋଡ଼ି କହିଲେକ ଶୂଳପାଣି ।
ଏବେ କହ୍ନା ଅବତାର ତୁମ୍ଭର ହୋଇବ
ମଥୁରାରେ ଜନ୍ମ ଲଭି ଗୋପରେ ବଢ଼ିବ ।
ଷୋଳସସ୍ର ବ୍ରହ୍ମଋଷି ଗୋପୀ ରୂପ ଧରି
ଗୋପାଙ୍ଗନୀ ରୂପେ ତହିଁ ଥିବେ ଅବତରି ।
କମଳା ଜାତ ହେବ ବୃଷଭାନୁ ଘର
ଜନ୍ମେ ଜନ୍ମେ ତୁମ୍ଭର ସେ ଅର୍ଦ୍ଧାଙ୍ଗ ଶରୀର ।
ଲକ୍ଷ୍ମୀ ଅଂଶେ ଅଷ୍ଟବଂଶୀ ଲଭିବେ ଜନମ
ପରଂବ୍ରହ୍ମ ରୂପେ ତାଙ୍କୁ କରିବ ରମଣ ।
ବିରହ ବଂଶୀ ଗୋଟିକ ବ୍ରହ୍ମା ମୋତେ ଦେଲେ
ସେଥିରେ ଗୋପୀମାନଙ୍କୁ ମୋହିବ ଯେ ଭଲେ
ଏତେକ କହିଣ ବ୍ରହ୍ମା ମଉନ ହୋଇଲେ
ସତ୍ୟ ବଚନ କହିଣ ମୋତେ ଭଣ୍ଡାଇଲେ ।
ତାଙ୍କ ବଚନରେ ମୁହିଁ ଗୋପରେ ବଢ଼ିଲି
ଗୋପାଙ୍ଗନୀଙ୍କ ସଂଗତେ ପ୍ରିୟଭାବ କଲି ।
ନତ୍ୟସ୍ଥଳେ ରାଧିକାଙ୍କୁ ବାମରେ ବସାଇ
ନିତ୍ୟ ରହସ କରଇ ଷୋଡ଼ ମଧ୍ୟେ ଥାଇ ।
କ୍ଷଣକାଳ ରାଧିକାଙ୍କୁ ନ ପାରେ ମୁରୁଛି
ନିତ୍ୟ ରହାସରେ ବାଧା ନ ହୁଅଇ କିଛୁ ।
ରାଧା ନାମ ଗୋଟି ଆଗେ ପଛେ ମୋର ନାମ
ରାଧାପତି ବୋଲି ମୋତେ କରନ୍ତି ବ୍ୟାଖ୍ୟାନ
ତୁମ୍ଭେ ପଚ୍ଛୁରୁଛ ମୋତେ ରାଧାରୂପ ଗୁଣ
ପଟାନ୍ତର ରୂପ ନାହିଁ ତିନି ଭୁବନେଣ ।
ତୁମ୍ଭର ରୂପ ନୁହଇ ରାଧାର ସମାନ
ଅଯୋନିସମ୍ଭୂତା ସେହୁ ଅଟେ ପ୍ରତ୍ୟକ୍ଷେଣ ।
ଶ୍ରୀକୃଷ୍ଣଙ୍କର ମୁଖରୁ ଏସନକ ଶୁଣି
ତତକ୍ଷଣରେ ଶ୍ରୀରୁକ୍ମିଣୀ ଭାଷେ ମୃଦୁବାଣୀ ।
ବୋଇଲେ ହେ ଅବଧାନ କର ଚକ୍ରଧର
ଅଯୋନିସମ୍ଭୂତା ତାଙ୍କୁ କହିଲ ମୁଖର ।
ବୃଷଭାନୁ ନନ୍ଦନୀ ସେ ଅଟେ କମ୍ବୁପାଣି
ଭୁଲାଇ ଆମ୍ଭଙ୍କୁ କହୁଅଛ ଚକ୍ରପାଣି ।
ଶ୍ରୀମାୟାଧର ପୁରୁଷ ସବୁ ତୁମ୍ଭେ ଜାଣ
ମାୟା ନ କର ଆମ୍ଭଙ୍କୁ କହ ନାରାୟଣ ।

ରୁକ୍ମିଣୀ ସତ୍ୟଭାମା ଯେ ପରସ୍ପରନ୍ତ ହସି
ତାହାଙ୍କୁ କହନ୍ତ ମୃଦୁହାସେ ବ୍ରହ୍ମଋଷି ।
ଯେତେବେଳେ ମଞ୍ଚକୁ ମୁଁ ହୋଇଲି ବାହାର
ଲକ୍ଷ୍ମୀଙ୍କି ପଠାଇ ଦେଲି କରି ଆଗୁଁ ସାର ।
କାଳନ୍ଦୀ ଯମୁନା ନଦୀ ଉତ୍ତର କୂଳରେ
ବୃଷଭାନୁ ରାଜପଣ କରଇ ତହିଁରେ ।
ପଦ୍ମ ଫୁଲ ଗଛମାନ କାଳନ୍ଦୀରେ ଥାଇ
ଅନେକ କମଳ ପୁଷ୍ପ ତହିଁରେ ଫୁଟଇ ।
କୌତୁକେ ଭ୍ରମରମାନେ କରୁଥାନ୍ତି ଖେଳା
ନାନାବିଧ ପକ୍ଷୀ ଚିହ୍ନ କରୁଥାନ୍ତି ଲୀଳା ।
ଏମନ୍ତ ପ୍ରକାରେ ଲକ୍ଷ୍ମୀ ମଞ୍ଚକୁ ଆଇଲେ
ପଦ୍ମ ପତ୍ରର ଉପରେ ଶୟନ ସେ କଲେ
ଦେଖିକରି ପବନ ଯେ ବହେ ଖରତର
ମଳୟ ପବନେ ଦେହ ହୋଇଲା ଶୀତଳ ।
ବାଳକାର ରୂପଗୋଟି ଧଇଲା ତରୁଣୀ
ସାକ୍ଷାତେ ରାଧିକା ଦେବୀ ଅଟଇ ପଦ୍ମିନୀ ।
ସୌରଭ ଯେନ ବହଇ ମଳୟ ସମୀର
କୃଷ୍ଣପକ୍ଷ ଚନ୍ଦ୍ରବାର ଅଟେ ସେ ଦିନର ।
ବାୟୁବ୍ୟ ନାମେ କରଣ ଅଟେ ସେ ଦିନର
ତହିଁ ପୁଣି ଆୟୁଷ୍ମାନ ଯୋଗଟି ଆକର ।
ଦ୍ୱିଜା ନାମରେ ନକ୍ଷତ୍ର ଶେଷ ଲଗ୍ନ ବେଳେ
ମୃଗୟାକୁ ଗଲେ ବୃଷଭାନୁ ନୃପବରେ ।
ଚଳି ଯାଉଥିଲେ ସେହି କାଳନ୍ଦୀ ତଟରେ
ଦୃଷ୍ଟି ପଡ଼ିଲା କମଳ ବନର ଭିତରେ ।
ସୁରଙ୍ଗ କୁସୁମମାନ ଦେଖି ନୃପବର
ଆଣିବା ନିମନ୍ତେ ଶ୍ରଦ୍ଧା ବଳିଲା ତାଙ୍କର ।
ଭୃତ୍ୟମାନଙ୍କୁ ଚହିଁଣ ବୋଲନ୍ତି ବଚନ
ଫୁଲ ଯୋଡ଼ାଏ ତୋଳିଣ ଆଣ ଏହିକ୍ଷଣ ।
ରାଜାଙ୍କର ଆଜ୍ଞା ପାଇ ଭୃତ୍ୟ ଚଳିଗଲେ
କାଳନ୍ଦୀ ଭିତରେ ଯାଇ ବହନ ପଶିଲେ ।
ପୁଷ୍ପ ତୋଳୁ ତୋଳୁ ତାର ନୟନ ପଡ଼ିଲା
ପତ୍ର ଉପରେ ଦୁହିତା ଗୋଟିଏ ଦେଖିଲା ।
ଦଇବର କୃତ୍ୟ ତାହା କେ କରିବ ଆନ
ଭୃତ୍ୟ ତାକୁ ନିରେଖିଲା ହୋଇ ହର୍ଷ ମନ
ଦେଖିଲା କନ୍ୟା ଗୋଟିଏ ଶୋଇଛି ପତ୍ରରେ
କୃଷ୍ଣପକ୍ଷେ ଚନ୍ଦ୍ରମା କି ଉଇଁଛି ସେଠାରେ ।

କୋଟିଏ ରବି ତାହା ରୂପକୁ ନୋହେ ସରି
ପଟାନ୍ତର ଦେବାକୁ ଯେ ନାହିଁ ତିନପୁର ।
ଦେଖିକରି ଭୃତ୍ୟ ଚହିଁ ଆଇଲା ବହନ
ବେଗେ ଯାଇଁ ଜଣାଇଲା ରାଜା ସନ୍ନିଧାନ ।
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଅପୂର୍ବ କଥାଏ ଦେଖି ଆଇଲଇଁ ମୁହିଁ ।
ପଦ୍ମପତ୍ରେ ଶୋଇକରି ଦେଉଅଛି ରାବ
ସେ କନ୍ୟାକୁ ଦେଖିବ ଚାଲ ହୋ ନୃପଦେବ
ଚନ୍ଦ୍ରକିରଣ ପରାୟେ ତା ରୂପ ଦିଶଇ
ନିର୍ଧୂମ ଅନଳ ଜିଣି ତେଜ ପ୍ରକାଶଇ ।
ସ୍ୱୟଂ କମଳା ଦେବୀ କି ହୋଇଛନ୍ତି ଜାତ
କୋଟିଏ ରବି ନୁହଇ ତାହାର ସ୍ୱରୂପ ।
ଭୟରେ ତାହାର ପାଶେ ନ ପାରିଲି ଯାଇ
ଦଇବ ପୁରୁଷ ଯାହା ଅଛଇ ଭିଆଇ ।
ଆପଣା ନୟନେ ବୃଷଭାନୁ ନିରେଖିଲେ
ହୃଦ-ପଦ୍ମ ମଧ୍ୟେ ସେହି କଥାନ୍ତ ବାଣ୍ଛିଲେ ।
ରବି କିବା ସ୍ୱର୍ଗପୁରୁ ଆଇଲା ମଞ୍ଚକୁ
କମଳା ଆସେ କି ଲୋଭ କରିଣ ଫୁଲକୁ ।
ଏହା ରୂପ ଦେଖି ମନ ମୋହି ଯାଉଅଛି
ବହୁ ଉପକାର ହେବ ଚିତ୍ତରେ ଭାବୁଛି ।
ଏତେକ ବିଚାରି ରାଜା ମିଳିଲେ ପାଶରେ
ଭୟକରି ତାହାକୁ ସେ ନ ଧରେ କୋଳରେ
ଦଇବର ବଶ ହୋଇ ରାଜା ହେଳ ହେଲା
ଦୁହିତା ଗୋଟିକୁ ହସ୍ତେ ଯାଇଣ ଧଇଲା ।
ଦୁଇହାତ ନେଇ ଲଗାଇଲା ହୃଦୟର
ପଦ୍ମବନୁ ଘେନିଣ ଆଇଲା ନୃପବର ।
ପୁତ୍ର କନ୍ୟା କିଛି ନାହିଁ ମୋହର କର୍ମରେ
ଦୈବେ କନ୍ୟାଗୋଟିଏ ମୁଁ ପାଇଲି ଏଠାରେ
ତାକୁ ଘେନ ନରପତି ଦୋଳାରେ ବସାଇ
ଆପଣା ଗୃହକୁ ଗଲା ବେଗ ବେଗ ହୋଇ ।
ନିଜର ମନ୍ଦିରେ ଯାଇ ହୋଇଲା ପ୍ରବେଶ
ଭାର୍ଯ୍ୟା ଚଞ୍ଚଳାକୁ ବେଗେ ରାଇଲେକ ପାଶ ।
ବୋଇଲା ଗୋ ରାଣୀ ମୋର କଥା ଏକ କର
ଏ ଦୁହିତା ଗୋଟି ନେଇ ତୁମ୍ଭେ ପ୍ରତିପାଳ ।
ଦୁହିତାର ରୂପ ଦେଖି ରାଣୀ ପଚାରଇ
ଏମନ୍ତ ସୁନ୍ଦର ରୂପ ଦେଖିଛ କି କେହି ।

ଜାଣିଥାଅ ନିଶ୍ଚୟ ଏ ଅଟେ କମଳମା
ନାରାୟଣଙ୍କ ଘରଣୀ କଷ୍ଟ ନିବାରଣୀ ।
ଏହା ଯୋଗରେ ଅପୁତ୍ର ଦୋଷ ମୋର ଯିବ
ମୋହର କର୍ମକୁ ଯୁକ୍ତ ଦେଇଛନ୍ତି ଦଇବ ।
ପଦ୍ମବନରୁ ଜନ୍ମିଛି ଅଟେ ବଡ ଶୋଭା
ନାମ ଗୋଟି ଯେ ଏହାର ଦେବ ମୁହିଁ ରାଧା ।
ଭିତର ପୁରକୁ ଘେନିଗଲେ ମହାଦେଈ
ଅତି ଯତନ କରିଣ କନ୍ୟାକୁ ପାଳଇ ।
ରତ୍ନ ଖଟର ଉପରେ ଶୁଆଇଲେ ନେଇ
ତିନି ବତ୍ସର ବୃନ୍ଦଆ ଟାଣିଲେକ ତହିଁ ।
ଉତ୍ତାନଶାୟୀ ହୋଇଣ ଶୋଇଲେକ ବାଳା
କ୍ଷୀର ନ ଛୁଅଇଁ ସେହି ଫୁଲର ଦୁଲାଳୀ ।
ମଳମୂତ୍ର ତାର ନାହିଁ ନିର୍ମଳ ଶରୀର
ଉତ୍ତାନଶାୟୀରେ ଶୋଇଅଛି ପଲଙ୍କର ।
ତପବୃତ୍ତି ତାର ମୋର ଚରଣରେ ଦେଇ
ବସୁଭଇ ମର୍ତ୍ତ୍ୟେ ଜନ୍ମ ହେବେ ଭବଗ୍ରାହୀ ।
ଯେତେବେଳେ କୃଷ୍ଣ ଜନ୍ମହେବେ ମର୍ତ୍ତ୍ୟପୁର
କର୍ଣ୍ଣରେ ଶୁଣିଲେ ମୁହିଁ ହୋଇବ ସୁସ୍ଥିର ।
କୃଷ୍ଣଚନ୍ଦ୍ର ଗୋପେ ଯେବେ ହେବେ ଅବତାର
ତେବେ କ୍ଷୀର ନୀର ମୁହିଁ କରିବ ଆହାର ।
ଏମନ୍ତ ବଚନ ଦେବୀ ମଉନ ହୋଇଲେ
କାହାର ସଙ୍ଗରେ କଥା ଭାଷା ନ କହିଲେ
ବାଳୁତ ରୂପ ଗୋଟିକ ଦେବୀ ନ ଛାଡ଼ିଲା
ଜଡ଼ ସ୍ୱରୂପ ହୋଇଣ ମଉନେ ରହିଲା ।
ଯେଉଁ ଗୃହରେ ଦେବୀଙ୍କି ଶୁଆଇଲେ ନେଇ
ସେ ଗୃହେ ଜନ ମନୁଷ୍ୟ ନ ପଶିଲେ କେହି
ତହୁଁ ଏମନ୍ତେ ଥୋକାଏ କାଳ ବହିଗଲା
ଉତ୍ତାନଶାୟୀ ଅବସ୍ଥା ଦେବୀ ନ ଛାଡ଼ିଲା ।
ଶୁଣ ଭୂବି ରୁକ୍ମିଣୀ ଗୋ ଭୀଷ୍ମକଙ୍କ ଜେମା
ଏକମନେ ରାଧିକାର ଜନ୍ମ ଶୁଣ କନା ।
ଶ୍ରୀକୃଷ୍ଣଙ୍କର ମୁଖରୁ ଏସନକ ଶୁଣି
ସନ୍ତୋଷ ହତେ ବହୁତ ଭୀଷ୍ମକ ନନ୍ଦିନୀ ।
ଏଥୁଅନ୍ତେ କିସ ହେଲା ବୋଲ ହେ ଗୋସାଇଁ
ଆନନ୍ଦରେ ସେହି କଥା ଶୁଣିବଇଁ ମୁହିଁ ।
ତହୁଁ ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ରାଜଜେମା
ଏଥିର ଚରିତ ଆମ୍ଭେ ବୁଝାଇ କହିବା ।

ଏସନ ପ୍ରକାର କେତେ କାଳ ବହିଗଲା ।
ଦେବ ମଣ୍ଡାଇ ସ୍ୱର୍ଗରେ ମଘବା ବସିଲା ।
ନେକନରୁମ ପଠିଆଇ ଦେଲେ ନରହର
ମଥୁରାରେ ଜନମ କି ହୋଇଲେ ମୁରାରି ।
ଅସୁରଙ୍କ ଭୟେ ରହି ନ ପାରିଲୁ ସ୍ୱର୍ଗେ
ଉପଦ୍ରବ କଲା କଂସ ବଇରତା ଭାବେ ।
କି ବୁଦ୍ଧି କରିବା ବୋଲି ଦେବତା ଭଜନ୍ତି
ଚନ୍ଦ୍ରମା ଦେବତା ବୃହସ୍ପତିଙ୍କି ପୁଛନ୍ତି ।
ବୃହସ୍ପତି ବୋଇଲେକ ଏହା କର ଏବେ
ନାରଦଙ୍କୁ ପଠାଇଣ ଦେବା ତହୁଁ ଜବେ ।
ନାରଦ ଯାଇଣ ତହୁଁ ବୁଝିବେ ସେ କଥା
ତେବେ ସିନା ଫିଟିଯିବ ଆମ୍ଭ ମନ ବ୍ୟଥା ।
ଏତେ ବୋଲି ବୃହସ୍ପତି ନାରଦଙ୍କୁ ରାଇ
ସକଳ ଚରିତ ତାଙ୍କୁ କହିଲେ ବୁଝାଇ ।
ଦେବତାଙ୍କ ବଚନରେ ସେ ନାରଦ ମୁନି
ଦଣ୍ଡ କମଣ୍ଡଳୁ ବୀଣା ସ୍ୱହସ୍ତରେ ଘେନି
ବିଭୂତି ଶରୀରେ ଲେପି ପିନ୍ଧି କଉପୀନ
ବେଦଧ୍ୱନି କରି ବାହାରିଲେ ତପୋଧନ ।
କଳି ଧୂକୁଡ଼ି ମୁଣିକୁ ଜାକିଲେ କାଖର
ସ୍ୱର୍ଗପୁରୁ ଓହ୍ଲାଇ ଆସନ୍ତି ମୁନିବର ।
ମଥୁରାପୁରରେ ଯାଇ ହୋଇଲେ ପ୍ରବେଶ
ଆସ୍ଥାନରେ ବସିଛନ୍ତି ଉଗ୍ରସେନ ଶିଷ୍ୟ ।
ଦେଖି ନାରଦ ମୁନିଙ୍କ ତ୍ୱରିତ ଉଠିଲା
ଶିରେ କରି ନିବେଶିଣ ନମସ୍କାର କଲା ।
ସ୍ତୁତି ଉଚ୍ଚାରି କଲ୍ୟାଣ କଲେ ତପୋଧନ
ଆରୋଗ୍ୟ ଶରୀର ତୋର ହେଉ ନୃପଗଣ ।
ସୁକଲ୍ୟାଣ ବାଞ୍ଛା ଯହୁଁ କଲେ ତପୋବନ୍ତ
ତହୁଁ ବସିବାକୁ ଆଜ୍ଞା ଦେଲେ ନୃପନାଥ ।
କୁଶଳ ବାରତା ତାଙ୍କୁ ନାରଦ ପୁଛନ୍ତି
ସୁସ୍ଥ ଶରୀରରେ ପୁତ୍ର ପୌତ୍ର କି ଅଛନ୍ତି ।
କଂସ ବୋଲଇ ଗୋସାଇଁ ତୁମ୍ଭ ଆଶୀର୍ବାଦେ
ସମସ୍ତେହିଁ କୁଶଳରେ ଅଛୁଁ ଅପ୍ରମାଦେ ।
ନରପତି ପଚାରିଲେ ଥିଲ ମୁନି କାହିଁ
ନାରଦ ବୋଇଲେ ସ୍ୱର୍ଗୁ ଆଇଲୁଁ ଓହ୍ଲାଇ ।
ତୋତେ ଶଙ୍ଖ ଲିବା ପାଇଁ ଅଇଲୁ ଏଥକୁ
ଭବିଲୁଁ କଲ୍ୟାଣ କରି ଆସିବୁ ରାଜାକୁ ।

ଏବେ ଆମ୍ଭେ ଯାଉଅଛୁ ଗୋପପୁର ଯାଏ
ଥରେ ବେଙ୍ଗୁଳି ଆସିବୁ ନନ୍ଦ ନୃପରାୟେ ।
ଏତେ କହିଣ ନାରଦ ଆସ୍ଥାନୁ ଉଠିଲେ
ବସୁଦେବଙ୍କ ମନ୍ଦିରେ ଯାଇଣ ମିଳିଲେ ।
ବସୁଦେବ ତାଙ୍କୁ ଦେଖି ଓଳଗି ହୋଇଲେ
ମୋ କଷଣ ଦେଖ ବୋଲି ତାହାଙ୍କୁ କହିଲେ
ନାରଦ ବୋଇଲେ କିଛି ନ ଭାଳ ତୁ ବାବୁ
ଅଳପ ଦିନରେ ତୋର ଦୁଃଖ ଯିବ ସବୁ ।
ଦେବକୀ ବୋଇଲା ମୋର ଭାଇ କଂସାସୁର
ଅତି ନିଷ୍ଠୁର ଅଟଇ ସେହୁ ମହାବୀର ।
ସାତପୁତ୍ର ସେହୁ ମୋର ନିର୍ଦ୍ଦୟେ ମାଇଲା
ଅଷ୍ଟମ ଗର୍ଭର ବେଳ ପ୍ରବେଶ ହୋଇଲା ।
ଏହି ଗର୍ଭ ନାଶିବାକୁ ବିଚାରୁଛି ଦେଖ
ତୁମ୍ଭେ ଅଟ ମହାମୁନି ସର୍ବଜ୍ଞ ବିବେକ ।
ପୁଣି କଷ୍ଟ ବାରମ୍ବାର ଦେଲା ଭୋଜସାଇଁ
ଗର୍ଭର କଷ୍ଟ ତ ସହି କେବେ ନ ସରଇ ।
ନିର୍ମାଣ ଶରୀର ମୋର କପାଇଁ ରହିଛି
ପଞ୍ଚଭୂତ ଆତ୍ମା ମୋର ବିକଳ ହେଉଛି ।
ଏତେ କହି ଦେବକୀ ଯେ ବିକଳେ କାନ୍ଦିଲେ
ହସ୍ତ ଧରିଣ ନାରଦ ତାଙ୍କୁ ପ୍ରବୋଧିଲେ ।
ବୋଇଲେ ବିକଳ ତୁହି ନ ହୁଅ ଦେବକୀ
ମୋହର ବାକ୍ୟ ଗୋଟିକ ଦୃଢ଼ ନୁହଇ କି ।
ପୁଣି ବସୁଦେବେ ଚହିଁ ନାରଦ କହିଲେ
ମୋର କଥାଗୋଟି ଏବେ ଘେନ ତୁ ମନରେ
ଯେତେବେଳେ ପୁତ୍ର ଗୋଟି ଗର୍ଭରୁ ଜନ୍ମିବ
ଏଥିର ଚରିତ ତୋତେ ବୁଝାଇବା ସର୍ବ ।
କୁମାର ଜନ୍ମିବାବେଳେ ଯାଗରୁକ ଥିବୁ
ଖଟୁଲିରେ ଥୋଇଣ ତୁ ପୁତ୍ରେ ଘେନିଯିବୁ ।
ନନ୍ଦଘରେ ସେ ପୁତ୍ରକୁ ଆସିବୁ ତୁ ଥୋଇ
ଦଇବ ଘଟନା ଏହା ପୂର୍ବୁ ହୋଇଛଇଁ ।
ତହିଁ ଅଷ୍ଟ ବର୍ଷ ଯାଏ ବଢ଼ିବେ ମୋହନ
ତେବେ ପୃଥିବୀ ଉଶ୍ବାସ ହୋଇବଟି ଜାଣ ।
ଅଷ୍ଟମଲ୍ଲଙ୍କ ସହିତ କଂସ ନାଶ ଯିବ
ତେବେ ପୃଥିବୀର ଭାର ଉଶ୍ବାସ ହୋଇବ ।
ଅଳ୍ପଦିନ ମାତ୍ରକ ତୁ ଦୁଃଖେ ରହିଥିବୁ
ତୋ ଘରେ ନାରାୟଣଙ୍କ ଜନମ ଦେଖିବୁ ।

ପୁନରପି କଥାଏ ତୁ ହେଜୁ କରିଥିବୁ
ଆମ୍ଭର ବଚନ ହୃଦେ ଦୃଢ଼ ରଖିଥିବୁ ।
ଦଇବର ଭବିଷ୍ୟତ ଅଛଇ କଥାଏ
ସେହିଦିନ ନନ୍ଦର ଜନ୍ମିଥିବ ଦୁହିତାଏ ।
ନନ୍ଦ ଘରେ ପୁତ୍ର ଥୋଇ ଦୁହିତା ଆଣିବୁ
ଏହି ଗୁପ୍ତ କଥାଗୋଟି କାହାରେ ନ କହିବୁ ।
ଏତେ କହିଣ ନାରଦ ଗଲେ ଅନ୍ତର୍ଦ୍ଧାନେ
ଭବିଷ୍ୟତ କଥା କହିଦେଲେ ବିଦ୍ୟମାନେ ।
ଯମୁନା ନଦୀକ ମୁନି ପାରି ହୋଇ ଗଲେ
ନଦୀର କୂଳରେ ଯାଇ ପ୍ରବେଶ ହୋଇଲେ ।
ଦଣ୍ଡ କମଣ୍ଡଳୁ ବୀଣା କୁଶ ହେଡ ଥୋଇ
ମନରେ ବିଚାରି କଲେ ସ୍ନାନ କରିବଇଁ ।
ଅତି ପବିତ୍ର ଅଟଇ ଏ ଯମୁନା ଜଳ
ଏହା ଭାବି ତହିଁ ସ୍ନାନ କଲେ ତପୀବର ।
ନିତ୍ୟକର୍ମ କରି ତହୁଁ ଗଲେକ ବାହାରି
କଦମ୍ବ ତଳେ ମିଳିଲେ ଯାଇ ତପସ୍ବୀ ।
ତାହାକୁ ଦେଖିଣ ମୁନି ଅଳପ ହସିଲେ
ଏଥେ କୃଷ୍ଣ ବିହାସ କରିବେ ବିଚାରିଲେ ।
ଏହି ବୃନ୍ଦାବନ ଏହି ଯମୁନା ବାଲିରେ
ଶ୍ରୀକୃଷ୍ଣ ପାଦ ପଡ଼ିବ ଏଥିର ଉପରେ ।
ଏହି କୁଞ୍ଜ ଲତା ମଧ୍ୟେ ଦେବ ନାରାୟଣ
ଗୋପୀଙ୍କ ସଙ୍ଗେ କ୍ରୀଡ଼ିବେ ଆନନ୍ଦ ଭାବେଣ ।
ଏହା ବିଚାରି ନାରଦମୁନି ଚଳିଗଲେ
ଗୋପାଳଙ୍କ ସଙ୍ଗତରେ ଗୋଗୋଷ୍ଠେ ମିଳିଲେ
ଗାଈ ବାଛୁରି ଘେନିଣ ସର୍ବ ଗୋପଗଣ
ଚରାନ୍ତେ ବନେ ଦେଖିଲେ ଯାଇ ତପୋଧନ
ଧନ୍ୟ ଧନ୍ୟ ଏହାଙ୍କର ଅଟଇ ଜୀବନ
ଲୀଳା କରିବେ ଏହାଙ୍କ ସଙ୍ଗେ ଭଗବାନ ।
ଏହା ଭାବି ତହୁଁ ଚଳିଗଲେ ମହାମୁନି
ନନ୍ଦର ନଗରେ ଯାଇ ମିଳିଲେ ତକ୍ଷଣି ।
ଭିତର ପୁରରେ ନନ୍ଦ ବିଜେ କରିଥିଲେ
ନାରଦଙ୍କ ଆଗମନ ବାରତା ପାଇଲେ ।
ତରତରେ ନନ୍ଦ ଘରୁ ବାହାରି ହୋଇଣ
ଭକ୍ତିଭରେ ମୁନିଙ୍କର ବନ୍ଦିଲେ ଚରଣ ।
ନମସ୍କାର କରି ତାଙ୍କୁ କହଇ ବଚନ
କି ଭାଗ୍ୟରେ ମୁହିଁ ଆଜ ପାଇଲି ଦର୍ଶନ ।

ଧ୍ୟାନ ଜ୍ଞାନର ପ୍ରଭୁଙ୍କୁ ଭଜେ ତପୋବନ୍ତ
ଶୁଭକର୍ମେ ଆଜ ମୁହିଁ ହୋଇଲି ପ୍ରାପତ ।
ବ୍ରହ୍ମାଙ୍କର ନନ୍ଦନ ଯେ ଭଜେ ମୋର ପୁରେ
ଦେଖି କୃତାର୍ଥ ହୋଇଲି ଏ ପାପ ଶରୀରେ ।
ଏତେବୋଲି ନଉପରେ ଶୁଦ୍ଧ ଜଳ ଘେନ
ନାରଦଙ୍କର ଚରଣ ଧୋଇଲେ ସେକ୍ଷଣି
ଝୀନ ବସନ ଘେନିଣ ଚରଣ ପୋଛିଲେ
ପାଦୋଦକ ଘେନ ହସ୍ତେ ଗର୍ଭକୁ କ୍ଷେପିଲେ
ରତ୍ନ ପଲଙ୍କରେ ତାଙ୍କୁ ନେଇ ବସାଇଲେ
ହସ୍ତ ଯୋଡ଼ିକରି ନନ୍ଦ ଅଗ୍ରେ ଉଭା ହେଲେ
ନାରଦ ବୋଇଲେ ତୁମ୍ଭେ ବସ ନନ୍ଦଗଣ
ସକଳ କୁଶଳ କହ ଆମ୍ଭର ଆଗେଣ ।
ପରଜା ଏ କୁଶଳରେ ଅଛନ୍ତି ତୋହର
ଏକଥା ସଂକ୍ଷେପି ମୋତେ କହ ତୁ ସତ୍ୱର ।
ଗୋରୁ ଗାଈ ଦେଉଛନ୍ତିକି କ୍ଷୀର ଭଲେ
ଇନ୍ଦ୍ରଦେବ ତୋ ରାଜ୍ୟରେ ବର୍ଷୁଛନ୍ତି କାଳେ
ଏହା ଶୁଣି ନନ୍ଦ ବୋଲେ ଆହେ ତପସ୍ୱୀ
ତୁମ୍ଭ ଆଶୀର୍ବାଦେ ସର୍ବ କୁଶଳ ମୋହର ।
ଆବର କଥାଏ ମୁହିଁ କହୁଛି ତୁମ୍ଭର
ସାତଶ ପଞ୍ଚାଶ ବର୍ଷ ହୋଇଲା ମୋହର ।
ଆଜ ଯାଏ ପୁତ୍ର କନ୍ୟା କେହିହେଁ ନୋହିଲେ
ବିଧାତା ପୁରୁଷ ମୋତେ ଏତେ କଷ୍ଟ ଦେଲା
ପୁତ୍ର ପାଇଁ ମନ ଦୁଃଖ କରିବଇଁ କେତେ
ଦୁହିତା ଗୋଟିଏ ସୁଦ୍ଧା ନ ମିଳିଲା ମୋତେ
ଆହେ ମହାମୁନି ତୁମ୍ଭେ ଦୟା ମୋତେ କଲ
ଶଙ୍ଖୁଳିବାର ନିମନ୍ତେ ମୋ ପୁରେ ଅଇଲ ।
ନାରଦ ବୋଇଲେ ତୋତେ କହୁଛି କଥାଏ
କର୍ମରେ ତୋହର ଅଛି ମିଳିବ ତନୟେ ।
ଜଗତକର୍ତ୍ତା ତୋର ଗୃହେ ହେବେ ଅବତାର
ହର ବଳରାମ ତୋର ହୋଇବେ କୁମର ।
ଗଉଡ଼ କୁଳରେ ଭୁକ୍ତ ହୋଇଅଛୁ ଜାତ
ବ୍ରହ୍ମାଣ୍ଡର ନାଥ ନିଶ୍ଚେ ହେବେ ତୋର ସୁତ
ନିରଞ୍ଜନ ପୁରୁଷଙ୍କୁ ଘେନିବୁ ଯେ ଭୁକ୍ତ
ପୂର୍ବ ଜନମର ଭାଗ୍ୟ ତୋହର ଅଛଇ ।
ଅନ୍ତଃପୁରରେ ଥାଇଣ ଯଶୋଦା ଜାଣିଲେ
ଆସି ମୁନିଙ୍କର ପାଦେ ନମସ୍କାର କଲେ ।
ମୁନି ବୋଇଲେ କଲ୍ୟାଣ ହେଉ ମହାମାୟୀ
ପୁତ୍ର ଦୁହିତା ହୋଇବେ ସନ୍ଦେହ କପାଇଁ ।
ଯଶୋଦା ବୋଇଲେ ଭାଗ୍ୟବନ୍ତ ମୁଁ ଅଟଇ
ହେ ମୁନି ତୁମ୍ଭର ଦୟା ମୋଠାରେ ଅଛଇ ।
ତୁମ୍ଭର ଦୟା ଥିଲାକୁ ଶଙ୍ଖୁଳିଲ ଥରେ
ପୂର୍ବଭାଗ୍ୟ ମୋର ଦୃଶ୍ୟ ହେଲା ମୁନିବରେ ।
ତୁମ୍ଭର କଲ୍ୟାଣ ମୋତେ ହେଉ ପଦ୍ମପତ
ମହର୍ଷି ବୋଇଲେ ପୂର୍ଣ୍ଣହେଉ ମନୋରଥ ।
କେବେ ଜାଣ ଅନ୍ୟମତ ନୋହିବଟି ଏହା
ତୋର ଘରେ ଅବତାର ହେବେ ଚଉବାହା
ଏତେ କହିଣ ନାରଦ ବହନ ଉଠିଲେ
ଗୋପପୁର ଭିତରକୁ ବେଗେ ଚଳିଗଲେ ।
ପ୍ରଥମେ ମିଳିଲେ ଯାଇ ଦୂତିକା ମନ୍ଦିରେ
ତାହାର ଦୃଷ୍ଟି ପଡ଼ିଲା ନାରଦ ଉପରେ ।
ଦେଖିକରି ସହଚରୀ କରି ନମସ୍କାର
କିମର୍ଥେ ଏଥେ ବିଜୟ କଲ ମୁନିବର ।
କୃଷ୍ଣ ଆଜଯାଏ ଗୋପେ ନୋହିଲେ ଜନମ
କିସ ଦେଖିବା ନିମନ୍ତେ ଆସ ତପୋଧନ ।
ନାରଦ ବୋଇଲେ ଚିନ୍ତା ନ କର ଏଥିକି
ଥୋକେ ଦିନ ରହ ତୁମ୍ଭେ ସକଳ ଉପେକ୍ଷି
ଅବଶ୍ୟହିଁ ନାରାୟଣ ଆସିବେଟି ଏଥେ
ଦଇବ ଭିଆଇଅଛି ଜାଣିଥାଅ ଚିତ୍ତେ ।
ଦୂତି ବୋଲେ କେତେଦିନେ ଶ୍ରୀକୃଷ୍ଣ ଆସିବେ
କହ ତୁମ୍ଭେ ମୁନିବର ଜାଣିବୁଟି ଆମ୍ଭେ ।
ନାରଦ ବୋଇଲେ ତୁମ୍ଭେ ଶୁଣ ଗୋ ସୁମୁଖି
ଦେବକୀ ଗର୍ଭୁ ମିଳିବେ ଆସି କେନଭଇ ।
ଏଥିରେ ତୁମ୍ଭେ ସନ୍ଦେହ ନ କର ଗୋ କିଛି
ଅବଶ୍ୟ ଶ୍ରୀକୃଷ୍ଣ ହେବେ ନନ୍ଦରାଜା ବତ୍ସ ।
ଏତେ କହି ମୁନିବର ହୋଇଲେ ବାହାର
ଲଳିତା ପୁରେ ମିଳିଲେ ବ୍ରହ୍ମାଙ୍କ କୁମର ।
ତହିଁ ଲଳିତା ସଙ୍ଗତେ ଛନ୍ତି ଦଶଗୋଟି
ସେଠାରେ ନାରଦ ମୁନି ପ୍ରବେଶିଲେ ଯାଇଁ ।
ଲଳିତା ଦେଖିଣ ତାଙ୍କୁ ଓଳଗି ବହନ
ନମସ୍କାର କଲା ମୁନିବରଙ୍କ ଚରଣ ।
ଚରଣ ଉଦକ ନେଇ ଗର୍ଭକୁ କ୍ଷେପିଲା
ନସ୍ତବଲି ବୋଲିଣ ସେ ଶିରେ କର ଦେଲା ।

କରପତ୍ର ଯୋଡ଼ିଣ ସେ କହଇ ବଚନ
ଦିବ୍ୟ ଆସନରେ ତାଙ୍କୁ ବସାଇ ବନ୍ଦନ ।
ଦଶଗୋଟି ଗୋପାଙ୍ଗଣୀ ଅଛନ୍ତି ସଙ୍ଗରେ
ସମସ୍ତେ ନମିଲେ ଆସି ମୁନିଙ୍କ ପଦ୍ମରେ ।
ତାହାଙ୍କୁ କଲ୍ୟାଣ କଲେ ବ୍ରହ୍ମାଙ୍କ କୁମର
ପ୍ରାପତ ହେଉ ତୁମ୍ଭଙ୍କୁ ଶ୍ରୀକୃଷ୍ଣ ଯେ ବର ।
ନାରଦ ବଚନେ ହସିଲେକ ସର୍ବଗୋଷ୍ଠି
ବୋଇଲେ ଶ୍ରୀକୃଷ୍ଣବର ହେଉଛ ଗୋସାଇଁ ।
ଶୁପ୍ରଭାବେ ପୂର୍ବଜନ୍ମ କଥା ପଚ୍ଛରନ୍ତି
ସାବଧାନ ହୋଇ ତୁମ୍ଭେ ଶୁଣ ମହାଯତି ।
ଗୋପରେ ଜନ୍ମିବେ କୃଷ୍ଣ କରିଅଛୁଁ ଆଶ
ଏତେ ବିଳମ୍ବ କପାଇଁ କଲେ ପୀତବାସ ।
ନାରଦ ବୋଇଲେ ଆଅ ଅଳ୍ପଦିନ ରହି
ଅବଶ୍ୟ ପ୍ରାପ୍ତ ତୁମ୍ଭଙ୍କୁ ହୋଇବେ ଗୋସାଇଁ
ନାରଦଙ୍କ ବଚନରେ ସର୍ବେ ପ୍ରୀତେ ଗଲେ
କଲ୍ୟାଣ କରିଣ ତାଙ୍କୁ ନାରଦ ଉଠିଲେ ।
ବିଶ୍ୱଧୂଧ ହୋଇ ନାମ ସେ ଗୋପାଳଦ୍ୱାରେ
ନାରଦ ଯାଇଁ ମିଳିଲେ ତାହାଙ୍କପାଶରେ ।
ସେ ଗୋପାଳ ମୁନିଙ୍କର ପାଇଣ ବାରତା
ମୁନିପାଶେ ମିଳି ଜାଣିବାକୁ ତତ୍ତ୍ୱକଥା ।
ସୁବର୍ଣ୍ଣ ଝୁଞ୍ଚରେ ଯମୁନାର ଜଳ ଥୋଇ
ମୁନିଙ୍କ ଚରଣଦ୍ୱୟ ବେଗେ ପଖାଳଇ ।
ନମସ୍କାର କଲା ସେହି ମୁନିଙ୍କ ଚରଣ
ଭକତରେ କରପତ୍ର ଯୋଡ଼ିଲା ଶିରେଣ ।
ଝୀନବସନ ଘେନିଣ ଚରଣ ପୋଛିଲା
ରତ୍ନପଲ୍ୟଙ୍କ ଉପରେ ନେଇ ବସାଇଲା ।
କୃତାଞ୍ଜଳି ହୋଇଣ ସେ ବୋଲଇ ବଚନ
ବଡ଼ଭାଗ୍ୟ ଆଜ ମୋର ଅଟେ ତପୋଧନ ।
ବ୍ରହ୍ମାଙ୍କର ପୁତ୍ର ମୋର ପୁରରେ ଆଗତ
ପୂର୍ବଜନ୍ମ ଭାଗ୍ୟଫଳ ଫଳିଲା ଏବେତ ।
ତାଙ୍କୁ ନାରଦ ବୋଲନ୍ତି ଶୁଣ ହେ ଗୋପାଳ
କୁଶଳ ବାରତା କହ ଆମ୍ଭର ଆଗର ।
ମୁନିବର ପଚ୍ଛରନ୍ତେ ଗଉଡ଼ କହଇ
ତୁମ୍ଭର କଲ୍ୟାଣେ ସବୁ କୁଶଳ ଅଟଇ ।
ଭକ୍ତରେ ଥାଇ ବିଶାଖା ସବୁ କଥା ଶୁଣି
ତତକ୍ଷଣେ ସେ ସ୍ଥାନକୁ ଅଇଲା ତରୁଣୀ ।
ଆବର ପଚାଶ ଗୋପୀ ଥିଲେ ତାର ସଖୀ
ପଛେ ପଛେ ଗୋଡ଼ାଇଲେ ସେଆସିବାଦେଖି
ନାରଦମୁନିଙ୍କ ପାଦେ ଓଳଗି ହୋଇଲେ
ଅନେକ କାର୍ପଣ୍ୟ ହୋଇ ଚରଣ ବନ୍ଦିଲେ ।
ବୋଇଲେ ଆହେ ଗୋସାଇଁ କର ଅବଧାନ
କପାଇଁ ଏଥକୁ କରିଅଛ ଆଗମନ ।
ଆଜ ଯାଏ କୃଷ୍ଣ ଗୋପେ ନୋହିଲେ ଉତ୍ପନ୍ନ
କେମନ୍ତ ପ୍ରକାରେ ଆମ୍ଭେ ହୋଇବୁ କାରଣ
ଶ୍ରୀକୃଷ୍ଣ ବିହୀନେ ଆମ୍ଭେ ହୋଇଛୁଁ ଅନାଥ
ଅନାଥନାଥ କେମନ୍ତେ ଆସିବେଟି ଏଥ ।
ନାରଦ ବୋଇଲେ ତୁମ୍ଭେ ନ ଭାଳଗୋ କେହି
ଅବଶ୍ୟହିଁ ଏଥକୁ ଆସିବେ ଭାବଗ୍ରାହୀ ।
ଅଳ୍ପଦିନ ଆଉ ତୁମ୍ଭେ ଅପେକ୍ଷା ଗୋ କର
ଗୋବିନ୍ଦ ହୋଇବେ ଆସି ନନ୍ଦର କୁମର ।
ତାହାଙ୍କୁ ପ୍ରବୋଧ ଦେଇ ନାରଦ ଉଠିଲେ
ସୁଧାକର ଗୋପାଳର ନଗରେ ମିଳିଲେ ।
ଗୋରସ ଦୋହନ କାର୍ଯ୍ୟେ ଲାଗିଛି ଗଉଡ଼
ସ୍ୱହସ୍ତରେ ଛନ୍ଦିଅଛି ଗାଈଙ୍କୁ ତାହାର ।
ଏମନ୍ତ ସମୟେ ଯାଇ ସେ ନାରଦ ମୁନି
ପ୍ରବେଶ ହୋଇଣ ତହିଁ କଲେ ବୀଣାଧ୍ୱନି ।
ନାରଦଙ୍କ ବୀଣାନାଦ ଶୁଣିଣ ଗୋପାଳ
ଧାଇଁ ଆସିଣ ମିଳିଲା ମୁନି ପାଦତଳ ।
ନାରଦ ମୁନି ତାହାଙ୍କୁ ଆଶୀର୍ବାଦ କଲେ
ଚରଣରୁ ଧୂଳି ନେଇ ଶିରେ ବୋଳି ଦେଲେ
ପୁତ୍ର ପୌତ୍ର ଧନ ଧାନ୍ୟ ବଢ଼ିବ ତୋହର
ମୁନି ବୋଲନ୍ତେ ଗଉଡ ଧୋଇଲା ପଦ୍ମର ।
ଚରଣୋଦକ ନେଇଣ ଗର୍ଭକୁ କ୍ଷେପିଲା
ଧୂପ ଦୀପ ଦେଇ ସେହୁ ମୁନିଙ୍କୁ ପୂଜିଲା ।
ମସ୍ତକରେ କର ଦେଇ କୃତାଞ୍ଜଳି ହେଲା
ପ୍ରଣିପାତ କରିଣ ସେ ଭୂମିରେ ଶୋଇଲା ।
ନାରଦ ମୁନି ତାହାକୁ କୁଶଳ ପୁଚ୍ଛିଲେ
ଗୋପାଳ ବୋଇଲା ସର୍ବେ ଅଛନ୍ତି କୁଶଳେ
ଗଉରବ ପାଇ ବସିଲେକ ମୁନିବର
ଦୁଃଖ ସୁଖ କଥାମାନ କରିଲେ ବହୁତ ।
ଭିତରେ ଥାଇ ସୁମେଧା ପାଇଲା ବାରତା
ବେଗୁ ବେଗ ହୋଇଣ ଯେ ଅଇଲା ପ୍ରମଦା ।

ପଞ୍ଚଷଠୀ ବାଳୀ ତାର ଅନନ୍ତ ଯେ ସଖୀ
ତାହାଙ୍କୁ ଘେନ ପ୍ରବେଶ ହୋଇଲ ସୁମୁଖୀ ।
ନାରଦ ମୁନିଙ୍କି ଦେଖି ହସିଲେ କାମିନୀ
କାହିଁପାଇଁ ଆଗମନ କଲ ମହାମୁନି ।
ତାହାଙ୍କୁ ଦେଖି ନାରଦ କଲ୍ୟାଣ ବାଞ୍ଛିଲେ
ଅଦ୍ୟ ସୁଲକ୍ଷଣୀ ହୋଇ ବଞ୍ଚିଥାଅ ଭଲେ ।
ଶ୍ରୀକୃଷ୍ଣ ତୁମ୍ଭର ଜନ୍ମେ ଜନ୍ମେ ହେଉ ପତି
ଆମ୍ଭର ଏ ଆଶୀର୍ବାଦ ତୁମ୍ଭେ ହୁଅ ସତୀ ।
ବିଷ୍ଣୁର ଭକତ ତୁମ୍ଭେ ଜନ୍ମେ ଜନ୍ମେ ଅଟ
ନିକଟରେ ନାଗସୁଣ ସଙ୍ଗେ ହୁଅ ଭେଟ ।
ନାରଦ ବଚନେ ସର୍ବ ତରୁଣୀ ହସିଲେ
ତୁମ୍ଭ କଥା ସିଦ୍ଧ ହେଉ ସୁମେଧା ବୋଇଲେ
ଗୋପୀ ବୋଇଲେ ଶ୍ରୀକୃଷ୍ଣ ନୋହିଲେ ଜନମ
ଆମ୍ଭମାନଙ୍କର କଷ୍ଟ ଦେଖ ମୁନି ବ୍ରହ୍ମ ।
କେତେକାଳେ କୃଷ୍ଣଚନ୍ଦ୍ର ଗୋପକୁ ଆସିବେ
ବିଶ୍ୱାସ ଜନମୁ ନାହିଁ ଆମ୍ଭ ମନେ କେବେ ।
ସୁମେଧାର ମନକଥା ନାରଦ ଜାଣିଲେ
ପୂର୍ବ କଥାମାନ ତାଙ୍କୁ ବୁଝାଇ କହିଲେ ।
ତୁମ୍ଭେମାନେ ହୃଦପଦ୍ମେ ନ କର ଗୋ ଖେଦ
ଅଳ୍ପଦିନ ପରେ ଏଥି ଆସିବେ ଗୋବିନ୍ଦ ।
ଅଳ୍ପଦିନ ଅପେକ୍ଷା ଗୋ ତୁମ୍ଭେ କର କାଳ
ଗୋପାଳକୁଳେ ଜନ୍ମିବେ ମଦନ ଗୋପାଳ ।
ଏମନ୍ତ ପ୍ରବୋଧି ତାଙ୍କୁ ମୁନିଙ୍କ ପ୍ରବର
ତକ୍ଷଣେ ସେହି ଠାବରୁ ହୋଇଲେ ବାହାର
ତିଳୋତ୍ତମା ମନ୍ଦିରକୁ କଲେକ ଗମନ
ପ୍ରବେଶ ହୋଇଲେ ମୁନି ତାହାଙ୍କ ଦ୍ୱାରେଣ
ଅନ୍ତଃପୁରେ ଥାଇ ଜାଣିଲେକ ତିଳୋତ୍ତମା
ଆମ୍ଭ ମନ୍ଦିରେ ଅଇଲେ ମୁନି ମହାତମା ।
ଗଙ୍ଗାମିର ସୁବର୍ଣ୍ଣର ପାତ୍ରରେ ପୁରାଇ
ଗୃହର ଭିତରୁ ସେହୁ ଅଇଲେକ ଧାଇଁ ।
ସହସ୍ର ବାଳିକା ଥାନ୍ତି ତିଳୋତ୍ତମା ମୂଳେ
ସେମାନଙ୍କୁ ଘେନି ସେହୁ ଖେଳୁଥାଇ ହେଳେ
ମୁନିବରଙ୍କୁ ସମସ୍ତେ ନମସ୍କାର କଲେ
ସଲଜ୍ଜ ଭାବେଣ ଖଣ୍ଡଦୂରରେ ରହିଲେ ।
ତାହାଙ୍କ ଚରଣ ଧୋଇଲେକ ତିଳୋତ୍ତମା
ଚରଣୋଦକ ଗର୍ଭକୁ କ୍ଷେପିଲେକ ବାମା ।

ତାଙ୍କୁ ସୁକଲ୍ୟାଣ ବାଞ୍ଛା କଲେ ମୁନିବର
ଶ୍ରୀକୃଷ୍ଣ ହୁଅନ୍ତୁ ତୁମ୍ଭମାନଙ୍କର ବର ।
ମୁନିଙ୍କର କଲ୍ୟାଣରେ ହସି ସର୍ବ ଆଳୀ
ଲଜ୍ଜା ଭାବ ଘେନି ମଥା ନ ଟେକନ୍ତି ବାଳୀ
ତିଳୋତ୍ତମା ବୋଲେ କହିଲ ତ ଅସମ୍ଭବ
ଏ ଜନ୍ମରେ ପାଇବୁଁ କି ଏତେକ ବିଭବ ।
ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗ ଆମ୍ଭେ କି ଲଭିବୁ
ଗୋବିନ୍ଦଙ୍କ ସୁଧାରସ ମୁଖରେ ପିଇବୁଁ ।
ଶ୍ରୀକୃଷ୍ଣ ଜନ୍ମ ଲଭିବେ ଆସି ଗୋପପୁରୀ
କେତେକାଳ ହେଲ ଆମ୍ଭେ ଅଛୁଁ ଆଶାକରି
ଏବେ ତୁମ୍ଭର ମୁଖରୁ ପାଇଲୁ ବାରତା
ତେଣୁ କରି ଆମ୍ଭ ମନୁ ଗଲ ସବୁ ଚିନ୍ତା ।
ଶ୍ରୀକୃଷ୍ଣ ଶ୍ରୀକୃଷ୍ଣ ବୋଲି ଧ୍ୟାଉ ଆମ୍ଭେ ନିତ୍ୟେ
କୃଷ୍ଣବିନୁ ଅନ୍ୟକଥା ନ ଭାଳୁଁ ଏ ଚିତ୍ତେ
କେତେକାଳେ କୃଷ୍ଣନାଥ ଆସିବେ ଏଥକୁ
ତହିଁର ଚରିତ ଫେଡ଼ି କହିବା ଆମ୍ଭଙ୍କୁ ।
ନାରଦ ବୋଇଲେ ତୁମ୍ଭେ ନଭାଳଗୋ ଗୋଇ
ଅଳ୍ପଦିନେ ଆସିବେଟି ଏଥେଁ ଭାବଗ୍ରାହୀ ।
ତାହାଙ୍କୁ ପ୍ରବୋଧ ଦେଇ ତହୁଁ ଚଳିଗଲେ
ବୃନ୍ଦ ବର୍ଚ୍ଛୀ ପୁରେ ଯାଇ ପ୍ରବେଶ ହୋଇଲେ
ଷଡ଼ର୍ଘ୍ୟ ଘେନିଣ ମୁନି ଚରଣେ ବନ୍ଦିଲ
ନମସ୍କରିଲ ନମସ୍କରିଲି ବୋଲିଣ ବୋଇଲ ।
ଦୁଇ ସହସ୍ର ଗୋପାଙ୍ଗୁଣୀ ତାଙ୍କ ସଙ୍ଗେ ମିଳି
ଜଣେ ଜଣେ ସର୍ବେ ଯାଇ କଲେ ନିଉଛାଳି ।
ମୁନିବର ବୋଇଲେ ଗୋ ଉଠ ସର୍ବ ମାପ୍ୟେ
ବିଷ୍ଣୁର ଭକତ ହୋଇ ଥାଅ ସର୍ବଦାପ୍ୟେ ।
ଶ୍ରୀକୃଷ୍ଣ ବର ତୁମ୍ଭଙ୍କୁ ହେଉ ପରାପତ
ଜନ୍ମେ ଜନ୍ମେ ହୁଅ ତୁମ୍ଭେ ଶ୍ରୀକୃଷ୍ଣ ଭକତ ।
ନାରଦଙ୍କର ବଚନେ ସମସ୍ତେ ହସନ୍ତି
ମୁନିଙ୍କ ଚରଣେ ଶିର ଦେଇଣ ନମନ୍ତି ।
ତୁମ୍ଭ ମହାମୁନି ଅଟ ସର୍ବଜ୍ଞ ପୁରୁଷ
ଆମ୍ଭମାନଙ୍କୁ କପାଇଁ କଲ ଅବିଶ୍ୱାସ ।
କେଉଁ ଜନ୍ମରେ ଶ୍ରୀକୃଷ୍ଣ ଦର୍ଶନ ପାଇବୁଁ
କୃଷ୍ଣଙ୍କର ବର୍ଣ୍ଣ ଚିହ୍ନ କେମନ୍ତେ ଜାଣିବୁଁ ।
ଶ୍ରୀକୃଷ୍ଣ ଗୋପେ ଜନ୍ମିବେ ଏହି ବାର୍ତ୍ତା ଶୁଣି
ଆଶାକରି ରହିଅଛୁଁ ସବୁ ଗୋପାଙ୍ଗୁଣୀ ।

ନିରନ୍ତର କୃଷ୍ଣନାମ କରୁଛନ୍ତି ଗାୟନ
ଭୋଜନ ଶୟନ ବେଳେ ଭଜ କୃଷ୍ଣନାମ ।
ଯେଣିକି ଚାହିଁଲେ ଏକା ଗୋବିନ୍ଦ ଦିଶଇ
ନୀଳାବ୍ଜଦଳ ମୂରତି ମନରୁ ନ ଯାଇ ।
କେତେଦିନେ କୃଷ୍ଣଚନ୍ଦ୍ର ଆସିବେ ଏଥିକି
ନିଶ୍ଚୟ ଦେଖିବୁଁ ଆମ୍ଭେ କମଳ ମୁଖ କି ।
ଗୋପୀମାନଙ୍କର ମନ ଜାଣି ମୁନିବର
ଚିନ୍ତା ନ କର ନିକଟେ ଆସିବେ ଶ୍ରୀଧର ।
ମନ ପ୍ରକୃତି ତାଙ୍କର ପାଦପଦ୍ମେ ଦେଇ
ନିରନ୍ତର ଚିନ୍ତା କର ଜଗତ ଗୋସାଇଁ ।
ଏତେ କହି ନାରଦ ଯେ ତହୁଁ ଚଳିଗଲେ
ବୀଣା ବଜାଇ ପଶନ୍ତି ଯାଇ ପ୍ରତିଘରେ ।
ଷୋଳସହସ୍ର ଗୋପାଳୁଣୀଠାରୁ ପୂଜା ପାଇ
ହରିଧ୍ୱନି ସମସ୍ତଙ୍କ ଗୃହରେ ଶୁଭଇ ।
ଶ୍ରୀକୃଷ୍ଣ ବିନୁ ସେମାନେ ନ ଜାଣନ୍ତି ଆନ
ଲୟ ଲଗାଇ ଅଛନ୍ତି ଗୋବିନ୍ଦ ଚରଣ ।
ଦଧିମନ୍ଥନେ କରନ୍ତି ଗୋବିନ୍ଦର ନାମ
କାର୍ଯ୍ୟ କରନ୍ତି ତୁଣ୍ଡରେ ଗାଇ କୃଷ୍ଣ ରାମ ।
ତାହାଙ୍କର ଭକ୍ତିଭାବ ନାରଦ ଜାଣିଲେ
ଗୋପପୁରର ଭକତି ନାହିଁ ତିନିପୁରେ ।
ଗୋବିନ୍ଦ ନାମ ସେମାନେ କ୍ଷଣେ ନ ଛାଡ଼ନ୍ତି
ମନ ପ୍ରକୃତିରେ କୃଷ୍ଣନାମ ଭଜୁଥାନ୍ତି ।
ପ୍ରେମ ଭାବ ଭକତିରେ କୃଷ୍ଣଙ୍କୁ ପାଇବେ
କୃଷ୍ଣଙ୍କର ଅଙ୍ଗସଙ୍ଗ ନିଶ୍ଚୟ ଲଭିବେ ।
ଯେ ନାରାୟଣଙ୍କୁ ମୁନି ନ ପାବନ୍ତି ଭେଟ
ମଦନର ଆରତରେ କୃଷ୍ଣ ଦେବେ ଭେଟ ।
ଏହା ବିଚାରିଣ ମୁନି ହସି କରି କରି
ୟାଙ୍କପରି ଭକ୍ତ ନୁହନ୍ତି ତ ବେଦବର ।
ମହର୍ଷି ନାରଦ ଅତି ହର୍ଷେ ବୀଣା ବାଇ
ତହୁଁ ଖଣ୍ଡେ ଦୂର ଗଲେ ବେଗ ବେଗ ହୋଇ
ବୃଷଭାନୁ ପୁରେ ଯାଇ ହୋଇଲେ ପ୍ରବେଶ
ହରଷେ ତାଣ୍ଡବନୃତ୍ୟ କରି ବ୍ରହ୍ମଶିଷ୍ୟ ।
ବୃଷଭାନୁ ନାରଦଙ୍କ ଆସିବା ଜାଣିଲେ
କରପତ୍ର ଯୋଡ଼ି ତାଙ୍କ ସମ୍ମୁଖରେ ମିଳିଲେ ।
ନମସ୍କାର କରି ତାଙ୍କୁ କହନ୍ତି ବଚନ
ବଡ଼ ଭାଗ୍ୟ ଆଜ ମୋର ଆହେ ତପୋଧନ ।
ଯମୁନାର ନୀର ସ୍ୱର୍ଣ୍ଣ ଝରିରେ ପୂରାଇ
ମୁନିଙ୍କ ଚରଣ ରାଜା ଧୋଇଲାକ ନେଇ ।
ଚରଣୋଦକ ନେଇଣ ଗର୍ଭକୁ କ୍ଷେପିଲା
ଝୀନବସନରେ ତାଙ୍କ ଚରଣ ପୋଛିଲା ।
ଆପଣା ନବର ଭିତରକୁ ଘେନିଗଲା
ରତନ ଖଟ ଉପରେ ନେଇ ବସାଇଲା ।
ଷଡର୍ଘ୍ୟ ଦେଇଣ ମୁନିବରଙ୍କୁ ପୂଜିଲା
କୃତାଞ୍ଜଳି ହୋଇଣ ସେ ଆଗେ ଉଭା ହେଲା
ନାରଦ ମୁନି ତାଙ୍କର କଲ୍ୟାଣ ବାଞ୍ଛିଲେ
ପୁତ୍ର ପୁତ୍ରୀ ସହ ଆନନ୍ଦରେ ରହ ଭଲେ ।
କୁଶଳ ବାରତାମାନ ତାହାଙ୍କୁ ପୁଚ୍ଛିଲେ
ସକଳ କୁଶଳ ମୁନି ତୁମ୍ଭ ପ୍ରସାଦରେ ।
ପୁତ୍ର ପୁତ୍ରୀ ବୋଲି ଯାହା ପଚାରିଲ ମୁନି
ମୋତେ ଦଇବ କରିଛି ତହିଁ ହୀନମାନ ।
ଶତେ ଭାରଯାରେ ପୁତ୍ର ପୁତ୍ରୀ ନ ଜନ୍ମିଲା
ସଂସାର ମଧ୍ୟେ ବିଧାତା ଅଲଗା କରିଲା ।
ଲେଖିଲା କର୍ମର କଥା ପୋଛି ନ ପାରଇ
ହୃଦୟ ବେଦନା ଆଉ କାହାରେ କହିବଇଁ ।
ତୁମ୍ଭେ ସର୍ବଜ୍ଞ ପୁରୁଷ ନ ଜାଣିବା କିସ
ତୁମ୍ଭର ସମ୍ମୁଖେ ମୁଁ କି କହିବି ବିଶେଷ ।
ଦଇବ ଭବିଷ୍ୟ ତୁମ୍ଭେ ଜାଣ ମୁନିବର
ଦିନେ ମୃଗୟାକୁ ଗଲୁ କାଳିନ୍ଦୀର ତୀର ।
ପଦ୍ମପତ୍ରେ ଶୋଇଥିଲା ଦୁହିତା ଗୋଟିଏ
ରୂପ ପଟାନ୍ତର ତାକୁ ଭବେ କେହି ନୋହେ
ଚମ୍ପକ ପୁଷ୍ପ ପରାୟେ ଦିଶେ ତାର କାୟ
ମୁଖଗୋଟିକ ଦିଶଇ ଶଶଧର ପ୍ରାୟ ।
ବାଳଅର୍କ ଜିଣି ତାର ଅଧର ଦିଶଇ
ସେହିରୂପେ ବାଳ ଭାବେ ଅଛଇ ସେ ଶୋଇ
କଥା ଭାଷା କାହାକୁହିଁ କହୁ ନ କହଇ
ଏ କିସ ଚରିତ କହ ମୁନିବର ତୁମ୍ଭ ।
ମହାଋଷି ବୋଇଲେକ ତହିଁ ଅଛି କଥା
ତୁମ୍ଭେ କହନ୍ତେ ଜାଣିଲି ମୁହିଁ ତଥ୍ୟ ବାର୍ତ୍ତା ।
ବଡ଼ ବ୍ୟାଧି ଗୋଟିଏକ ତାକୁ ଆବୋରିଛି
ଦଇବର ବଳେ ଭଲ ହୋଇବ ମୃଗାକ୍ଷୀ
ଏତେବୋଲି ମୁନିବର ଧ୍ୟାନରେ ବସିଲେ
ଯୋଗବଳେ ସେହିକଥା ସବୁ ଜ୍ଞାତ ହେଲେ

ସ୍ୱୟଂ କମଳା ଆସିଣ ଜନମିଲେ ଏଥ
ଗୋପରେ ଜନମ ଯହୁଁ ହେବେ ଗୋପୀନାଥ
ତେଣୁକରି ଲକ୍ଷ୍ମୀ ଅଇଲେକ ଆଗହୋଇ
କୃଷ୍ଣଜନ୍ମ ନୋହିବାରୁ କଥା ନ କହଇ ।
ନ ଭକ୍ଷଇ କନ୍ୟା ବାଳଭାବ ନ ଛାଡ଼ଇ
ଯେଣୁକରି ଗୋପପୁରେ କୃଷ୍ଣ ଆସି ନାହିଁ ।
ପଦ୍ମବନ ଭିତରେ ସେ କନ୍ୟା ଶୋଇଥିଲା
ଯେଣୁ କମଳ ବନରୁ ସେହୁ ଜାତ ହେଲା ।
ଏତେ ବିଚାରି ନାରଦ ମହା ତପୋଧନ
ବୋଲନ୍ତି ଶୁଣ ହେ। ବୃଷଭାନୁ ନୃପବର ।
ସେ ଦୁହିତା କାହିଁଅଛି ଆମ୍ଭଙ୍କୁ ଦେଖାଅ
ଦେଖିଲେ ଆମ୍ଭ ମନରେ ନ ଥିବ ସନ୍ଦେହ ।
ମୁନି କଥା ଶୁଣି ରାଜା ବହନ ଉଠିଲା
ତାଙ୍କ ହସ୍ତ ଧରି ପୁରମଧ୍ୟେ ଘେନଗଲା ।
ସେହି ରାଧିକା ଶୟନ ମନ୍ଦିରକୁ ନେଇ
ମୁନିବରଙ୍କୁ ପ୍ରବେଶ କରାଇଲା ତହିଁ ।
ବୋଇଲା ଆହେ। ଗୋସାଇଁ ଦେଖ ସାବଧାନେ
ଏ କନ୍ୟା ଶୟନ କରିଥିଲା ପଦ୍ମ ବନେ ।
ନାରଦ ବୋଇଲେ ତୋତେ କହିବା କଥା ଏ
ଆମ୍ଭ ବୋଲ ଯେବେ କରିବୁଟି ମହାରାୟେ ।
ତେବେ ସେ ବ୍ୟାଧିରୁ ଯିନା ମୁକତ କରିବା
ଏକାନ୍ତ ଭାବରେ ଆମ୍ଭେ ମନ୍ଦିରେ ପଶିବା ।
ଦୁଇପା ଅନ୍ତରେ ଜନ କେହି ନ ରହିବ
ଏସନକ କଥା ତୁମ୍ଭେ ଶୁଣ ରାଜଦେବ ।
ଜନଶୂନ୍ୟ କରି ତୁମ୍ଭେ ଦିଅ ଏହିସ୍ଥାନ
କାହାରିକୁ ନ ଶୁଭିବ ଏହାଙ୍କ ବଚନ ।
ଗୋପନ ଭାବରେ ଏଥେ ଆସିବଟି ଯେହୁ
ଅଭିଶାପ ପାଇବ ଜାଣିଥା ନୃପରାହୁ ।
ଦୃଢ଼ ବଚନେ ରାଜାକୁ ସତ୍ୟ କରାଇଲେ
ମନ୍ଦିର ଭିତରେ ମୁନି ଏକାନ୍ତେ ରହିଲେ ।
କପାଟ କଳଣ ମୁନି ସ୍ୱହାନ୍ତେ ତକ୍ଷଣ
ଦେଖିଲେ କୋଟି ଚନ୍ଦ୍ର କି ଉଇଁଛି ମର୍ତ୍ତ୍ୟେଣ
ଅନ୍ଧାର ଘରେ ଚନ୍ଦ୍ର କି ଉଦେ ହୋଇଛଇ
ଅଧର୍ମ ଅନଳ ପ୍ରାପ୍ତ ଦେହ ବିରାଜଇ ।
ଭକ୍ତିକରି ମୁନିବର କନ୍ଦିକ ନ ଗଲେ
ଖଣ୍ଡେଦୂର ଯାଇ ଆଉ ହୋଇଣ ରହିଲେ ।

କରଯୋଡ଼ି ତାଙ୍କ ପାଶେ କରନ୍ତି ଦଇନ
ଜୟ ଜୟ କମଳା ଗୋ ଜଗତ ଜନନି ।
ଦାରିଦ୍ର୍ୟ ଭଞ୍ଜନି ମାଗୋ ଦୁଃଖ ବିନାଶିନୀ
କମଳ ଆସନି ମାଗୋ କମଳନୟନି ।
କଳକାଳ ଧ୍ୱଂସିନି ଗୋ କଷ୍ଟ ବିନାଶିନି
ଭୃତ୍ୟଜନର ଆରତ ଫେଡ଼ ଠାକୁରାଣୀ ।
ଏମନ୍ତେ ଅନେକ ସ୍ତୁତି କଲେ ମୁନିବର
କରଯୋଡ଼ି ଉଭାହନ୍ତି ପଲଙ୍କ ତଳର ।
ଯୋଗରେ ଧ୍ୟାନ କରିଣ ଦେବୀ ଥିଲେଶୋଇ
ନାରଦଙ୍କର ସ୍ତୁତିରେ ଧ୍ୟାନ ଭଗ୍ନ ହୋଇ
ଧ୍ୟାନ ଭଗ୍ନ ହୋନ୍ତେ ଦେବୀ ଉଠିଣ ବସିଲେ
ଚକ୍ଷୁଫେଡ଼ି ନାରଦଙ୍କ ମୁଖକୁ ଚାହିଁଲେ ।
ନାରଦ ବୋଇଲେ କାହିଁ ଏ ରୂପ ହୋଇଲୁ
କାହାରି ସହିତ କାହିଁ ସମସ୍ୟା ନ କଲୁ ।
ଆହାର ତୁହି ନ ଭକ୍ଷୁ କେବଣ କାରଣ
ନରାହାରରେ କେମନ୍ତେ ବଞ୍ଚୁ ତୁହି ଧନ ।
ନାରଦ ବଚନ ଶୁଣି ବୋଲନ୍ତି ରାଧିକା
ତୁମ୍ଭେ କେମନ୍ତେ ଜାଣିଣ ଅଇଲ ହେ ଏକା
ଶ୍ରୀକୃଷ୍ଣ ଜନ୍ମ ନୋହୁଣୁ ଏହି ଗୋପପୁରେ
ଆଗକରି ମୋତେ ପଠାଇଲେ ଚକ୍ରଧରେ ।
ବୋଇଲେ ମଞ୍ଚରେ ଆମ୍ଭେ ଜନମ ଲଭିବୁ
ନନ୍ଦଘରେ ଯାଇ ବାଳ କାଳରେ ରହିବୁ ।
ସେଠାରେ କରିବୁ ଆଠବର୍ଷ ବାଳକେଳି
ଆଗକରି ମୋତେ ପଠାଇଲେ ବନମାଳୀ
କେତେକାଳ ମୁହିଁ ରହିଥିବଇଁ ଏଥିର
ଆଜଯାଏ କାହିଁ ନ ଅଇଲେ ଦାମୋଦର ।
କହ ଆହେ ମୁନିବର ଏଥିର ବିଧାନ
ତୁମ୍ଭେ କପାଇଁ ଏଥକୁ କଲ ଆଗମନ ।
ନାରଦ ବୋଇଲେ କୋପ ନ କର ଗୋ ମାୟେ
ଏଥକୁ ଆସିବେ ନିକଟରେ ଦେବରାୟେ ।
ଏଥିପାଇଁ ଚିନ୍ତା ତୁମ୍ଭେ ନ କର ଗୋ କିଛି
ଶ୍ରୀକୃଷ୍ଣ ନିଶ୍ଚୟ ହେବେ ନନ୍ଦରାଜା ବସି ।
ବସୁଦେବ ଦେବକୀଙ୍କ ତାହାଙ୍କୁ ଆଣିବ
ଏଠାରେ ସେ ଶ୍ରୀକୃଷ୍ଣଙ୍କୁ ଲୁଚାଇଣ ଯିବ ।
ଦେବକୀ ଗର୍ଭରେ ରହିଲେଣି ବାସୁଦେବ
ଆଉ ମନେ କିଛି ତୁମ୍ଭେ ନ କର ଗୋ ଖେଦ

ଏବେ କାଳକାର ଭାବ ଶୁଣସି ଗୋ ମାଯେ
ଶ୍ରୀମୁଖେ ବୃଷଭାନୁକୁ କହସି କଥାଏ ।
ତେବେ ସିନା କୃତାର୍ଥ ହୋଇବ ତାର ଦେହ
ଅପୁତ୍ରିକ ରାଜା ସେହୁ ପୁତ୍ର ପୁତ୍ରୀ ନାହିଁ ।
ତାହାର ଭାଗ୍ୟକୁ ତୁମ୍ଭେ ମିଳିଅଛ ଆସି
ତୁମ୍ଭଙ୍କୁ ଦେଖି ପାସୋରୁ କଷ୍ଟ ନୃପଶଶୀ ।
ଉତ୍ତାନ ଶୟନ ଏବେ ଛାଡ଼ ଗୋ ଜନନ
ଖଟରୁ ଓହ୍ଲାଇ ଆସ ଆଗେ ଯୋଷାମଣି ।
ନାରଦ ବାକ୍ୟେ ହସିଲେ ବୃଷଭାନୁ ଜେମା
ଖଟୁଁ ଓହ୍ଲାଇ ଚଳକୁ ଅଇଲେ ସେ ବାମା
କପାଟ ଫେଡ଼ ନାରଦ ହୋଇଲେ ବାହାର
ଡ଼ାକନ୍ତି ଆସ ହୋ ବୃଷଭାନୁ ନୃପବର ।
ଆଗରେ ଥିଲୁ ଅଛନ୍ତି ବ୍ରହ୍ମାଙ୍କ କୁମର
ତାଙ୍କର ମହିମା କଏ କହିବ ମୁଖର ।
ଶ୍ରୀ ପଦ୍ମରେ ଚଳନ୍ତି ସେ ଦେଖା ଧୀରେଧୀରେ
ମତ୍ତଗଜର ଗମନ ପଡ଼ଇ ମନରେ ।
ପ୍ରତ୍ୟକ୍ଷହିଁ ଲକ୍ଷ୍ମୀ ସେହୁ ଶ୍ରୀହରି ଘରଣୀ
ତାର ମୁଖ ଦେଖି ମୋହ ଯିବେ ସର୍ବପ୍ରାଣୀ
ଖଣ୍ଡଦୂରେ ଥାଇ ଦେଖିଲେକ ନୃପରାଣ
ବେନି ହସ୍ତେ ଧରିନେଲେ ବସାଇ କାଖେଣ
ନସ୍ତରିଲି ବୋଲି ମନେ ଆନନ୍ଦ ଲଭିଲା
କୋଟିଏ ଲକ୍ଷ୍ମୀ ତାହାକୁ ପ୍ରାପତ ହୋଇଲା ।
ଆନନ୍ଦରେ ଅଶ୍ରୁଜଳ ବହଇ ରାଜାର
ନାରଦ ବୋଇଲେ ମୋତେ ପ୍ରତିକାର କର
ହୁଳହୁଳି ଦେଇଣ ଜନମାମାନେ ନେଲେ
ସ୍ନାନ କରାଇ ଷଡ଼ରସ ଭୁଞ୍ଜାଇଲେ ।
ମହର୍ଷି ବୋଇଲେ ଯାଉଅଛୁଁ ନରସାଇଁ
ଦୁହିତା ଗୋଟିକ ଯତ୍ନେ ପ୍ରତିପାଳ ନେଇ ।
ପ୍ରତ୍ୟକ୍ଷହିଁ ଲକ୍ଷ୍ମୀ ଏହି ଅଟଇ ଅବଳା
ଏହାଠାରେ ରାଜା କେଭେ ନ କରିବୁ ହେଳା
ଏହା ଯୋଗେ ଶତ ପୁତ୍ର ହେବ ପରାପତ
ଏହି ଦୁହିତା ସକାଶୁ ହୋଇବୁ କୃତାର୍ଥ ।
ବଡ଼ବ୍ୟାଧି ଗୋଟିଏ ଝିଅର ଅଙ୍ଗେ ଥିଲା
ଆମ୍ଭର କଲ୍ୟାଣେ ଦେହ ଆରୋଗ୍ୟ ହୋଇଲା
ଏତେ କହି ମୁନି ମନଦଣ୍ଡରେ ଚଢ଼ିଲେ
ବୃଷଭାନୁର ପୁରରୁ ଅନ୍ତର୍ଦ୍ଧାନ ହେଲେ ।
ଅମର ପୁରରେ ଯାଇ ହୋଇଲେ ପ୍ରବେଶ
ସବୁ ଚରିତ କହିଲେ ଦେବତାଙ୍କ ପାଶ ।
ଗୋପରେ ଷୋଳସହସ୍ର ଗୋପାଙ୍ଗନାଛନ୍ତି
ତାଙ୍କ ଭକତ ସମାନ ନାହିଁ କାହିଁ ପୃଥ୍ୱୀ ।
ଏକା ଶ୍ରୀକୃଷ୍ଣ ବ୍ୟତିତ ନ ଜାଣନ୍ତି ଆନ
ମନ ପ୍ରକୃତରେ ଭଜୁଛନ୍ତି ନାରାୟଣ ।
ତାଙ୍କ ଭକତିକି ଦେବତାଏ ନୁହ ସରି
ଗୋପୀମାନଙ୍କର ସ୍ୱାମୀ ହେବେ ନରହରି ।
ଶୁଣିଣ ଦେବତାମାନେ ସନ୍ତୋଷ ଲଭିଲେ
ନାରଦଙ୍କୁ ବହୁତ ସେ ପ୍ରଶଂସା କରିଲେ ।
ଶୁଣିଲଟି [illegible] ଗୋ ତୁମ୍ଭେ ସ୍ପଷ୍ଟ କର ଜେମା
ଏସନ ପ୍ରକାରେ ରାଧା ଅଟଇ ଉତ୍ତମା ।
ତୁମ୍ଭେ ଯେ ପଚାରିଥିଲ ମୋତେ ତୋଷତରେ
ଏଥିପାଇଁ ଅପ୍ରତ୍ୟୟ କରୁଥିଲ ମୋତେ ।
ଶୁଣିଣ ସକଳବାଳୀ ସନ୍ତୋଷ ଲଭିଲେ
ଗୋବିନ୍ଦଙ୍କ ବଚନରେ ମାୟାକୁ ଛାଡ଼ିଲେ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ହବ୍ୟରସ
ପରୀକ୍ଷ ପୃଚ୍ଛା କରନ୍ତି ମୁନିଙ୍କର ପାଶ ।
ଏଥୁଅନନ୍ତରେ କଂସ କଲେ ନରହରି
ସେହି କଥା ବିସ୍ତାରିଣ କହ ତପସ୍ୱୀ ।
ରାଜାର ଭକତିଭାବ ଦେଖି ମୁନିବର
ବୋଲନ୍ତି ଶୁଣ ହୋ ତୁମ୍ଭେ ଉତ୍ତରା କୁମର ।
ତୁହି ଯେଣୁ ଭାଗ୍ୟବନ୍ତ ଅଟୁ ପୁଣ୍ୟଦେହୀ
ଗୁପ୍ତକଥା ଶୁଣିବାକୁ ଇଚ୍ଛାକଲୁ ତୁହି ।
ସେହିକଥାମାନ ମୁହିଁ କ୍ରମେ କହିବଇଁ
ଅଚ୍ୟୁତଦାସ କୃଷ୍ଣଙ୍କୁ ଶରଣ ମାଗଇ ।

———

## ନନ୍ଦ ଯଶୋଦା ଏବଂ ବସୁଦେବ ଦେବକୀର ପୂର୍ବଜନ୍ମ ବିବରଣ

ଏଥୁ ଅନନ୍ତରେ ପୁଣ ଶୁଣ ନରସାଇଁ
ଶ୍ରୀଭାଗବତ ପୁରାଣ କହିବା ବୁଝାଇ ।
ସେହି ଅଷ୍ଟ ପାଟବଂଶୀ କୃଷ୍ଣ ପାଦତଳେ
ଜନମେଜୟ ହୋଇଣ ପୁଚ୍ଛନ୍ତି ସକଳେ ।
ସାବଧାନ ହୋଇ ତୁମ୍ଭେ ଶୁଣ ଭଗବାନ
ଯୋଡ଼ାଇ ରଖିଲ ଗୋପଲ୍ୟ କଥାମାନ ।

ରାଧିକାର ଜନ୍ମ ତୁମ୍ଭେ କହିଲ ବୁଝାଇ
ତାଙ୍କର ବିବାହ କଥା ବୋଲ ଭାବଗ୍ରାହୀ ।
ପୀତବଂଶୀଙ୍କ ମୁଖରୁ ଏସନକ ଶୁଣି
ଆନନ୍ଦିତ ହୋଇ ହସିଲେକ ଚକ୍ରପାଣି ।
ଏକ ମନ ହୋଇ ତୁମ୍ଭେ ବସ ସର୍ବ ସହି
ଯାହା ତୁମ୍ଭ ପଚାରିଲ କହିବା ବୁଝାଇ ।
ଅତି ପବିତ୍ର କଥାଏ ଅପୂର୍ବ ଆଖ୍ୟାନ
କହିଲେ ପ୍ରତ୍ୟୟ ନ କରିବ ତୁମ୍ଭ ମନ ।
ନ କହିଲେ ଦୁଃଖ ତୁମ୍ଭେ କରିବ ଗୋ ସହି
ଗୋପନୀୟ କଥା ଏହା ନ ଜାଣନ୍ତି କେହି ।
ତୁମ୍ଭମାନଙ୍କର ଭକ୍ତି ପ୍ରେମଭାବ ହେଲେ
ସକଳ କଥା କହିବା ତୁମ୍ଭର ଆଗରେ ।
ଦେବକୀ ଆମ୍ଭଙ୍କୁ ଯେତେବେଳେ ଜନ୍ମ କଲା
ବସୁଦେବ ଆମ୍ଭଙ୍କୁ ଯେ ଚୋରାଇଣ ନେଲା ।
ନନ୍ଦରାଜାର ଗୃହରେ ଛାଡ଼ିଲେକ ନେଇ
କନ୍ୟାଏ ଘେନି ସେଠାରୁ ବାହୁଡ଼ି ଆଇଲେ ।
ତଇବେ ସେହି ଯଶୋଦା ଦୁହିତା ପ୍ରସବି
ଅଜ୍ଞାନ ହୋଇଣ ତହିଁ ପଡ଼ିଥିଲା ଦେବୀ ।
ପୁତ୍ରର ପାଲଟ କଥା ନ ଜାଣଇ ସେହି
ହେଣୁକରି ଅଜ୍ଞାନରେ ପଡ଼ିଥିଲା ଶୋଇ ।
କେତେବେଳ ଗତ ହନ୍ତେ ପାଇଲା ସେ ଜ୍ଞାନ
ଚକ୍ଷୁ ଫେଡ଼ି ଚାହିଁଲା ସେ ଆମ୍ଭର ବଦନ ।
ଚାହିଁଲା ମାତ୍ରକେ ସେହୁ ହେଲା ଭୋଳମତି
କୋଟି ଲକ୍ଷ୍ମୀ ଯେସନ କି ପାଇଲେକ ସତୀ ।
ଜନ୍ମବାର୍ତ୍ତା ପାଇଣ ଆଇଲେ ସର୍ବ ଗୋଷ୍ଠ
ନନ୍ଦର ଗୃହରେ ସର୍ବେ ମିଳିଲେକ ଯାଇ ।
ଦେଖିଲେ ନନ୍ଦ ରାଜାର ପୁତ୍ର ଜନମିଲା
ସମସ୍ତ ଗୋପପୁରରେ ଉତ୍ସବ ହୋଇଲା ।
ଆଗହୁଁ ଜାଣିଣ ଥିଲେ ସର୍ବ ଗୋପାଳୁଣୀ
ନନ୍ଦର ମନ୍ଦିରେ ଜାତ ହେବେ ଯଦୁମଣି ।
ଏକକୁ ଆରେକ ସର୍ବେ ନ କହି ଧାଇଁଲେ
ପେଲା ପେଲି ହୋଇ ନନ୍ଦ ମନ୍ଦିରେ ମିଳିଲେ
ତୋଳି କରିଣ ମୋହର କାଟିଲେକ ନାଭି
ସୁବାସିତ ଜଳ ନେଇ ମୋତେ ଦେଲେ ଧୋଇ
ଚନ୍ଦନ କାଷ୍ଠେ ଅଗୁରୁ ସେହୁ ଲଗାଇଲେ
ଫୁଲର ମାଳଗା ମୋର ଅଙ୍ଗରେ ଲେପିଲେ ।

ମୁଖରେ ଲଗାଇ ଦୁଧ ଦେଲେ ଗୋପାଳୁଣୀ
ପ୍ରେମ ଭକ୍ତିଭାବେ ମୋତେ ଘେନିଲେ ସେ ପୁଣି
ଆଗହୁଁ ସେ ବଳରାମ ହୋଇଥିଲେ ଜାତ
ଦୁଇ ପୁତ୍ର ପାଇ ନନ୍ଦ ହୋଇଲେ ଉସତ ।
ବାଳକଙ୍କର ଆନନ୍ଦ କହୁଁ ନ ସରଇ
ମୋତେ ଦେଖିବାକୁ ଗୋପେ ଆଇଲେକ ଧାଇଁ
ମୋହର ମୁଖ ଦେଖିଣ ସବୁ ଗୋପପୋଏ
ବୋଇଲେ ଖେଳିବା ଯାଙ୍କୁ ଘେନି ସର୍ବଦାଏ
ଏମନ୍ତ ପ୍ରକାରେ ଥୋକେ ଦିନ ବହିଗଲା
ଦିନକୁ ଦିନ ଶରୀର ବର୍ଦ୍ଧିତ ହୋଇଲା ।
ମାସେ ପୂରିଯାଇ ବେନି ମାସ ମୋର ହେଲା
ଏମନ୍ତେ ଚତୁର୍ଥ ମାସ ତହିଁ ବହିଗଲା ।
ଏକ ବରଷ ସମ୍ପୂର୍ଣ୍ଣ ହେଲା ଯେତେବେଳେ
ଚାଲିବା ନିମନ୍ତେ ମୁହିଁ ଗଲଇଁ ବାହାରେ ।
ଏଥୁ ଅନନ୍ତରେ ପୁଣି ଶୁଣ ଅନ୍ୟବାଣୀ
କେମନ୍ତ ହୋଇ ଶୁଣ ଦେବୀ ଗୋ ରୁକ୍ମିଣୀ ।
ବେନି ବରଷ ଅନ୍ତରେ ହେଲା ଯେଉଁ କଥା
ବୃଷଭାନୁର ନନ୍ଦିନୀ ରାଧିକା ବ୍ୟବସ୍ଥା ।
ତାହାଙ୍କର ସଖୀ ଯେ ଅଟନ୍ତି ଅଷ୍ଟକନ୍ୟା
ସମସ୍ତେହିଁ ବାଳିକା ସେ ଅଟନ୍ତି ଅଙ୍ଗନା ।
କୁଳ ଟୋକେଇ ଘେନିଣ ସେ ସକଳ ବାଳୀ
ରୁଣ୍ଡ ହୋଇ ଯମୁନାକୁ ଯାନ୍ତି ବାଲି ଖେଳି ।
ଏମନ୍ତ ପ୍ରକାରେ ତହିଁ ସେମାନେ ଖେଳନ୍ତି
ଖେଳୁ ଖେଳୁ ସମସ୍ତେହିଁ ହୁଳହୁଳି ଦିଅନ୍ତି ।
ଆମ୍ଭର ସଖା ଅଟନ୍ତି ଆଠୋଟି ବାଳକ
ପୂର୍ବ ଜନ୍ମରୁ ସେମାନେ ଅଟନ୍ତି ସେବକ ।
ସେମାନେ ଜନ୍ମ ଲଭିଲେ ରଙ୍ଗା ଅବତାରେ
ଆମ୍ଭର ସଖା ହେବାରୁ ଗୋପାଳ ରୂପରେ ।
ଦାମ ସୁଦାମ ଆବର ବସୁଦେବ ମୂଳେ
କିଙ୍କିଣୀ ସୁବଳ ପୁଣି ବଳୀସେନ ତୁଲେ ।
ଏ ଆଦି ଆଠୋଟି ସଖା ଆମ୍ଭର ଅଟନ୍ତି
ଶୁଣ ତୁମ୍ଭେ ଏକମନେ ଭୀଷ୍ମକ ଦୁହିତା ।
ଦଇବ କରଣେ ରାଧିକା ସର୍ବ ସଖୀ ଘେନି
ଯମୁନାନଦୀ କୂଳକୁ ଯାଆନ୍ତି ତରୁଣୀ ।
ଯମୁନାର କୂଳେ ଯାଇ ମିଳି ସର୍ବ ଗୋଷ୍ଠି
ବାଲୁକାର ଲିଙ୍ଗମାନ ତୋଳିଲେକ ତହିଁ ।

ନାନାବିଧ ପରକାରେ ଘରମାନ କଲେ
ବଖୁରି ବଖୁରି କରି ସବୁ ନିର୍ମାଣିଲେ ।
ନାନାବର୍ଣ୍ଣ କରିଣ ସେ କଲେ ଗୃହମାନ
ଏ ଘରକୁ ସେ ଘରର ଦ୍ୱାର କଲେ ପୁଣ ।
ଧୂଳି ଭାତ ଧୂଳି ପିଠା କଲେକ ତିଆଣ
ଏ ପ୍ରକାରେ ନାନାଖେଳ ରଚିଲେକ ଜାଣ ।
ସୁବର୍ଣ୍ଣର କଣ୍ଢେଇ ଯେ ସର୍ବେ କରିଥିଲେ
ବର କନ୍ୟା କରି ତହିଁ ବିଭା କରାଇଲେ ।
ଅଷ୍ଟସଖା ଘେନି କୁଞ୍ଜବନେ ଖେଳୁଥିଲୁଁ
ହୁଳହୁଳି ଶବ୍ଦ ଶୁଣି ସେହିଠାକୁ ଗଲୁଁ ।
ଗେଲ ଗେଲ ହୋଇଣ ମିଳିଲୁ ତହିଁ ପାଶେ
ଶରଧା କରିଣ ଆମ୍ଭେ ଦେଖିଲୁଁ ହରଷେ ।
କାଳର ବେଦୀରେ ବର କନ୍ୟାକୁ ବସାଇ
ଧୂଳି ଦୁର୍ବାକ୍ଷତରେ ସେ ବନ୍ଦାନ୍ତି ତାଙ୍କୁହିଁ ।
କୁମାରୀଏ ଏସନକ ଖେଳ ତୋଷଚିତ୍ତେ
ଆମ୍ଭଙ୍କୁ ସେ ଦେଖିଣ ଭଳନ୍ତି ହୃଦଗତେ ।
ମିଛୁକା ଘରର ତୁମ୍ଭେ ଗୋ ସଖି ଦେଖ କନା
ସତକା କୁଣିଆ ଆସି ମିଳିଲେଟି ଯିନା ।
ରାଧିକା ମୁଖରେ ଯେଣୁ ଏସନକ ଭଣି
ଶୁଣିଣ ହସିଲେ ତହୁଁ ସର୍ବ ସଖି ଶୁଣି ।
ଅଷ୍ଟସଖାଙ୍କୁ ଘେନିଣ ତାହାଙ୍କର ଘର
ଶ୍ରଦ୍ଧା ଭାବରେ ଭାଙ୍ଗିଲୁ ଆମ୍ଭେ ଧାତକାର ।
ଖେଳଘର ଭାଙ୍ଗନ୍ତେଣ କନ୍ୟା କୋପ କଲେ
ନାନା କଥା କହି ସେ ଆମ୍ଭଙ୍କୁ ଗାଳିଦେଲେ
ବୋଇଲେ ଗୋପାଳେ ତୁମ୍ଭେ ଅଟ ବଡ଼ ମନ୍ଦ
ଅକାରଣେ ଆମ୍ଭସଙ୍ଗେ କରୁଅଛ ଦ୍ୱନ୍ଦ୍ୱ ।
ପୁଣି ରାଗରେ ସେମାନେ ଦଉଡ଼ି ଆସିଲେ
ଆମ୍ଭର କାଛୁପଣନ୍ତେ ଆମ୍ଭଙ୍କୁ ବାନ୍ଧିଲେ ।
ବୃଷଭାନୁ ନବରକୁ ନେଉଥିଲେ ଧରି
ତାହାଙ୍କର ଆମ୍ଭର ଯେ ବହୁ ହେଲା କଳି ।
ରାଧିକା ବୋଲେ ଆମ୍ଭର ଘର ଦିଅ ତୋଳି
ନୋହିଲେ ଆଜ ତୁମ୍ଭଙ୍କୁ ନେବଇଁ ଯେ ଧରି
ପିତାଙ୍କ ଛାମୁରେ କହି ଦେବଇଁ ତଞ୍ଜଣା
କପାଁ ତୁମ୍ଭେ ଭାଙ୍ଗିଦେଲ ଆମର ଖେଳନା ।
ଏମନ୍ତେ ଯମୁନା କୂଳେ ବହୁ କଳି ହେଲା
କେତେବେହିଁ ଆମ୍ଭଙ୍କୁ ସେହୁ ଛାଡ଼ିତ ନ ଦେଲା

ଦଇବ ବଶେ ନାରଦ ଶୂନ୍ୟେ ଯାଉଥିଲେ
ଆମ୍ଭର କଳିଠାବରେ ଯାଇଣ ମିଳିଲେ ।
ଆମ୍ଭଠାରୁ ସବୁକଥାମାନ ସେ ଶୁଣିଲେ
ସଖୀମାନଙ୍କୁ ଡାକିଣ ଏମନ୍ତ କହିଲେ ।
ଆମ୍ଭର ବୋଲ ଯଦ୍ୟପି କରିବ କୁମାରୀ
କାହ୍ନୁପଣନ୍ତି କୃଷ୍ଣର ହାତୁ ଦିଅ ଛାଡ଼ି ।
ଯେବେ ତୁମ୍ଭ ଖେଳଘର ଭାଙ୍ଗିଦେଲେ ପୋଏ
ଆମ୍ଭେ ସେ ଘର ବନାଇ ଦେବାକ ଉପାୟେ
ପୂର୍ବେ ଯେଉଁ ପରକାର ହୋଇଥିଲା ଘର
ସେହି ପରକାରେ ଆମ୍ଭେ ତୋଳାଇବା ପୁର
ଏଥିକୁ କଳି କପାଇଁ କରୁଅଛ ମାୟେ
ବାଲିଘର ପାଇଁ ଦୁଃଖ କରିବାର ନୁହେଁ
ଏତେ କହି ନାରଦ କନ୍ୟାଙ୍କୁ ପ୍ରବୋଧିଲେ
ନାନାବିଧ ପରକାରେ ସେ ବେଦୀ ମଣ୍ଡିଲେ
ମୁନିବର ରାଧାଙ୍କୁ ରାଇଣ ସନ୍ନିଧାନ
ଗୋପନ ଭାବେ ତାହାଙ୍କୁ କହନ୍ତି ବଚନ ।
ଆଗୋ ରାଧା ତୁମ୍ଭ ସଙ୍ଗେ କୃଷ୍ଣେ ବିଭାଦେବା
ତିନିଭୁବନ ମଧ୍ୟରେ ପାଇବାକ ଶୋଭା ।
ତୋହର ରୂପକୁ କୃଷ୍ଣ ଅନୁରୂପ ପତି
ଜନ୍ମେ ଜନ୍ମେ ତୋର ନିଜ କାନ୍ତ ଏ ଅଟନ୍ତି
ସେ ଅଟନ୍ତି ନାରାୟଣ ତୁହି ତ କମଳା
ଅବତୀର୍ଣ୍ଣ ହୋଇଅଛ କରିବାକୁ ଲୀଳା ।
ନାରଦ ବଚନ ପୂର୍ବ କଥା ମନେ ହେଲା
ହେଉ ହେଉ ବୋଲି ରାଧା ସନମତ କଲା ।
ନାରଦ ବଚନେ କେହୁ ମେଣ୍ଟେ ଦେହବନ୍ଧି
ବ୍ରହ୍ମାର ନନ୍ଦନ ସବୁ ପାରନ୍ତି ତିଆଇ ।
ତହୁଁ ଆମ୍ଭଙ୍କୁ ବୋଇଲେ ଶୁଣ ଚକ୍ରଧର
ରାଧା ସଙ୍ଗେ କରାଇବୁ ବିଭାର ବେଭାର ।
ତୁମ୍ଭ ଅଷ୍ଟ ସଖାଏ ଅଟନ୍ତି ବର ଜାତି
ଏହାଙ୍କର ଅଷ୍ଟ ସଖୀ ହୁଅନ୍ତୁ କନ୍ୟାଜାତି ।
ଏତେ ବୋଲି ନାରଦ ସମ୍ମତ କରାଇଲେ
ବିଭାଘର ବିଧାନ ସକଳ ତିଆଇଲେ ।
ନାରଦ ବରବେଶ ଯେ ଆମ୍ଭଙ୍କୁ କରାଇ
ଫୁଲ ମୁକୁଟ ଶିରରେ ବାନ୍ଧିଲେକ ନେଇ ।
ବରକନ୍ୟା ବେଶେ ବେଦୀପରେ ବସାଇଲେ
ଗନ୍ଧର୍ବ ବେଦ ବିଧାନେ ବାକ୍ୟ ଉଚାରିଲେ ।

ଦେଶ କାଳ ବାକ୍ୟରେ ସେ କଲେ ବିଭାଘର
ରାଧାକୃଷ୍ଣଙ୍କର ବିଭା କଲେ ମୁନିବର ।
ପୂର୍ବ ମୁଖରେ ବସିଲୁଁ ବେଦୀପରେ ଯାଇ
ପଶ୍ଚିମକୁ ମୁଖ କରି ରାଧାଙ୍କୁ ବସାଇ ।
ବରୁଣର ପୂଜା ସେହି ସାରିଲେ ତତକ୍ଷଣେ
ଦୁହିଙ୍କର ହସ୍ତକୁ ସେ ବାନ୍ଧିଲେ ଯତନେ ।
ଚତୁର୍ବିଧ ବିଧାନେ ମୁନି ବିଭା କରାଇଲେ
ଈଶ୍ୱବାହ୍ମୀ କନ୍ୟା ତହୁଁ ଗ୍ରନ୍ଥି ଫେଇ ଦେଲେ
ଧୂଳିର ସ୍ୱଚ୍ଛଳ ଧୂଳି ଦୁବା ଶିରେ ଦେଇ
ଆନନ୍ଦରେ ବରକନ୍ୟା ବସାଇଲେ ନେଇ
ସ୍ୱର୍ଗର କନ୍ୟା ସକଳ ଆନନ୍ଦେ ଦେଖନ୍ତି
ଦୁହିଙ୍କର ମସ୍ତକରେ ଅକ୍ଷତ ବର୍ଷନ୍ତି ।
ଗୋପପୁର ଲୋକ ଏହା ନ ଜାଣନ୍ତି କେହି
ନନ୍ଦ ଯଶୋଦାଙ୍କୁ ମଧ୍ୟ ଏହା ଜଣା ନାହିଁ ।
ବୃଷଭାନୁ ରାଜା ତାହା କେମନ୍ତେ ଜାଣିବ
ଦଇବ ପୁରୁଷ ଯାହା କରିଅଛି ଭାବ ।
ବିବାହ କରାଇ ମୁନି ଅନ୍ତର୍ଦ୍ଧାନ ହେଲେ
ଅମର ପୁରରେ ଯାଇ ପ୍ରବେଶ ହୋଇଲେ ।
ବ୍ରହ୍ମାଙ୍କଠାରେ କହିଲେ ସମସ୍ତ ବିଧାନ
ମଞ୍ଚେ ରାଧା କୃଷ୍ଣଙ୍କୁ ଯେ ବିଭା ଦେଲୁ ଜାଣ
ବ୍ରହ୍ମାଦି ଦେବ ଶୁଣିଣ ସନ୍ତୋଷ ଲଭିଲେ
ଏବେ କଂସ ରାଜା ନିଶ୍ଚେ ମରିବ ବୋଇଲେ
ଅଷ୍ଟସଖୀ ଘେନ ରାଧା ଗୃହେ ପ୍ରବେଶିଲେ ।
ମନ ମଧ୍ୟରେ ବିଶେଷ ଆନନ୍ଦ ଲଭିଲେ
ନନ୍ଦ ମନ୍ଦିରକୁ ଆମ୍ଭେ ବେଗେ ଗଲୁ ଚଳି
ଏହି କଥା ନ ପାରିଲେ କେହି ହେଜକରି
ଦଇବୀ ମାୟାରେ ସର୍ବେ ମୋହିତ ହୋଇଲେ
ରାଧାକୃଷ୍ଣ ବିଭା କଥା କେହି ନ ଜାଣିଲେ
କେହି ନ ଜାଣନ୍ତି ଖେଳ କଉତୁକ କଥା
ପିତାର ଗୃହେ ରହିଲେ ରାଧିକା ବନିତା ।
ଶୁଣିଲଟିକି ଗୋ ସଖୀ ରାଧା ବିଭା ବାଣୀ
ବିବାହ ହୋଇଲେ ବୃଷଭାନୁର ନନ୍ଦିନୀ ।
ଗୋପନୀୟ କଥା ଯେ କହିଲୁ ତୁମ୍ଭ ଆଗେ
ଦେବଗଣ ଏହି କଥା ନ ଜାଣନ୍ତି ଦାଦେ ।
ରୁକ୍ମିଣୀ ଶୁଣିଣ ମନେ ଆନନ୍ଦ ଲଭିଲେ
ଗୋବିନ୍ଦଙ୍କର ମୁଖକୁ ତୋଳି ନ ଚାହିଁଲେ ।

ଶୁଣିଲଟିକି ହେ ପରୀକ୍ଷିତ ନୃପବର
ହରିବଂଶର ଚରିତ ଅମୃତ ଆଧାର ।
ରୁକ୍ମିଣୀଙ୍କ ମନ ଭାବ ଜାଣି ଭାବଗ୍ରାହୀ
ହସିଣ କହନ୍ତି ସେହୁ ତତପର ହୋଇ ।
ତୁମ୍ଭେମାନେ ମନଦୁଃଖ ନ କର ଗୋ ସହି
କଥାର ପ୍ରସ୍ତାବେ ସବୁ କଥା କହିଲଇଁ ।
ତୁମ୍ଭେ ପଚାରନ୍ତେ ଆମ୍ଭେ କହିଲୁ ଶ୍ରଦ୍ଧାରେ
ଏ କଥାରେ ଦୁଃଖ କେଭେ ନ କର ହୃଦରେ
ମାୟାଧର ପୁରୁଷ ଯେ ଉପାୟେ ରଚିଲ
ଯତେକ କଥା କହିଣ ତାହାଙ୍କୁ ମୋହିଲେ ।
ଏହିରୂପେ କଉତୁକ ତହୁଁ କହିଗଲା
ସତ୍ୟଭାମା ରୁକ୍ମିଣୀଙ୍କ ଶରଧା ବଳିଲା ।
ଯେନେ କୃଷ୍ଣ ବସିଛନ୍ତି ରତ୍ନ ସିଂହାସନେ
ସତ୍ୟଭାମା ରୁକ୍ମିଣୀ ମିଳିଲେ ସନ୍ନିଧାନେ ।
ଝହ ଝହ ହୋଇଣ ହସିଲେ ଚକ୍ରଧର
ହସ୍ତଧରି ସେମାନଙ୍କୁ ବସାନ୍ତି ପାଖର ।
ହାସ୍ୟ ପରିହାସ କଲେ ନାନା କୁତୂହଳେ
ରୁକ୍ମିଣୀ ସତ୍ୟଭାମାର ପଡ଼ିଲା ମନରେ ।
ସତ୍ୟଭାମା ବୋଲନ୍ତି ଶୁଣ ହେ ନାରାୟଣ
କଥାଏ ପୁଚ୍ଛିବୁଁ ଆମ୍ଭେ ସାବଧାନେ ଶୁଣ ।
ଗୋପର ଚରିତମାନ କହିଲ ଗୋସାଇଁ
ଶୁଣିକରି ସନ୍ତୋଷ ହୋଇଲା ଆମ୍ଭଦେହୀ ।
କଥାଏ ପଚାରିବାକୁ ଅଛଇ ମନର
ତାହା ଶୁଣିଲେ ସନ୍ଦେହ ଯିବଟି ଆମ୍ଭର ।
ବସୁଦେବ ଦେବକୀ ତ ତୁମ୍ଭ ଜନ୍ମଦାତା
ନନ୍ଦ ଯଶୋଦା କପାଇଁ ହେଲେ ପିତାମାତା
ପୂର୍ବଜନ୍ମରେ ସେ କେଉଁ ତପ କରିଥିଲେ
ବାଳକାଳରେ ତୁମ୍ଭର ଆର୍ଦ୍ଦୋଳ ସହିଲେ ।
ବସୁଦେବ ଦେବକୀ ଏ ପୂର୍ବେ କରି ବସ
ଗର୍ଭରୁ ଜନମ କଲେ ଅନାଦି ପୁରୁଷ ।
ଏ କଥାମାନ ବିସ୍ତାରି କହ ଦାମୋଦର
ଶୁଣିଲେ ସଂଶୟ ଗ୍ରନ୍ଥି ଫିଟିବ ଆମ୍ଭର ।
ବସୁଦେବ ଦେବକୀର ଚରିତ କହିବ
ସେ କଥା ଶୁଣିଲେ ମନେ ଆନନ୍ଦ ଜନ୍ମିବ ।
ସେହିଦିନ ଆମ୍ଭର ତ ମନେ ନ ପଡ଼ିଲା
ଏବେ ସେହି ସବୁ କଥା କହ ନନ୍ଦବାଳା ।

ଏହା ଶୁଣିଣ ବୋଇଲେ ପ୍ରଭୁ ନାରାୟଣ
ଅତି ଗୁପତ ଏ କଥା ପରୀକ୍ଷିତ ଜାଣ ।
ମୁନି ଋଷିମାନେ ଏହା ନ ଜାଣନ୍ତି କେହି
କହିବା ତୁମ୍ଭଙ୍କୁ ଆମ୍ଭେ ନ କହିବ କାହିଁ ।
ତ୍ରେତୟାଯୁଗରେ ପୃଥ୍ୱୀ ଭାର ଅବତାରେ
ବିଷ୍ଣୁ ଜନମ ଲଭିଲେ ଦଶରଥ ଘରେ ।
ଦଶରଥ ରାଜାଙ୍କର ହେଲେ ଚାରିପୁତ୍ର
ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣ ଶତ୍ରୁଘ୍ନ ଭରତ ।
ପିତା ବୋଲେ ରାମଚନ୍ଦ୍ର ବନବାସ ଗଲେ
ଗୋଦାବରୀ ତଟରେ ଗୃହ କରିଣ ରହିଲେ
ପଞ୍ଚବଟୀ ବନ ଅଟେ ଅଗମ୍ୟ ଅରଣ୍ୟ
ସେ ବନରେ ବାସ କରି ରହିଲେ ଶ୍ରୀରାମ ।
ରାବଣ ମେଣ୍ଢ ବନରୁ ସୀତା ହରି ନେଲା
ଲଙ୍କାଗଡ଼ରେ ଯାଇଣ ନିଶ୍ଚିନ୍ତେ ରହିଲା ।
ହରିଣ ମାୟାମୃଗେକ ଯେଣୁ ସେ ଦେଖିଲେ
ତାହାକୁ ମାରିବା ପାଇଁ ରାମଚନ୍ଦ୍ର ଗଲେ ।
କନକ ମୃଗକୁ ମାରି ଆସି ରଘୁବୀର
ତ୍ୱରିତ ମିଳିଲେ ପର୍ଣ୍ଣକୁଟୀର ଦୁଆର ।
ଦେଖିଲେ ପର୍ଣ୍ଣକୁଟୀରେ ସୀତା ଦେବୀ ନାହିଁ
ବହୁତ ବିକଳ ଚିତ୍ତ ହେଲେ ରଘୁସାଇଁ
ହା ସୀତା ହା ସୀତା ବୋଲି ଅନେକ କାନ୍ଦିଲେ
ଗୋଦାବରୀର କୂଳରୁ ବାହାର ହୋଇଲେ
ପମ୍ପାସର କୂଳେ ମିଳିଲେକ ରାମବନ୍ଧୁ
କ୍ଷୁଧା ଅନଳେ ବିକଳ ହେଲେ କହୁ କହୁ ।
ଖଣ୍ଡେ ଦୂରରେ ଦେଖିଲେ ସେ ଗୋଗୋଷ୍ଠେକ ଅଛି
ଦୁଧ ମାଗି ଆଣିବାକୁ ବୋଇଲେ ଝଟିତି ।
ତକ୍ଷଣେ ଲକ୍ଷ୍ମଣ ବୀର ବେଗେ ଚଳିଗଲା
ଗଉଡ଼ମାନଙ୍କୁ ଦୁଧ ମହୀଏ ମାଗିଲା ।
ଲକ୍ଷ୍ମଣ ମାଗୁଁ ସେମାନେ କେବେହେଁ ନ ଦ୍ୟନ୍ତି
ଉନମତ୍ତେ ଏଣେତେଣେ ଯାଇଣ ବୁଲନ୍ତି ।
ଲକ୍ଷ୍ମଣ ବୋଇଲେ ମୋତେ ନ ଦିଅ ମାଗଣା
ମୂଲ୍ୟ ବହା ନେଇ ତୁମ୍ଭେ ଦୁଧ ଦିଅ ଜନା ।
ଲକ୍ଷ୍ମଣ ବୋଲି ସେମାନେ କେବେ ନ ଶୁଣିଲେ
ତାହାଙ୍କ ପଛେ ଲକ୍ଷ୍ମଣ ଗୋଡ଼ାଇ ମାଗିଲେ
ମୂର୍ଖ ଗୋପାଳମାନେ ତ କିଛି ନ ଜାଣନ୍ତି
ବନରେ ଥାଇଣ ଭଲ ମନ୍ଦ ନ ବୁଝନ୍ତି ।

ଏମନ୍ତ ଦେଖି ଲକ୍ଷ୍ମଣ କୁପିତ ହୋଇଲେ
ଗାଈ ଦୁଧ ରକ୍ତ ହେଉ ଅଭିଶାପ ଦେଲେ ।
ଦୁହିଁଲରୁ ଦୁଧ ସବୁ ହେଲା ରକ୍ତମୟ
ଅଭିଶାପ ଦେଲେ ତାଙ୍କୁ ଦଶରଥ ପୁଅ ।
ଶାପ ଦେଇ ସଉମିତ୍ରୀ ଆସନ୍ତେ ଲେଉଟି
ଦେଖିଲେ ରକତ ହୋଇଅଛି କ୍ଷୀର ପୁଟି ।
ଗାଈମାନଙ୍କର ଦୁଧ ଶୋଣିତ ଦିଶିଲା
ଦେଖିଣ ଗୋପାଳଙ୍କର ଜ୍ଞାନ ଧ୍ୱଂସ ହେଲା ।
ଧାଇଁ ଧାଇଁ ଶ୍ରୀରାମଙ୍କ ଛାମୁରେ ମିଳିଲେ
ଶିରେ କର ଦେଇ ପାଦପଦ୍ମରେ ଶୋଇଲେ
ବୋଇଲେ ହୋ ଗୋସାଇଁ ଆମ୍ଭଙ୍କୁ ରକ୍ଷାକର
ଅନାଥ ହୋଇଣ ଆମ୍ଭେ ମରିବୁଁ ଏଥର ।
ଅରଣ୍ୟରେ ଗଉଡ଼ ଆମ୍ଭର କିସ ବୁଦ୍ଧି
ତୁମ୍ଭେ ମହାପ୍ରଭୁ ଅଟ କରୁଣା ବାରିଧି ।
ଅନେକ ବିକଳ ଯହୁଁ ହୋଇଲେ ଗୋପାଳେ
ଦୟାନିଧି ଶ୍ରୀରାମ ତାହାଙ୍କୁ ଦୟା କଲେ ।
ଶ୍ରୀରାମ ବୋଇଲେ ଦୁଧ ହେବ ଶ୍ୱେତବର୍ଣ୍ଣ
ଦୁଧ ଦୁହିଁ ଗୋପାଳେ ହୋଇଲେ ହର୍ଷମନ ।
ଧାଇଁ ଆସିଣ ସେମାନେ ରାମଙ୍କୁ କହିଲେ
ତୁମ୍ଭର ଆଜ୍ଞାରେ ଗାଈ ଭଲ ଦୁଧ ହେଲେ ।
ବିନୟ ଭାବରେ ଆମ୍ଭେ କହୁଛୁଁ କଥାଏ
କିଛି ଦୁଧ ତୁମ୍ଭଙ୍କୁ ଯେ ଦେବୁ ମହାରାୟେ ।
ବେଗ ହୋଇ ଗାଈଙ୍କର ଦୁଧ ଘେନିଗଲେ
ଦୁଧଭାର ରାମଙ୍କର ଛାମୁରେ ଥୋଇଲେ ।
ପାଦ ଧୋଇଣ ଶ୍ରୀରାମ ପାନ କଲେ ତାହା
ତାହାଙ୍କ ପାଖରୁ ଚଳିଗଲେ ରଘୁନାହା ।
ଓଳଗି ହୋଇଣ ଯହୁଁ ସର୍ବେ ବାହୁଡ଼ିଲେ
ଆପଣା ଗୋଷ୍ଠରେ ଯାଇ ପ୍ରବେଶ ହୋଇଲେ
ତା ମଧ୍ୟରୁ ଗୋପାଳେକ ମନେ ବିଚାରିଲା
ରାମଙ୍କ ପଛରେ ଯହୁଁ ଗୋଡ଼ାଇ ଚଳିଲା ।
ଥୋକାଏ ଦୂର ଗୋଡ଼ାଇ ଅଇଲେକ ଯହୁଁ
ଗଉଡ଼କୁ ଚାହିଁଣ ବୋଲନ୍ତି ରାମବନ୍ଧୁ ।
ଆରେ ଗୋପାଳ କିପାଇଁ ଗୋଡ଼ାଇଛୁ ତୁହି
ଦୁଗ୍ଧଦାନ କରିଣ ତୋଷିଲୁ ଆମ୍ଭ ଦେହି ।
କିସ କାର୍ଯ୍ୟ ଆଉ ତୋର ଅଛି ଆମ୍ଭଠାରେ
ନ କହିଣ କାହିଁ ପାଇଁ ଗୋଡ଼ାଉ ପଛରେ ।

ସେ ବୋଇଲା କହିବାକୁ ଭୟ ଲାଗୁଅଛି
ନ କହି ଯିବାକୁ ମନ ନୁହଇ ମୁରୁଛି ।
ଏତେ କହି ଶ୍ରୀରାମଙ୍କ ଚରଣେ ନମିଲା
ଅପୁତ୍ରିକ ଦୋଷୁ ମୋର ପିଣ୍ଡ ଲୋପ ହେଲା ।
ତୁମ୍ଭ ବଚନେ ରୁଧିର ହେଲା ଗାଈ କ୍ଷୀର
ଏଣୁ ବଞ୍ଛୁଛି ତୁମ୍ଭେ ପୁତ୍ର ଦେଇପାର ।
ଏହି ବର ମୋତେ ଦେବ ଆହେ ରଘୁରାଣ
ତେବେ କୃତାର୍ଥ ମୋହର ହେବ ପଞ୍ଚପ୍ରାଣ ।
ଗୋପାଳ ମୁଖରୁ ପ୍ରଭୁ ଏସନକ ଶୁଣି
ମୃଦୁ ମୃଦୁ ହସିଣ କହନ୍ତି ରଘୁମଣି ।
ଏ ଜନ୍ମରେ ପୁତ୍ର ପ୍ରାପ୍ତ ହେବୁ ନାହିଁ ତୁହି
ଦ୍ୱାପରେ ହୋଇବୁଁ ଆମ୍ଭେ ତୋହର ତନୟି
ଆମ୍ଭର ଏ ବଚନକୁ ଦୃଢ଼ ମଣିଥିବୁ
ଏହି ଦେହେ ଯାଇଣ ତୁ ବୈକୁଣ୍ଠେ ବସିବୁ ।
ଦ୍ୱାପର ଯୁଗରେ ନନ୍ଦ ଗୋପାଳ ତୁ ହୋଇ
ଗୋପ ନଗର ମଧ୍ୟରେ ଥିବୁ ଦେହ ବହି ।
ସବୁ ଗୋପାଳମାନଙ୍କ ପରେ ହେବୁ ରାଜା
ସର୍ବ ଗୋପାଳେ କରିବେ ତୋର ପାଦପୂଜା
କଂସ ପାଇଁ ମଥୁରାରେ ଆମ୍ଭେ ଜନ୍ମ ହେବୁଁ
ଅଷ୍ଟ ବରଷ ପର୍ଯ୍ୟନ୍ତ ଗୋପରେ ବଢ଼ିବୁ ।
ବସୁଦେବ ମୋତେନେଇ ତୋଘରେ ଥୋଇବ
ପ୍ରାଣତୁଲ୍ୟ କରି ତୁମ୍ଭେ ଆମ୍ଭଙ୍କୁ ପାଳିବ ।
ତେବେ ସିନା ତୁମ୍ଭ କ୍ଷୀର ଋଣକୁ ଶୁଝିବୁ
ନୋହିଲେ ତୁମ୍ଭର ଆମ୍ଭେ ଋଣୀ ହୋଇଥିବୁଁ
ଏତେକ କହିଣ ରାମ ତାକୁ ପ୍ରବୋଧିଲେ
ଆପେ ଧନୁଶର ଧରି ତହୁଁ ବାହୁଡ଼ିଲେ ।
ଗୋପାଳ ପ୍ରବେଶ ହେଲା ଆପଣା ଗୋଷ୍ଠର
ଏରୂପେ ନନ୍ଦର ଆମ୍ଭେ ହୋଇଛୁଁ କୁମର ।
ବସୁଦେବ କଥା ମୋତେ ପଚାରିଲ ତୁମ୍ଭେ
ଏକମନ ହୋଇ ଶୁଣ ବୁଝାଇବୁ ଆମ୍ଭେ ।
ପୂର୍ବେ କଶ୍ୟପ ଅଦିତି ହୋଇଥିଲେ ଜାତ
ରାମ ଅବତାର କଉଶଲ୍ୟା ଦଶରଥ ।
ସେହି ଏବେ ବସୁଦେବ ଦେବକୀ ବୋଲନ୍ତି
ଜନ୍ମେ ଜନ୍ମେ ଆମ୍ଭ ପିତା ମାତା ସେ ଅଟନ୍ତି
ପୂର୍ବେ ଘୋର ତପ କରି ଆମ୍ଭଙ୍କୁ ସେ ଦୁହେଁ
ତୋଷିବାରୁ ପୁତ୍ରରୂପେ ପାଇଲେ ଏ ଦେହେ ।

ଗୁପ୍ତ କଥାମାନ ସର୍ବ କହିଲୁ ତୋହରେ
ତୁମ୍ଭେମାନେ କିଛି କଥା ନ ଧର ମନରେ ।
ଏହା ଶୁଣିଣ ସେମାନେ ଚରଣେ ନମିଲେ
ଅନେକ କହିଣ ପାଦେ ବିନୟୀ ହୋଇଲେ
ଯେତେ ଅପରାଧ କଲୁ ତୁମ୍ଭେ କର କ୍ଷମା
ନଗରର ଦାସୀ ଅଟୁଁ ଆମ୍ଭେମାନେ ସିନା ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ପ୍ରାଣସହି
ତୁମ୍ଭଠାରେ ଆମ୍ଭର ତ ମାୟା କିଛି ନାହିଁ ।
ଏତେବୋଲି ଦୁହିଁଙ୍କି ସେ କୋଳାଗ୍ରତ କଲେ
ଅନ୍ୟ ସ୍ତ୍ରୀଙ୍କି କୋମଳ ବଚନ କହିଲେ ।
ଶୁଣିଲଟିକ ହୋ ପରୀକ୍ଷିତ ନୃପରଣ
ଏହା ଶୁଣିବାକୁ ତୁମ୍ଭେ ଅଟ ହୋ ଭାଜନ ।
ଭାଗବତ ପୁରାଣ ଏ ପୂତ ଗଙ୍ଗାଜଳ
କର୍ଣ୍ଣରେ ଶୁଣିଲେ ଅଙ୍ଗ ହୁଅଇ ଶୀତଳ ।
କୋଟିତୀର୍ଥ ସ୍ନାନ କଲେ ଯେତେ ଫଳ ପାଇ
ହରିବଂଶ ଶୁଣି ପ୍ରାଣୀ ସେ ଫଳ ଲଭଇ ।
ଅଧମ ଅରକ୍ଷ ଅଟେ ମୁଁ ଅଚ୍ୟୁତ ଦାସ
ଏହା ଜାଣି ଦୟାକର ଅହେ ପୀତବାସ ।

---

## କୃଷ୍ଣଙ୍କର ଗୋପିକାଙ୍କୁ ରହସ୍ୟ-ଦ୍ୱାରକାରେ ସ୍ଥାପନ ଓ ଅଷ୍ଟ ପାଟବଂଶୀଙ୍କୁ ମାୟା ପ୍ରଦର୍ଶନ

ଏଥୁ ଅନନ୍ତରେ ପୁଣି ପରୀକ୍ଷ ରାଜନ
ଶୁକମୁନି ଚରଣରେ ପ୍ରଣାମ କରିଣ ।
ବୋଇଲେ ସଂକ୍ଷେପି କହ ମୋତେ ମୁନିବର
ତହୁଁପରେ କିସ କଲେ ପ୍ରଭୁ ଶିଖଧର ।
ରାଜାଙ୍କ ବିନୟ ବାକ୍ୟ ହୋଇ ଅତି ଲୋଳ
ପୋଥି ଫେଡ଼ିଣ କହିଲେ ବ୍ୟାସଙ୍କ ଦୁଲାଳ ।
ଏଥୁଅନ୍ତରେ ରୁକ୍ମିଣୀ ଆଉ ସତ୍ୟଭାମା
ଗୋବିନ୍ଦ ପାଦେ ନମିଲେ ହୋଇ ହର୍ଷମନା
ଆଉର କନ୍ୟାଏ ସର୍ବେ ଓଳଗି ହୋଇଲେ
ଉଠ ଉଠ ବୋଲି କୃଷ୍ଣ ହସ୍ତ ଠାରିଦେଲେ
ରୁକ୍ମିଣୀ ସତ୍ୟଭାମାକୁ ହସ୍ତରେ ତୋଳନ୍ତି
ତାହାଙ୍କୁ ଆଶ୍ୱାସ କରି ପାଖରେ ବସାନ୍ତି ।
କୃଷ୍ଣ କହିଲେ କିପାଇଁ କରୁଛ ବିନୟ
ସେଥିର କାରଣ ବୋଲ ହୋଇଣ ନିର୍ଭୟ ।

ସତ୍ୟଭାମା ରୁକ୍ମିଣୀ ଯେ ବୋଲନ୍ତି ବଚନ
କଥାଏ କହିବୁ ଆମ୍ଭେ ଶୁଣ ନାରାୟଣ ।
ଷୋଳସହସ୍ର ଗୋପାଙ୍ଗଣୀ ରାଧିକା ସହିତେ
ଏହାଙ୍କ ସ୍ୱରୂପ ପ୍ରଭୁ କହିଲଟି ଯେତେ ।
ଥରେ ଯଦ୍ୟପି ତାହାଙ୍କୁ ଦେଖାଇଣ ଦେବ
ତେବେ ଆମ୍ଭ ହୃଦୟରୁ ସନ୍ଦେହ ଫିଟିବ ।
ଏ କଥା ଶୁଣି ଗୋବିନ୍ଦ ଅଳପ ହସିଲେ
ବିମ୍ବାଧରେ ମୃଦୁ ମୃଦୁ ବଚନ ଭାଷିଲେ ।
ତାଙ୍କୁ ଆଣି ଦେଖାଇବୁ ତୁମ୍ଭଙ୍କୁ ଏଠାରେ
ଏମନ୍ତ କହିଣ ମନ ମୋହିଲେ ମାୟାରେ ।
ଏହିପରି ବୋଲଗଲା ତହୁଁ କେତେ ଦିନ
କୃଷ୍ଣଙ୍କର ପୁତ୍ର ନାତି ହେଲେ ବର୍ଦ୍ଧମାନ ।
କିଛୁ ଦିନାନ୍ତେ ରୁକ୍ମିଣୀ ସତ୍ୟଭାମା ଦୁଇ
ବୋଇଲେ କଥାଏ ଶୁଣ ଆହେ ପ୍ରାଣସାଇଁ ।
ଯାହା ଆମ୍ଭେ କହିଥିଲୁଁ ତାହା କ ଭୁଲିଲ
ରାଧାଙ୍କୁ ଆଣିବା କଥା ମନୁ ପାଶୋରିଲ ।
ଗୋବିନ୍ଦ ବୋଇଲେ ଆମ୍ଭେ କିଛୁ ଦିନାନ୍ତରେ
ତାହାଙ୍କୁ ଆଣିବୁ ଏଥେ ଯାଇ ଧାନ୍ତକାରେ
ରୁକ୍ମିଣୀକି ପ୍ରବୋଧିଣ ପ୍ରଭୁ ନାରାୟଣ
ମନେ ମନେ ବିଚାରନ୍ତି ଦୁଃଖିତ ହୋଇଣ ।
ଗୋପୀଙ୍କି ଛାଡ଼ି ଆଇଲୁ ହେଲା ଏତେ ଦିନ
ବିକଳ ସେ ହେଉଥିବେ ବସି ରାତ୍ରିଦିନ ।
ନନ୍ଦ ଯଶୋଦାଙ୍କ ଦୁଃଖ କହିଲେ ନ ସରେ
ଆମ୍ଭଙ୍କୁ ସେ ପାଳିଥିଲେ କେତେ ଯତନରେ ।
ବୃଦ୍ଧକାଳେ ତାଙ୍କୁ ଆମ୍ଭେ ପାଳିବା ଉଚିତ
ନୋହିଲେ ଆମ୍ଭର ଧର୍ମ ହାନି ହୋଇବ ତ ।
ଏମନ୍ତ ବିଚାର କରି ପ୍ରଭୁ ଭଗବାନ
ଗୋପପୁରେ ଯିବାପାଇଁ କଳାଇଲେ ମନ ।
ଜ୍ୟେଷ୍ଠ ଶୁକ୍ଳ ଦଶମୀ ତିଥି ଗୁରୁବାର
ସ୍ୱାତୀ ନାମରେ ନକ୍ଷତ୍ର ଅଟଇ ସେ ଦିନର ।
ଶୋଭନ ଯୋଗ ଅଟଇ ବାଳବ କରଣ
ସେହି ଅମୃତ ଯୋଗରେ ପ୍ରଭୁ ନାରାୟଣ ।
ଗରୁଡ଼କୁ ସୁମରଣା କଲେ ଦୟାମୟ
ଆସିଣ ଛାମୁରେ ଉଭା ହେଲା ବୈନତେୟ ।
ମସ୍ତକରେ ହସ୍ତ ଦେଇ ବୋଲେ ପକ୍ଷୀଗଣ
କିମର୍ଥେ ସ୍ମରଣ ମୋତେ କଲ ନାରାୟଣ ।
ଗୋବିନ୍ଦ ବୋଇଲେ ତୁହି ଶୁଣ ଖଗବର
ପଠିରେ ବହାଇ ମୋତେ ନେବୁ ଖଗେନ୍ଦ୍ରବର
ସୁଦିବ୍ୟ ବେଶ ହୋଇଲେ ଦେବ ଜଗନ୍ନାଥ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚାରି ହସ୍ତ ।
କର୍ଣ୍ଣରେ କୁଣ୍ଡଳ ଶିରେ ନାନା ପୁଷ୍ପ ଚୂଳ
ମସ୍ତକେ ମୁକୁଟ କଣ୍ଠେ ଶୋଭେ ବନମାଳ ।
ବାହୁଟି କଙ୍କଣ ମୁଦି ରତ୍ନ ଓଢ଼ି ଆଣି
ଦେବାଙ୍ଗ ବସନ ପିନ୍ଧି ପ୍ରଭୁ ଚକ୍ରପାଣି ।
ଦିବ୍ୟ ବେଶେ ଗରୁଡ଼ର ପିଠିରେ ବସିଲେ
ନଗର ଭ୍ରମଣ ପାଇଁ ବିଜେ କରିଗଲେ ।
କୁଶସ୍ଥଳୀ ଦ୍ୱାରକାରେ ଭ୍ରମିଣ ଗୋସାଇଁ
ସମୁଦ୍ର କୂଳେ ମିଳିଲେ ତତକ୍ଷଣେ ଧାଇଁ ।
ବରୁଣଙ୍କୁ ସୁମରଣା କଲେ ଦାମୋଦର
ଛାମୁରେ ପ୍ରବେଶ ହେଲା ଆସି ରତ୍ନାକର ।
ପାଦରେ ପଡ଼ିଣ ସେହି ଶିରେ କର ଦେଲା
ଅନେକ ପ୍ରକାରେ ସ୍ତୁତିବଚନ ବୋଇଲା ।
ଗୋବିନ୍ଦ ତାକୁ ବୋଇଲେ ଆହେ ରତ୍ନାକର
ଆମ୍ଭର ବଚନ ତୁମ୍ଭେ ଶୁଣ ନୀରଧାର ।
ସହସ୍ରେ ଯୋଜନ ଦ୍ୱାରକା ପାଖୁ ଛାଡ଼ିଯିବ
ଆମ୍ଭର ବଚନ ତୁମ୍ଭେ ନିଶ୍ଚୟ ପାଳିବ ।
ତହିଁ ରହିବେ ଆମ୍ଭର ପିତା ମାତା ବେନି
ଆଉରି ଗୋପପୁରର ଯେତେ ଗୋପାଙ୍ଗଣୀ
ଦ୍ୱିତୀୟ ଦ୍ୱାରକା ସେହି ହୋଇବ ଆମ୍ଭର
ତହିଁରେ ରାଜା ହୋଇବେ ନନ୍ଦ ନୃପବର ।
ବରୁଣ ବୋଇଲା ଦେବ ଆଜ୍ଞା ପରମାଣେ
ସହସ୍ର ଯୁଗ ପର୍ଯ୍ୟନ୍ତ ଛାଡ଼ିବି ଏକ୍ଷଣେ ।
ଏତେ କହି ପ୍ରଭୁ ତହୁଁ ବାହାର ହୋଇଲେ
ବିଶ୍ୱକର୍ମାଙ୍କୁ ମନରେ ସୁମରଣା କଲେ ।
ସୁମରନ୍ତେ ବିଶ୍ୱକର୍ମା ଜାଣି ତା ପାରିଲା
ତତକ୍ଷଣେ ଆସି ପ୍ରଭୁ ଛାମୁରେ ମିଳିଲା ।
ନମସ୍କାର କରିଣ ସେ କହଇ ବଚନ
ଶୁଣ ସାବଧାନ ହୋଇ ଦେବ ଜନାର୍ଦ୍ଦନ ।
କି ନିମନ୍ତେ ଶୀଘ୍ରେ ମୋତେ ସୁମରିଲ ହରି
ସେ କଥା ଗୋଟିକ ମୋତେ କହିବା ବିସ୍ତାରି
ବିଶ୍ୱକର୍ମାର ବଚନ ଗୋବିନ୍ଦ ଶୁଣିଲେ
ବିମ୍ବାଧରେ ମନ୍ଦହାସ କରିଣ କହିଲେ ।

ବରୁଣ ଦେବତା ଆମ୍ଭ ଆଜ୍ଞା ମାନକର
ସହସ୍ରେ ଯୋଜନ ଭୂମି ଗଲା ଛାଡ଼ିକରି ।
ତୁ ଏବେ ସେ ଭୂମି ଉପରେ ପୁରକ ନିର୍ମାଣ
ସମାନ ହୋଇବ ଯେସନେ ଗୋପପୁରଲେ ଜାଣ
ପୂର୍ବରୁ ତ ଗୋପନଗ୍ର ଦେଖିଅଛୁ ତୁହି
ଏବେ ନଗ୍ରେ କର ଯାଇଁ ସେହିରୂପେ ତହିଁ ।
ଆଉରି ତୁ ଶୁଣ ଆମ୍ଭ କହିବାର ଗୀର
ଯେମନ୍ତ ପ୍ରକାରେ ହେବ ତହିଁର ପ୍ରକାର ।
ନନ୍ଦ ଯଶୋଦାଙ୍କ ପାଇଁ ହେବ ଯେଉଁ ପୁର
ଗଢ଼ୁ ଶତେ ଗୁଣରେ ସେ ଦିଶିବ ସୁନ୍ଦର ।
ଷୋଳସହସ୍ର ଗୋପୀଙ୍କର ଗୋଟିଏ ଗୋଟିଏ
ରଚିବ ମନ୍ଦିର ଦିଶୁଥିବ ତେଜୋମୟେ ।
ସେମାନେ ଅଟନ୍ତି ଆମ୍ଭ ପ୍ରାଣର ସଙ୍ଗାତ
ବାଲକାଳେ ଆମ୍ଭ ସଙ୍ଗେ ହୋଇଥିଲେ ମିତ ।
ତାହାଙ୍କର ଗୁଣମାନ ମୂରୁଛୁ ନୁହଇ
ସର୍ବଦା ଆମ୍ଭର ସେବା କରୁଥାନ୍ତି ସେହି ।
ଏବେ ତାଙ୍କୁ ଆଣି ଆମ୍ଭେ ସନ୍ନିଧେ ରଖିବୁ
ଦେହ ଛାଡ଼ିଗଲା ବେଳେ ବୈକୁଣ୍ଠକୁ ନେବୁ ।
ପ୍ରାଣାଧିକ କରି ମୋତେ ପାଳିଥିଲେ ନନ୍ଦ
ନିରନ୍ତର ସୁମରନ୍ତି ଶ୍ରୀରାମ ଗୋବିନ୍ଦ ।
ମୋହର ନାମଗୋଟି ନ ପାସୋରନ୍ତି ଦଣ୍ଡେ
ଶ୍ରୀକୃଷ୍ଣ ଶ୍ରୀକୃଷ୍ଣ ବୋଲି ଉଚାରନ୍ତି ତୁଣ୍ଡେ ।
ରାତିକ ଭିତରେ ତୁ ଯେ ନଗ୍ର ତିଆରିବୁ
ନିର୍ମାଣ କରିଣ ତହୁଁ ବେଗେ ଚଳିଯିବୁ ।
ଶୁଣ ହୋ ପରୀକ୍ଷ ରାଜା ପୁଣ୍ୟତମ ଦେହି
ଦ୍ୱାରକାକୁ ଚଳିଗଲେ କୃଷ୍ଣ ଏତେ କହି ।
ବରୁଣ ନୃପତି କୃଷ୍ଣ ଆଜ୍ଞା ଶିରେ ଧରି
ସହସ୍ରେ ଯୋଜନ ଯାଏ ଗଲା ଅପସରି ।
ସେହି ରାତେ ବିଶ୍ୱକର୍ମା ସେଠାକୁ ଆଇଲା
ପୂର୍ବରୁ ସେ ପ୍ରଭୁଙ୍କର ଆଜ୍ଞା ପାଇଥିଲା ।
ଯେଉଁରୂପେ ଆଜ୍ଞା ଦେଇଥିଲେ ଭବଗ୍ରାହୀ
ସେହିରୂପେ ବିଶ୍ୱକର୍ମା ନଗର ତିଆରି ।
ନନ୍ଦରାଜା ପାଇଁ କଲା ରଚିବ ନଗର
ନାନାଚିତ୍ର ପରବନ୍ଧେ ଦିଶେ ମନୋହର ।
ଷୋଳସହସ୍ର ପୁର ବିଶ୍ୱକର୍ମା ନିର୍ମାଣିଲା
ଗୋପପୁର ନଗରରୁ ସୁନ୍ଦର ଦିଶିଲା ।

ଚନ୍ଦ୍ରସେଣୀର ନଗର ସେରୂପେ ତୋଳାଇ
ରାତ୍ର ପାହୁଁ ବିଶ୍ୱକର୍ମା ଅନ୍ତର୍ଦ୍ଧାନ ହୋଇ ।
ନିଶି ପ୍ରଭାତ ହୁଅନ୍ତେ ଗୋବିନ୍ଦ ଉଠିଲେ
ନିତ୍ୟନେ ମିତ୍ତିକ କର୍ମ ସମସ୍ତ ସାରିଲେ ।
ରଚିବ ବେଶ ଧାରଣ କରି ଚକ୍ରଧର
ଗରୁଡ଼ ପୃଷ୍ଠରେ ବସି ଚଳିଲେ ସତ୍ୱର ।
ନବଦ୍ୱାରକାପୁରରେ ମିଳିଲେକ ଯାଇଁ
ବୁଲିଣ ସବୁ ଦେଖିଲେ କମଳାର ସାଇଁ ।
ପୁର ସକଳ ଦେଖିଣ ସନ୍ତୋଷ ଲଭିଲେ
କୃଷ୍ଣ ବିଶ୍ୱକର୍ମାକୁ ବହୁତ ପ୍ରଶଂସିଲେ ।
ରହସ୍ୟ ଦ୍ୱାରକା ବୋଲି ନାମ ଦେଇ ତାର
ପୁଣି ଆସି ନିଜପୁରେ ମିଳିଲେ ସତ୍ୱର ।
ବଳଦେବ ପ୍ରଭୁଙ୍କୁ ଏ କଥା ଜଣା ନାହିଁ
ଉଗ୍ରସେନ ନୃପ ଅବା ଜାଣିବ ତା କାହିଁ ।
ମାୟାଧର ପୁରୁଷ ଯା କରନ୍ତି ତିଆଣ
ଅନ୍ୟ କଏ ଜାଣିବ ତା ମନୁଷ୍ୟ ହୋଇଣ ।
ଖଗେଶ୍ୱରକୁ ମେଲାଣି ଦେଇ ହୃଷୀକେଶ
ଅନ୍ତଃପୁର ମଧ୍ୟେ ଯାଇ ହୋଇଲେ ପ୍ରବେଶ ।
ରୁକ୍ମିଣୀ ସତ୍ୟଭାମା ଯେ ମିଳିଲେ ସନ୍ନିଧେ
ଭକ୍ତିଭାବେ ନମସ୍କାର କଲେ କୃଷ୍ଣପାଦେ ।
ଗଙ୍ଗାଜଳରେ ତାଙ୍କର ପାଦ ଧୋଇଦେଲେ
ପାଦର ଉଦକ ନେଇ ଗର୍ଭକୁ ଖେପିଲେ ।
ଝୀନ ବସନେ ତାଙ୍କର ପୋଛିଲେ ଚରଣ
ରତ୍ନ ଖଟେ ବିଜେ କଲେ ପ୍ରଭୁ ନାରାୟଣ ।
ଷଡ଼ରସର ମଣୋହି କଲେକ ଶ୍ରୀହରି
ପାକ କରିଥିଲେ ଶତାଜନର କୁମାରୀ ।
ଭୋଜନ ସାରଣ ପ୍ରଭୁ ଆଚମନ କଲେ
କର୍ପୂରପାନ ରୁକ୍ମିଣୀଦେବୀ ନେଇ ଦେଲେ
ଭୁଞ୍ଜିଣ ସନ୍ତୋଷ ହେଲେ ପ୍ରଭୁ ଜନାର୍ଦ୍ଦନ
ରତନ ସିଂହାସନରେ ବସିଲେ ଆପଣ ।
ବେନପାର୍ଶ୍ୱେ ବସି ଝଟିଲେକ ବେନ ନାରୀ
ସତ୍ୟଭାମା ଯେ ବିଞ୍ଚନ୍ତି ବିଞ୍ଚଣିକ ଧରି ।
ଶ୍ରୀକୃଷ୍ଣଙ୍କ ମନ ମଧ୍ୟେ ହର୍ଷ ଜନ୍ମାଇଲେ
ନାନା କଥାମାନ କୃଷ୍ଣ ତାହାଙ୍କୁ କହିଲେ ।
ଏମନ୍ତ ସମୟେ ପୁଣି ରୁକ୍ମିଣୀ ବୋଇଲେ
କଥା ଏକ ମନେ ମୋର ପଡ଼ିଲା ଏକାଳେ ।

ସେହିକଥା ଗୁପ୍ତକରି ରଖିଲ ଶ୍ରୀହରି
ତ୍ରିଶ ଜନ୍ମ ଯୋଗେ ଆମ୍ଭେ ପକାଉଁ ପାସୋରି
ତୁମ୍ଭେ ଯେ ବୋଇଲ ରାଧିକାକୁ ହେଲ ବିଭା
ଚନ୍ଦ୍ରସେଣା ତାହାଙ୍କୁ କେମନ୍ତେ ହେଲା ବିଭା ।
ସେହି କଥା ଆମ୍ଭମାନେ ପଡ଼ିଲୁ ଗୋସାଇଁ
ପ୍ରସନ୍ନ ଚିତ୍ତେ ଆମ୍ଭଙ୍କୁ କହ ବିବରାହି ।
ମନ ପ୍ରକୃତିରେ ହରି ସେ କଥା ବାଣ୍ଛିଲେ
ମନେ ମନେ ରୁକ୍ମିଣୀଙ୍କି ବହୁ ପ୍ରଶଂସିଲେ ।
ସନ୍ତୋଷରେ ତାହାଙ୍କୁ ଯେ ଭଣି ନାରାୟଣ
ସାବଧାନେ ଶୁଣ ତୁମ୍ଭେ ଏଥିର ବିଧାନ ।
ବୃଷଭାନୁ ମନ୍ଦିରେ ରାଧିକା ଦେଖା ଥିଲେ
କିଛିଦିନ ଅନ୍ତେ ବାଲଭାବ ତ୍ୟାଗ କଲେ ।
ଯୌବନ କାଳ ପ୍ରବେଶ ହୋଇଲାକ ଯହୁଁ
ବର ପାଇଁ ବିଚାର କଲେକ ନୃପରାହୁ ।
ଚତୁର୍ଦ୍ଦିଗେ ବର ଖୋଜି ନ ପାଇଲେ କାହିଁ
ଦଇବ ପୁରୁଷ ଯାହା ଅଛଇ ଘଟାଇ ।
ସେହିକଥାମାନ କିଏ କରିବ ଅନ୍ୟଥା
ଗୋପରେ ଖୋଜିଲା ବୃଷଭାନୁ ମହାଜ୍ଞାତା ।
ଚନ୍ଦ୍ରସେଣାଙ୍କର ପିତା ଅଟଇ ସୁଷେଣ
ତାଙ୍କ ସହିତେ ସମ୍ବନ୍ଧ କଲାକ ଘଟନ ।
ବରପଣରେ ତାହାକୁ ବରି ମହାରସ୍ତେ
ଶୁଭଲଗ୍ନରେ ନେଇଣ ବିବାହ କରାଏ ।
ନାନାବିଧ ପରକାରେ ଯଉତୁକ ଦେଲା
ଦୁହିତାଟିକି ତାହାର ହସ୍ତେ ସମର୍ପିଲା ।
ଦୈବଯୋଗେ ଚନ୍ଦ୍ରସେଣା ଅଟେ ନପୁଂସକ
ଚହିଁକି ଦୈବ ଘଟଣା କରିଅଛୁ ଦେଖ ।
କନ୍ୟା ଘେନି ଚନ୍ଦ୍ରସେଣା ଗଲା ନିଜ ଆଳ
ଏ ପ୍ରକାରେ କହିଗଲା କେତେହେଁକ କାଳ
ନପୁଂସକ ଲକ୍ଷଣେ ସେ ନେଉଥାଇ ଦିନ
ରାଧା ଅଙ୍ଗ ଛୁଇଁବାକୁ ନୁହଇ ଭାଜନ ।
ଏମନ୍ତେ ଚନ୍ଦ୍ରସେଣାର ଅଟଇ ବନିତା
ମଉଳାଣୀ ଅଟେ ମୋର ବୃଷଭାନୁସୁତା ।
ଯାହା ପଚାରିଲ ଆମ୍ଭେ କହିଲୁ ଫିଟାଇ
ଯେଣୁକରି ପଞ୍ଚଭୂତ ମୋର ତୁମ୍ଭେ ସହି ।
ଶୁଣିଣ ରୁକ୍ମିଣୀ ହେଲେ ଆନନ୍ଦ ଅପାର
ବୋଲନ୍ତି ଦୟାର ନିଧି ଅଟ ଦାମୋଦର ।
ଯଦ୍ୟପି ସେ ରାଧିକାକୁ ଆଣି ଦେଖାଇବ
ତେବେ ଆମ୍ଭର ମନର ଅପ୍ରତ୍ୟୟ ଯିବ ।
ଗୋବିନ୍ଦ ବୋଇଲେ ଶୁଣ ଆଗୋ ପ୍ରାଣସହି
ନିଶ୍ଚେ ଦେଖାଇବୁ ଆଣି ଭ୍ରାନ୍ତି ଏଥେ ନାହିଁ
ଏମନ୍ତ ପ୍ରବୋଧ ବାକ୍ୟ କହି ନାରାୟଣ
ହୃଦ ମଧ୍ୟରେ ବିଚାର କରନ୍ତି ଆପଣ ।
ଏ ଦ୍ୱାପରଯୁଗ ଶେଷ ହୋଇଲାକ ଆସି
ବୈକୁଣ୍ଠକୁ ଯିବା କପାଁ। ଏଥେ ଥିବା ବସି ।
ଏମନ୍ତ ବିଚାରି ମନେ କରି ଭାବରାହି
ରଜନୀ ପ୍ରଭାତ ହନ୍ତେ ନିଦ୍ରାଭଗ୍ନ ହୋଇ ।
ଗଙ୍ଗାଜଳ ଘେନି କୃଷ୍ଣ ମୁଖ ପଖାଳିଲେ
ଦନ୍ତ ଧାବନାଦି କାର୍ଯ୍ୟ କେତେଗଣ ସାରିଲେ ।
ସ୍ନାନ ନିତ୍ୟକର୍ମ ଆଦି ସାରି ଦାମୋଦର
ଉଦ୍ଧବ ଅକ୍ରୂରଙ୍କୁ ସେ ରାଇଲେ ସତ୍ୱର ।
ଗୋପନରେ ତାଙ୍କ ସଙ୍ଗେ କରନ୍ତି ବିଚାର
ଏହି କଥା ନ କହିବ କାହାର ଆଗର ।
ରଥ ସଜ କରି ଆଣ ଯିବା ଗୋପଯାଏ
ଆମ୍ଭ ବିହୁନେ ବିକଳ ହୁଅନ୍ତି ଗୋପପୋଏ ।
ନନ୍ଦ ଯଶୋଦା ବିକଳ କହୁ ନ ସରଇ
ଗୋପୀମାନେ ମୋତେ ମୂର୍ଚ୍ଛିପାରିବେବାକାହିଁ
ଶୀଘ୍ର ଶୀଘ୍ର ବେଗ ହୋଇ ତାହାଙ୍କୁ ଆଣିବା
ତେବେ ସିନା ତାହାଙ୍କର ମନକୁ ରଞ୍ଜିବା ।
ଅକ୍ରୂର ବୋଲଇ ଶିରେ ଯୋଡ଼ି ବେନିକର
ତୁମ୍ଭଙ୍କୁ ଆଣିଲି ଚହୁଁ ବସାଇ ରଥର ।
ଆଉବେଳେ ଗୋପପୁରେ ଲେଉଟି ନ ଗଲ
ତେଣୁକରି ଦୁଃଖେ ଛନ୍ତି ଗୋପୀ ଯେ ଗୋପାଳ
ଗୋପୀମାନେ ମୋ ଉପରେ ହୋଇଛନ୍ତି କ୍ରୁଦ୍ଧ
ଗୋପକୁ ମୁଁ ଗଲେ' ନିଶ୍ଚେ କରିବେ ସେ ଦ୍ୱନ୍ଦ୍ୱ
ଏଥିପାଇଁ ଭୟ ଜାତ ହୁଅଇ ମୋହର
କରୁଣା ସାଗର ମୋତେ କହିବା ବିଚାର ।
ଗୋବିନ୍ଦ ବୋଇଲେ କପାଁ। କରୁଅଛ ଭୟ
ଆମ୍ଭସଙ୍ଗେ ଥିଲେ ଗୋପୀ ହୋଇବେ ସଦୟ
ଏତେ କହି ଅକ୍ରୂରଙ୍କୁ ପ୍ରବୋଧନା କରି
ବୋଇଲେ ପ୍ରଭାତୁ କାଲି ଯିବା ଗୋପପୁରୀ ।
ଅକ୍ରୂର ଉଦ୍ଧବ ଶୁଣି ନିଜପୁରେ ଗଲେ
ଅନ୍ତଃପୁର ଭୁବନକୁ କୃଷ୍ଣ ବିଜେ କଲେ ।

ଏହା ଶୁଣି ବିସ୍ମୟରେ ପରୀକ୍ଷ ନୃପତି
ଶୁକ ପାଦେ ପୂଜାକରି ପୁଣି ପଚାରନ୍ତି ।
ଚନ୍ଦ୍ରସେଣା ବୃତ୍ତକଥା କହିଲ ଗୋସାଇଁ
ତାହା ଶୁଣି ମୋ ମନରେ ସନ୍ଦେହ ହୁଅଇ ।
କହୁ କହୁ କଥା ମଧ୍ୟେ ରଖିଦେଲ ସନ୍ଧି
ତେଣୁ କରି ମନ ମୋର ହେଉଅଛି ଧନ୍ଦ ।
ତୁମ୍ଭେତ କହିଲ ରାଧା ଲକ୍ଷ୍ମୀ ଅଂଶେ ଜାତ
କେମନ୍ତେ ବଧୂ ହୋଇଲା ସୁଲକ୍ଷଣର ସୁତ ।
ଚନ୍ଦ୍ରସେଣା ପୂର୍ବରେ କି ତପ କରିଥିଲା
ସେ ଦେବୀ କମଳା ତାର ଭାରିଯା ହୋଇଲା ।
ଏହା ଅସମ୍ଭବ ମୋତେ ଲାଗିଲା ଗୋସାଇଁ
ଏଣୁକରି ମୁଁ ତୁମ୍ଭର ଚରଣେ ପୁଚ୍ଛଇ ।
ତୁମ୍ଭେ ସର୍ବଜ୍ଞ ପୁରୁଷ ଅଟ ମୁନିବର
ଚନ୍ଦ୍ରସେଣା ପୂର୍ବ ବାର୍ତ୍ତା କହ ମୋ ଆଗର ।
ପରୀକ୍ଷରାଜା ମୁଖରୁ ଏସନକ ଶୁଣି
ଟହ ଟହ ହୋଇ ହସିଲେ ସେ ମୁନିମଣି ।
ବୋଇଲେ ରାଜା ତୁ ଅଟୁ ବଡ଼ ଭାଗ୍ୟବାନ
ତେଣୁକରି ପଚାରିଲୁ ଏହି କଥାମାନ ।
ଏକମନ ହୋଇ ଶୁଣ ଆହେ ନୃପବର
ଚନ୍ଦ୍ରସେଣା ପୂର୍ବଜନ୍ମ କଥାର ଉତ୍ତର ।
କରପଦ୍ମ ଯୋଡ଼ି ରାଜା ବସିଲା ଛାମୁରେ
ବାରମ୍ବାର ନମଇ ସେ ମୁନିଙ୍କ ପୟରେ ।
ପୁରାଣ ପୁସ୍ତକଂଚହୁ ଫେଡ଼ି ମୁନିବର
ଧୀରେ ଧୀରେ କହନ୍ତି ସେ ରାଜାଙ୍କ ଆଗର ।
ପଦ୍ମ ପୁରାଣ ଏହୁ କୃଷ୍ଣଲୀଳା ରସ
ସାବଧାନ ହୋଇ ଶୁଣ ଅଭିମନ୍ୟୁ ଶିଷ୍ୟ ।
ତ୍ରେତାଯୁଗ ଭୋଗ କାଳେ ରାମ ଅବତାରେ
ନରରୂପେ ବିଷ୍ଣୁ ଜନମିଲେ ମର୍ତ୍ତ୍ୟପୁରେ ।
ମାୟାରେ ମନୁଷ୍ୟରୂପ ଧରି ଦଇତ୍ୟାରି
ଦଶରଥ ରାଜାଙ୍କର ଘରେ ଅବତରି ।
ପିତାଙ୍କର ବଚନେ ସେ ବନବାସ କଲେ
ଦଣ୍ଡକାରଣ୍ୟରେ ଯାଇ ମଢ଼ିଆ ବାନ୍ଧିଲେ ।
ଥୋକାଏକ ଦିନ ତହିଁ ବାସ କରି ରହି
ଉଦର ପୋଷିଲେ କନ୍ଦମୂଳ ଫଳ ଖାଇ ।
ଜାନକୀ ଲକ୍ଷ୍ମଣକୁ ସେ ସଙ୍ଗରେ ଘେନିଣ
ଅତି ଦୁଃଖେ ବଞ୍ଚି କଲେ ସମୟ ଯାପନ ।

କେତେଦିନେ ଶୂର୍ପଣଖା ନାମରେ ରାକ୍ଷସୀ
ଗୋଦାବରୀ ଜଳେ ସ୍ନାନ କରୁଥିଲା ଆସି ।
ମନୁଷ୍ୟ ପାଦର ଚିହ୍ନ ସଙ୍କେତ ଦେଖିଲା
ପଥ ହେଜ ରାମଙ୍କର ଆଶ୍ରମେ ମିଳିଲା ।
ରାବଣର ଭଗ୍ନୀ ସେହି ଅଟେ ଶୂର୍ପଣଖା
ଦେବ ଯକ୍ଷ ଗନ୍ଧର୍ବଙ୍କୁ ନ କରଇ ଶଙ୍କା ।
ଶ୍ରୀରାମଙ୍କ ମୁଖ ଦେଖି କାମେ ହେଲା ମୋହି
ଲକ୍ଷ୍ମଣ ଛେଦିଲେ ତାର ନାସା କର୍ଣ୍ଣ ଦୁଇ ।
ତେଣୁ ଘୋର ଧ୍ୱନି କରି ଭୟେ ପଳାଇଲା
ରାବଣ ଆଗରେ ମିଳି ସମସ୍ତ କହିଲା ।
ସୀତା ରୂପ ଗୁଣ ଶୁଣି ଦୁଷ୍ଟ ଦଶାନନ
ଲଙ୍କାରୁ ଆଇଲା ଚଢ଼ି ପୁଷ୍ପକ ବିମାନ ।
ଆସୁ ଆସୁ ମାରୀଚକୁ ବାଟରେ ଭେଟିଲା
ମାୟାରେ ସୁବର୍ଣ୍ଣ ମୃଗ କରି ତାକୁ ନେଲା ।
ସେହି ମାୟା ମୃଗ ଗୋଟି ସୀତା ଦୃଷ୍ଟିପଥେ
ଛାଡ଼ି ଦେଇ ଦଶାନନ ଲୁଚିଲା ବନସ୍ତେ ।
ଅପୂର୍ବ କୁରଙ୍ଗ ଯହୁଁ ଜାନକୀ ଦେଖିଲେ
ଧରି ଆଣି ଦିଅ ବୋଲି ରାମଙ୍କୁ ମାଗିଲେ ।
ସୀତାବାକ୍ୟେ ବେନି ଭାଇ ଗଲେ ମୃଗ ମାରି
କପଟ ବେଶେ ରାବଣ ସୀତା ନେଲା ହରି ।
ମୃଗ ମାରି ବାହୁଡ଼ନ୍ତେ ଶ୍ରୀରାମ ଲକ୍ଷ୍ମଣ
ସୀତାଙ୍କୁ ନ ଦେଖି ଶୋକ କଲେ ରଘୁରାଣ
ବନଯାକ ଖୋଜି ଖୋଜି ଦୁଇଭାଇ ଗଲେ
ଋଷ୍ୟମୂକ ପର୍ବତରେ ହନୁକୁ ଭେଟିଲେ ।
ସୁଗ୍ରୀବ ସଙ୍ଗେ ମିତ୍ରତା କଲେ ରଘୁରାଣ
ବାଣ ମାରି ବାଳିରାରେ କଲେକ ନିଧନ ।
ସୁଗ୍ରୀବକୁ କିଷ୍କିନ୍ଧ୍ୟାରେ ନୃପତି କରାଇ
ଚତୁର୍ମାସ୍ୟା କଟାଇଲେ ମାଲ୍ୟବନ୍ତେ ରହି
ସୁଗ୍ରୀବ ସଇନ୍ୟ ଘେନି ରାମଙ୍କୁ ଭେଟିଲେ
ସୀତା ପାଇଁ ଚାରିଦିଗେ ଦୂତ ବରଗିଲେ ।
ଖୋଜିବାର ନିମନ୍ତେ ସେ ତାଙ୍କୁ ଆଜ୍ଞାଦେଲେ
ତିନିଦିଗୁଁ ଦୂତମାନେ ବାହୁଡ଼ି ଆଇଲେ ।
ଦକ୍ଷିଣ ଦିଗକୁ ଯାଇଥିଲା ହନୁମାନ
ଅବହେଳେ କରିଣ ସେ ସମୁଦ୍ର ଲଙ୍ଘନ ।
ଦୁର୍ଜ୍ଜୟ ଲଙ୍କା ଗଡ଼ରେ ନିର୍ଭୟେ ବୁଲିଲା
ଅଶୋକ ବନରେ ଲଖି ସୀତା ଠାବ କଲା ।

ସୀତା ରୂପ ଦେଖି ମନେ ବିସ୍ମରଇ ହନୁ
ଜାଣିଣ ଚେତକଲେ ସ୍ୱାଙ୍କୁ ଦଶରଥ ସୂନୁ ।
ଏ ଯାହାକୁ ଭାର୍ଯ୍ୟା ହୋଇ ଦେବ ଅନ୍ନ ଜଳ
ସଂସାର ମଧ୍ୟେ ତା ଜନ୍ମ ହୋଇବ ସଫଳ ।
ଏମନ୍ତ ବିସ୍ମର ଯହୁଁ ହନୁ ମନେ କଲା
ଅନ୍ତର୍ଯ୍ୟାମୀ ରାମଙ୍କୁ ତା ଗୋଚର ହୋଇଲା ।
ସମୁଦ୍ରରେ ସେତୁ ବନ୍ଧ ବାନ୍ଧ ରଘୁସାଇଁ
ସବଂଶରେ ରାବଣକୁ ବଧ କଲେ ଯାଇ ।
ରାବଣର ସାନଭାଇ ନାମ ବିଭୀଷଣ
ସେ ଆସି ରାମଙ୍କ ପାଦେ ପଶିଲା ଶରଣ ।
ତେଣୁ ତାଙ୍କୁ ଲଙ୍କାଗଡ଼ ରାଜା କରାଇଲେ
ସୀତାଙ୍କୁ ଘେନିଣ ରାମ ଅଯୋଧ୍ୟାକୁ ଗଲେ ।
ଅଯୋଧ୍ୟା ରାଜ୍ୟରେ ସେହି ଦଶରଥ ପୁତ୍ର
ଅଭିଷେକ ହୋଇ ଶିରେ ଟେକାଇଲେ ଛତ୍ର ।
ଅଭିଷେକ ଅନ୍ତେ କପିବୀରଙ୍କୁ ଡକାଇ
ଗଉରବ କଲେ ଶାଢ଼ୀ ସୁନା ବଳା ଦେଇ ।
ଗୋପନେ ହନୁମନ୍ତକୁ ହକାରିଲେ ପାଶ
ଗୁପତ ଭାବେ କହନ୍ତି କରିଣ ବିଶ୍ୱାସ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ମହାବୀର
ଅଶୋକ ବନକୁ ଯାଇ କଲୁ ଯା ବିସ୍ମର
ସେହି ଅଶୋକ ବନରେ ସୀତା ରୂପ ଦେଖି
ଯାହା ବିସ୍ମରିଲୁ ଶୁଣ ପବନର ବନ୍ଧି ।
ବୋଇଲୁ ଏ ସ୍ତ୍ରି ସ୍ତ୍ରୀ ଅନ୍ନ ଜଳ ଯାକୁ ଦେବ
ପୃଥ୍ୱୀରେ ତାର ଜୀବନ ସାର୍ଥକ ହୋଇବ ।
ଧନ୍ୟ ଧନ୍ୟ ରାମଚନ୍ଦ୍ର ମହିମା ତୋହର
ଏ କଥା ମନ ମଧ୍ୟରେ କଲୁ ତୁ ବିସ୍ମର ।
ତାହା ଶୁଣି ହନୁମନ୍ତ ଚକିତ ହୋଇଲା
ହୃଦପଦ୍ମର ମଧ୍ୟରେ ମହାଭୟ କଲା ।
ଅନ୍ତର୍ଯ୍ୟାମୀ ନାଥ ଏହୁ ରଘୁକୁଳ ରାଣ
ଏତେ ବଡ଼ ପ୍ରଭୁଠାରେ କଲି ଦ୍ରୋହପଣ ।
ଏତେ ବୋଲି ହନୁମାନ ଚରଣେ ନମଇଁ
ଉଠ ଉଠ ହନୁ ବୋଲି ରାମ ଆଜ୍ଞା ଦେଇ ।
କରପଦ୍ମ ଯୋଡ଼ି ଉଭା ଅଛି ହନୁବୀର
ରାମ ବୋଇଲେ କୁଶଳ କହ ମୋ ଆଗର ।
ଆମ୍ଭର କଲ୍ୟାଣ ବାକ୍ୟ ତୋତେ ପ୍ରାପ୍ତ ହେଉ
ଆମ୍ଭର ବଚନେ ତୋର କାର୍ଯ୍ୟ ସିଦ୍ଧ ହେଉ ।
ଏ ଜନ୍ମରେ ଯେ ବିସ୍ମର କଲୁ ତୁ ମନେଣ
ଦ୍ୱାପର ଯୁଗରେ ତାହା ପ୍ରାପ୍ତ ହେବୁ ପୁଣ ।
ଦ୍ୱାପରେ ଉଗାବତାର ହୋଇବ ଆମ୍ଭର
ଆମ୍ଭେ ଜନମ ଲଭିବୁଁ ମଥୁରା ନଗର ।
ଆମ୍ଭଙ୍କୁ ଟେକାଇ ବସୁଦେବ ଘେନିଯିବ
ନନ୍ଦ ରାଜାର ଗୃହରେ ଥୁଇଣ ଆସିବ ।
ଅଷ୍ଟବରଷ ସେଠାରେ ବିହରିବୁଁ ରହି
ଆମ୍ଭର ବଚନ ଚିତ୍ତେ ରଖିଥାଅ ତୁହି ।
ତୁହି ଜନମ ଲଭିବୁ ସେହି ଗୋପପୁରେ
ଚନ୍ଦ୍ରସେଣା ନାମ ହେବ ଗୋପାଳ ମଧ୍ୟରେ
ସୁଷେଣ ଗୋପାଳର ତୁ ହୋଇବୁ କୁମର
ସବୁ ଗଉଡ଼ ଉପରେ ହେବୁ ତୁ ମନ୍ଦର ।
ଅଂଶ ଘେନ ତୁହି ଯାଇ ଲଭିବୁ ଜନମ
ସୀତା ଜାତ ହେବେ ବୃଷଭାନୁର ଘରେଣ ।
ପୂର୍ବ ଅଭିଶାପେ ସେହୁ ରାଧିକାକୁ ଦେବ
ମୋତେ ସେବା କଲେ ଫଳ ବ୍ୟର୍ଥ ନୋହିବ
ରାଧିକାର ଅଙ୍ଗ ତୁହି କେଭେ ନ ଛୁଇଁବୁ
ଜଗିଲାର ପରକାରେ ତାଙ୍କୁ ରଖିଥିବୁ ।
ମୋତେ ସେବା କଲାଫଳ ନୋହିବ ବ୍ୟର୍ଥ
ତୁହି ଯେଣୁ ଅଟୁ ମୋର ବିଶ୍ୱାସୀ ଭକତ ।
ଯେଣୁକରି ଅପ୍ରତ୍ୟୟ ନ ଥିବ ଆମ୍ଭର
ଅଷ୍ଟବର୍ଷ ଲୀଳା ଆମ୍ଭେ କରିବୁ ଗୋପର ।
ହନୁମନ୍ତକୁ ଗୋପନେ ଏତେକ କହିଲେ
ଆସ୍ଥାନର ଲୋକ କେହି ଜାଣି ନ ପାରିଲେ ।
ଶୁଣିଲୁଟିକ ହୋ ପରୀକ୍ଷିତ ନୃପରାଣ
ତୁହି ଯାହା ପଚାରିଲୁ ଚନ୍ଦ୍ରସେଣା ଜନ୍ମ ।
ପୂର୍ବ ଜନ୍ମେ ଚନ୍ଦ୍ରସେଣା ଅଟେ ହନୁମନ୍ତ
ଜନ୍ମେ ଜନ୍ମେ ସେ ଅଟଇ ନାରାୟଣ-ଭକ୍ତ ।
ଗୁପତ ଚରିତ ଏହି ଅମୃତ ଆଖ୍ୟାନ୍ୟ
ତେଣୁକରି ଗୁପ୍ତ କଥା କହିଲୁ ରାଜନ ।
ଶୁଣିଣ ପରୀକ୍ଷ ରାଜା ସାନନ୍ଦ ହୋଇଲା
ମୁନିଙ୍କର ପାଦପଦ୍ମେ ନମସ୍କାର କଲା ।
ଏଥୁଅନନ୍ତରେ କସ କଲେ ଭବଗ୍ରାହୀ
ଏହା ମୋତେ ବୁଝାଇଣ କହ ପୁଣ୍ୟଦେହୀ ।
ଶୁଣିଣ ସେ ଶୁକମୁନି କରନ୍ତି ଉତ୍ତର
ଏକ ମନ ହୋଇ ଶୁଣ ଉତ୍ତରା କୁମର ।

ଉଦ୍ଧବ ଅକ୍ରୂର ଦୁହେଁ ନନ୍ଦପୁରେ ଗଲେ
ରଜନୀ ପ୍ରଭାତ ହେଉଁ ଶଯ୍ୟାରୁ ଉଠିଲେ ।
ତହୁଁ ନିତ୍ୟକର୍ମମାନ ସାରିଣ ବହନ
ଦରଶନ କଲେ ଯାଇ ନନ୍ଦର ନନ୍ଦନ ।
ଗୋବିନ୍ଦ ବୋଇଲେ ଯିବାଟିକି ଗୋପପୁର
ଶୁଣି ସ୍ୱୀକାର କରିଲେ ଉଦ୍ଧବ ଅକ୍ରୂର ।
ଆଜ୍ଞା ପାଇ ଦୁଇଜଣ ବେଗେ ସଜ ହେଲେ
ଗୋପପୁର ଯିବା କଥା କାକୁ ନ କହିଲେ ।
ଯାଉଁ ଯାଉଁ ଯମୁନାରେ କଲେକ ସ୍ନାହାନ
ଦିବ୍ୟ ବେଶ ହୋଇ ରଥେ ଯାନ୍ତି ତିନିଜଣ ।
ଯମୁନା ବୋଇଲେ ନମସ୍କାର ହୋ ଗୋସାଇଁ
ଏତେକାଳେ ତୁମ୍ଭର ଶ୍ରୀମୁଖ ଦେଖିଲଇଁ ।
ରଥରେ ଚଢ଼ି ବାହାର ହେଲେ ତିନିଜଣେ
ଚମକାଇ ରଥ ବାହି ଦାରୁକ ଆପଣେ ।
କଦମ୍ବ ତଳେ ସାରଥି ରଥ କଲା ନେଇ
ରଥୁ ଓହ୍ଲାଇ ଅଇଲେ କମଳାର ସାଇଁ ।
ରତନ ସିଂହାସନରେ ମିଳଲେ ବହନ
କଦମ୍ବକୁ ଚାହିଁ ନିରେଖନ୍ତି ନାରାୟଣ ।
ବୃକ୍ଷ ବୋଲଇ ଆମ୍ଭଙ୍କୁ ଛାଡ଼ିକରି ଗଲ
ଆସିବୁ ବୋଲି କହିଣ ମଥୁରା ରହିଲ ।
ଯେଉଁଦିନୁ ଏଥିଠାରୁ ଗଲ ଦାମୋଦର
ସେହି ଦିନୁ ଆମ୍ଭ ଆତ୍ମା ହୁଅଇ ଅସ୍ଥିର ।
ମୋହନ ମୁରଲୀ ନାଦ କର୍ଣ୍ଣେ ଶୁଣୁଥାଇ
ସେ ନାଦ ଶୁଣିଲେ ଅଙ୍ଗ ପୁଲକ ଉଠଇ ।
ମୋହର ଉପରେ ପଡ଼ୁଥିଲା ଶ୍ରୀପଦ୍ମର
ପାଦରଜେ ଅଙ୍ଗ ହେଉଥିଲା ଜରଜର ।
ଏତେ ଭାଗ୍ୟ ମୋହର ହୋ କେଉଁଆଡ଼େଗଲା
ଶ୍ରୀଚରଣ ଧୂଳି ମୋର ଅଙ୍ଗେ ନ ପଡ଼ିଲା ।
ମୁରଲୀର ଶବଦ ନ ଶୁଣିଲି ଶ୍ରବଣେ
ଏବେ ଦୟା କରିଣ ଅଇଲ ଏତେଦିନେ ।
ସେହି କଦମ୍ବ ବୃକ୍ଷର ଭକ୍ତିଭାବ ଦେଖି
କହିଲେକ ବଂଶୀଧରେ ହସି ପଦ୍ମଆଖି ।
କିଛିହିଁ ଚିନ୍ତା ନ କର ହେ କଦମ୍ବ ବୃକ୍ଷ
ଜନ୍ମେ ଜନ୍ମେ ସଖା ତୁହି ଅଛୁ ଆରେ ଗଛ ।
ଏତେକ କହିଣ ତହୁଁ ହୋଇଲେ ବାହାର
ଧୀର ଗତିରେ ବୁଲନ୍ତି ପ୍ରଭୁ ଦାମୋଦର ।

ବୃନ୍ଦାବନରେ ଯେତେକ ଜୀବଜନ୍ତୁ ଥିଲେ
ଗୋବିନ୍ଦଙ୍କର ଶ୍ରୀମୁଖ ସମସ୍ତେ ଦେଖିଲେ ।
କୁଞ୍ଜବନ ମଧ୍ୟେ ପଶିଲେକ ଦେବ ଯାଇ
ଦେଖନ୍ତି ସଙ୍କେତ ସ୍ଥାନମାନ ତୋଷ ହୋଇ ।
ନମସ୍କରିଲୁ ବୋଲିଣ କରନ୍ତି ହରିଧ୍ୱନ
ଶ୍ରୀମୁଖ ଦେଖି ପୁଲକ ହୁଅନ୍ତି ପୁଣି ପୁଣି ।
ଅବସନ୍ତେ ବସନ୍ତ ଯେ ବଢ଼େ ଘନ ଘନ
କୋକିଳମାନେ ରାବନ୍ତି ହୋଇ ତୋଷମନ
ଭ୍ରମରମାନେ ପୁଷ୍ପରେ ଆନନ୍ଦେ ମାତିଲେ
ଶ୍ରୀବୃନ୍ଦାବନଯାକରେ ବୁଲିଣ ଦେଖିଲେ ।
ଉଦ୍ଧବ ଅକ୍ରୂରକୁ ଦେଖାନ୍ତି କ୍ରୀଡ଼ାସ୍ଥାନ
ରଥ ଚଳାନ୍ତି ସେମାନେ ହୋଇ ହର୍ଷମନ ।
ପୁଣି ଯାଇ ବୃନ୍ଦାବନେ ପଶି ନନ୍ଦବତ୍ସ
ଦେଖନ୍ତି ସେ କ୍ରୀଡ଼ାସ୍ଥାନମାନଙ୍କୁ ପ୍ରତ୍ୟକ୍ଷ ।
ପକ୍ଷିଏ ଦେଖି କୃଷ୍ଣଙ୍କୁ ହୁଅନ୍ତି ଉସତ
ଏଥେ କ୍ରୀଡ଼ାରଙ୍ଗ କରିଥିଲେ ଗୋପୀନାଥ ।
ରହସ୍ୟ ବୃନ୍ଦାବନରୁ ବାହାର ହୋଇଲେ
ମଧୁବନ ବିପିନରେ ଯାଇ ପ୍ରବେଶିଲେ ।
ତହିଁରେ ଦେଖନ୍ତି ଯେତେ ଥିଲା କ୍ରୀଡ଼ାସ୍ଥାନ
ଯହିଁ ରାସକ୍ରୀଡ଼ା କରିଥିଲେ ଷୋଳଦିନ ।
ସେହି କଥାମାନ ସବୁ ମନେ ମନେ ଭାଳି
ରଥ ଚଳାଇଣ ଯାନ୍ତି ତହୁଁ ବନମାଳୀ ।
ଗୁପତ ବୃନ୍ଦାବନେ ମିଳିଲେ ଦେବ ଯାଇ
ଉଦ୍ଧବ ଅକ୍ରୂରେ ବଦସ୍ମନ୍ତୀ ଭାବଗ୍ରାହୀ ।
ଗୋପୀଙ୍କୁ ଦେଖିଣ ଲୁଚିଥିଲୁଁ ଏହି ବନେ
ରାଧାସହ କ୍ରୀଡ଼ା କରୁଥିଲୁଁ ଏହି ସ୍ଥାନେ ।
କ୍ରୀଡ଼ାସ୍ଥାନମାନ ତାଙ୍କୁ ଦେଖାଇଣ ଦେଲେ
ଉଦ୍ଧବ ଅକ୍ରୂର ଦେଖି ଶିରେ କର ଦେଲେ
କୁଞ୍ଜବନ ମଧ୍ୟେ ପଶିଲେକ ନାରାୟଣ
ଦୁଇ ଜଣଙ୍କୁ ବସାଇ ଆପଣା ରଥେଣ ।
ବୃନ୍ଦାବନ ଦେଖିଣ ସେମାନେ ନମସ୍କରିଲେ
ଗୋବିନ୍ଦଙ୍କ ବାଳକ୍ରୀଡ଼ା ସ୍ଥାନ ନିରେଖିଲେ ।
ଯହିଁ ଗୋପୀଏ ଚନ୍ଦନ ଘେନି ବୋଳିଥିଲେ
କୁଙ୍କୁମ ନେଇଣ କୃଷ୍ଣ ଅଙ୍ଗରେ ଲେପିଲେ ।
ଛଡ଼ା ମଳକୁଟି ପଡ଼ିଥିଲା ଯେଉଁ ସ୍ଥଳ
ସେହି ସ୍ଥାନ ଦେଖାଇଲେ ମଦନ ଗୋପାଳ ।

ଉଦ୍ଧବ ଅକ୍ରୂର ତାହା ପଛାରେ ଯେବଣେ
ବିସ୍ମରିଲେ ବିସ୍ମରିଲେ ବୋଲଣ ବୋଇଲେ ।
ତାହାଙ୍କର ସଙ୍ଗତରେ ଦାରୁକ ଯେ ଥିଲା
ସେହି ଗୋପ ବୃନ୍ଦାବନ ଦେଖି ବିସ୍ମରିଲା ।
ଲେଉଟି କୃଷ୍ଣ ତଳରେ କଦମ୍ବ ତଳକୁ
ଦାରୁକେ ବୋଇଲେ ପାଣି ଦିଅ ଘୋଟକକୁ ।
ଆଜ୍ଞା ପାଇଣ ଦାରୁକ ରଥ ରହାଇଲା
ଯମୁନାରେ ଘୋଟକଙ୍କ ପାଣି ପିଆଇଲା ।
ବାହୁଡ଼ାଇଣ ଅଶ୍ୱଙ୍କୁ ରଥରେ ଯୋଚିଲା
ଗୋବିନ୍ଦଙ୍କ ଭାବ ଜାଣି ଆନନ୍ଦିତ ହେଲା ।
ଆପଣେ ଶ୍ରୀକୃଷ୍ଣ ବୃନ୍ଦାବନରେ ପଶିଲେ
ଫଳ ତୋଳି କଦମ୍ବର ତଳକୁ ଆଣିଲେ ।
ଭକ୍ଷଣ ଫଳମୂଳ କଲେକ ଆହାର
ଉଦ୍ଧବକୁ ସଙ୍ଗେ ଘେନି ଗଲେ ଦାମୋଦର
ଗୋବର୍ଦ୍ଧନ ଗିରି ପାଶେ ମିଳିଲେକ ଯାଇ
ଗୋଗୋଷ୍ଠରେ ପ୍ରବେଶିଲେ ତହୁଁ ଯଦୁସାଇଁ
ଦୂରରେ ଥାଇ ଦେଖିଲେ ଗୋପାଳଙ୍କ ପୁଏ
ଉଦ୍ଧବ ସଙ୍ଗତେ ଆସୁଛନ୍ତି ଦେବରାଯ୍ୟେ ।
ମୋହନମୂରତି ରୂପ ତାହାଙ୍କର ଦେଖି
ଗୋପାଳପୋଏ ଧାଇଁଲେ ଗୋଗୋଷ୍ଠ ଉପେକ୍ଷି
ଖଣ୍ଡେପୂର କରିଣ ବେଢ଼ିଲେ ଶ୍ରୀକୃଷ୍ଣଙ୍କୁ
ଅନାଥ କରିଣ ଗଲ ନନ୍ଦ ଯଶୋଦାଙ୍କୁ ।
ଆମ୍ଭମାନଙ୍କୁ ତୁମ୍ଭେ ଯେ ଡ଼ାକେ ମୂରୁଛିଲ
ଧନୁଯାତ୍ରା ଦେଖିଯାଇ ବିଦର୍ଭରେ ରହିଲ ।
ଆମ୍ଭର ଭାଗ୍ୟକୁ ଦୁଷ୍ଟ କଂସ ନାଶଗଲା
ପାପିଷ୍ଠ ଚଣ୍ଡାଳ ଆମ୍ଭ ସଙ୍ଗ ଛଡ଼ାଇଲା ।
ରାଜପୂଜା ପାଇଣ ଯେ ତହିଁ ଭଗବାନ
ରହିଲ ଆମ୍ଭଙ୍କୁ ଏଡ଼େ କରି ହୀନମାନ ।
ନନ୍ଦ ଯଶୋଦା ବିକଳ କହୁଁ ନ ସରଇ
ପିତାମାତାଙ୍କୁ ମୂରୁଛି ରହିଲ କିପାଇଁ ।
ବୃନ୍ଦାବନେ ବଂଶୀଧ୍ୱନି ଅପୂର୍ବ ହୁଅଇ
ତହୁଁ ସୁଦାମା ବୋଇଲା ଶୁଣ ହେ ମାଧୋଇ
ଉଦ୍ଧବ ତ ଆସିଛନ୍ତି ଆମ୍ଭର ସଙ୍ଗତେ
ଅକ୍ରୂରକୁ ନ ଆଣିଲେ କିପାଁ । କହ ଏଥେ ।
ଆମ୍ଭର ବଇରୀ ସିନା ଅଟେ ସେ ଅକ୍ରୂର
ଦେଖିଲେ ଘେନନ୍ତୁ ନିଶ୍ଚେ ପରାଣ ତାହାର ।

ଶ୍ରୀକୃଷ୍ଣ ବୋଇଲେ ଶୁଣ ଗୋପାଳଙ୍କ ପୁଅ
ଅନ୍ତ ରଥରେ ତୁମ୍ଭର କିପାଁ । ଏଡ଼େ କୋହ ।
ଆମ୍ଭ ସଙ୍ଗରେ ଅକ୍ରୂର ଆସିଣ ଅଛଇ
କଦମ୍ବ ମୂଳରେ ଅଛି ମୁହଁ ଲୁଚ୍ଚ ଦେଇ ।
ଶୁଣି ସେମାନେ କଦମ୍ବ ମୂଳକୁ ଧାଇଁଲେ
ଧାଇଁ ଯାଇ ତାଙ୍କୁ ଓଗାଳନ୍ତି ଗୋପୀନାଥେ ।
ତହୁଁ ମାଧବ ବୋଲନ୍ତି ଶୁଣ ବାଳବନ୍ଧୁ
ଏନିକ କଲାକୃତକର୍ମ କେ ପାରିବ ଲେଖି ।
କଂସରାଜା ଆମ୍ଭର ଯେ ଅଟଇ ମଉଳା
ଧନୁଯାତ୍ରା ଦେଖାଇବ ବୋଲି ଆଜ୍ଞା ଦେଲା ।
ତୁମ୍ଭଠାରେ ସେହି ଦୁଷ୍ଟପଣ ଆଚରିଲା
ଆମ୍ଭଙ୍କ ମାରିବାକୁ ଅନେକ କୂଟ କଲା ।
ହାତୀଦାନ୍ତେ ଆମ୍ଭଙ୍କୁ ଯେ ମରାଇଲା ନେଇ
ହାତୀ ମାହୁନ୍ତକୁ ମାରି ଗଲୁ ବେଗ ହୋଇ ।
ରଙ୍ଗସଭା ମଧ୍ୟରେ ହୋଇଲୁ ପରବେଶ
ମାଲମାନଙ୍କୁ ଯୁଦ୍ଧରେ ଆମ୍ଭେ କଲୁ ନାଶ ।
ତହୁଁ ଯାଇ କଂସ ସଭାତଳରେ ମିଳିଲୁ
ବାଳ ଧରିଣ ତାହାକୁ ତଳେ କଚାଡ଼ିଲୁ ।
ଆମ୍ଭର ହାତରେ କଂସ ହୋଇଲା ନିଧନ
ପାପବୁଦ୍ଧି ଯୋଗେ ଗଲା ଯମର ଭୁବନ ।
ଉଗ୍ରସେନଙ୍କୁ ନୃପତିପଣେ ବସାଇଲୁ
ଗଉରବ ପାଇ ଆମ୍ଭେ ସେଠାରେ ରହିଲୁ ।
କଂସର ଶ୍ୱଶୁର ଅଟେ ଜରାସନ୍ଧ ରାଣ
ଜୁଆଁଇର ଛଳେ କଲା ଆମ୍ଭ ସଙ୍ଗେ ରଣ ।
ତା ଭୟରେ ମଥୁରାରେ ରହି ନ ପାରିଲୁ
କୁଶଦ୍ୱାରକା ପୁରରେ ଯାଇଣ ରହିଲୁ ।
ଏହି ପ୍ରକାରେ ଝଗଡ଼ା ହୋଇଲା ଅପାର
କେବେହେଁ ତ ଆସି ନ ପାରିଲୁ ଗୋପପୁର ।
ଏତେକାଳରେ ସମସ୍ତ ମିଳିଲୁକ ମୋତେ
କେହି ମନେ ଅନ୍ତର ନ କର କଦାଚିତେ ।
ମାୟାଧର ଗୋପାଳଙ୍କ ମନକୁ ମୋହିଲେ
କଦମ୍ବର ତଳକୁ ଆପଣେ ବିଜେ କଲେ ।
ଗୋପାଳଙ୍କ ପୁଅମାନେ କୃଷ୍ଣ ପଛେ ଥିଲେ
ଅକ୍ରୂର ମୁଖକୁ ଚାହିଁ ସମସ୍ତେ ହସିଲେ ।
ତୁମ୍ଭେ ତ କଂସରାଜାର ଦୂତ ହୋଇଥିଲୁ
କପଟରେ ଶ୍ରୀକୃଷ୍ଣଙ୍କୁ ଏଥୁ ଘେନିଗଲୁ ।

ଏବେ ତୁମ୍ଭ ଆସିଅଛୁ ଶ୍ରୀକୃଷ୍ଣ ସଙ୍ଗରେ
ନୋହିଲେ ତୋ ମୁଣ୍ଡ ପିଟିଦ୍ୟନ୍ତି ଏ ବାଡ଼ିରେ
ଭୟ କରିଣ ଅକ୍ରୂର ନ ଦେଲା ଉତ୍ତର
ମଥା ପୋତିଣ ରହିଲା କଦମ୍ବ ମୂଳର ।
ଏଥୁଅନ୍ତେ ଶୁଣ ପରୀକ୍ଷିତ ନୃପବର
କୃଷ୍ଣଙ୍କ ଅଙ୍ଗ ଚରିତ ସାବଧାନେ ଶୁଣ ।
ଗୋପାଳ ପୋଏକ ଗୋଷ୍ଠୁ ବେଗେଗଲା ଧାଇଁ
ନନ୍ଦର ସିଂହଦୁଆରେ ମିଳିଲାକ ଯାଇ ।
ଯଶୋଦାଦେବୀଙ୍କି ଚାହିଁ ବୋଲନ୍ତି ବଚନ
ସାବଧାନେ ଶୁଣ ମାତା ଅପୂର୍ବ ବିଧାନ ।
ଶ୍ରୀକୃଷ୍ଣ ଆସିଅଛନ୍ତି ଦେଖମି ଗୋ ଯାଇ
ଗୋପଠାରେ ଦେଖି ତାଙ୍କୁ ଅଇଲି ମୁଁ ଧାଇଁ
ମୋହନ ମୂରତି ସେ ଧରିଣ ଦେବରାଜ
ଉଦ୍ଧବ ଅକ୍ରୂର ଘେନ ଆସି କଲେ ବିଜେ ।
ଗୋପାଳ ପୁଅ ମୁଖରୁ ଏସନକ ଶୁଣି
ମୃତକ ପ୍ରାପ୍ତ ହେଲା କି ବରଷାର ପାଣି ।
କୋଟି ଯୁଗେ ଅନ୍ଧ କିବା ପାଏ ଚକ୍ଷୁଦାନ
ଦରିଦ୍ରଲୋକ କି ଅବା ପ୍ରାପ୍ତ ହେଲା ଧନ ।
ରଙ୍କ କିବା ପ୍ରାପ୍ତ ହେଲା ଶାଳଧାନ୍ୟ ଭାତ
ଅପୁତ୍ରିକ ପୁତ୍ର କିବା ହୋଇଲା ପ୍ରାପତ ।
ତେସନ ପରାୟେ ହୋଇଲେକ ନନ୍ଦରାଣୀ
ସତେ ଆସିଅଛନ୍ତି କି ମୋର ବେଣୁପାଣି ।
ଲବଣୀ ମେଞ୍ଚେ ଯଶୋଦା ତାର ହସ୍ତେଦେଲେ
କହ କହ ନିଶ୍ଚୟ କି ଶ୍ରୀକୃଷ୍ଣ ଅଇଲେ ।
ବାଳକ ବୋଇଲା ମୁହିଁ ଦେଖିଲି ଏକ୍ଷଣ
ତୁମ୍ଭ ପାଶେ କହିବାକୁ ଅଇଲି ବହନ ।
ଯଶୋଦା ବୋଇଲେ ଚାଲ ନନ୍ଦ ପାଶେ ଯିବା
ଜଣାଇ ତାହାଙ୍କ ପାଶେ ସତ୍ୱର ଚଳିବା ।
ଏତେ କହି ବାଳକର ହସ୍ତ ଧରି ନେଲେ
ନନ୍ଦରାଜାର ଗୃହମୁରେ ବେଗେ ପ୍ରବେଶିଲେ ।
ଦେଖି ସେ ବୋଇଲେ ସ୍ତ୍ରୀକୁ ଆଣିଛ କିପାଇଁ
ଆମ୍ଭେ ଆଜ କହ୍ନାଇକ ପାଇବା ବା କାହିଁ ।
ପରପୁତ୍ରେ ଦୁଃଖ ଦେବା ନୁହଇ ଉଚିତ
ଆମ୍ଭ ପୁତ୍ର ହରି ନେଇ ନ ଦେଲା ବିଧାତ ।
ଯଶୋଦା ବୋଇଲେ ପୁଚ୍ଛ ଏହି କୁମରକୁ
ଶ୍ରୀକୃଷ୍ଣ ଅଇଲେ ଏହି ଗୋପନଗରକୁ ।

ଶ୍ରୀକୃଷ୍ଣ ଅଇଲେ ବୋଲି ଏ କହୁଅଛଇ
ଚେଣୁକରି ଏହାକୁ ମୁଁ ଘେନ ଅଇଲଇଁ ।
ନନ୍ଦ ପଚ୍ଛନ୍ତି ଶୁଣ ବାଳୁତ କୁମର
ନିଶ୍ଚେ ଦେଖିଅଛୁ କି ତୁ କୃଷ୍ଣ ଆସିବାର ।
କୁମର ବୋଲଇ ଗୋଷ୍ଠମଧ୍ୟେ ଆସି ଥିଲେ
ଗୋପାଳପୁଅଙ୍କ ସଙ୍ଗେ କଥାଭାଷା ହେଲେ ।
ଧାଇଁ ଅଇଲି ତୁମ୍ଭଙ୍କୁ ବାର୍ତ୍ତା ଦେବାପାଇଁ
ଉଦ୍ଧବ ଅକ୍ରୂର ଛନ୍ତି ତାଙ୍କ ସଙ୍ଗତେହିଁ ।
ଶ୍ରୀକୃଷ୍ଣଙ୍କ ମୁଖଗୋଟି ଯାଇଛି ମଉଳି
ଗୋଗୋଷ୍ଠରେ ବସିଛନ୍ତି କୃଷ୍ଣ ବନମାଳୀ ।
ନନ୍ଦ ବୋଇଲେ ମୁଁ ନିସ୍ତରିଲି ନିସ୍ତରିଲି
ସତେ କି ଦେଖିବି ମୁହିଁ କୃଷ୍ଣ ହଳଧାରୀ ।
ଗୋପାଳ ପୁଅକୁ ନନ୍ଦ ଆଶ୍ୱାସନା କଲେ
ଦୁଧ ସର ଲବଣୀ ତାହାକୁ ଭୁଞ୍ଜାଇଲେ ।
ବାଳକର ହସ୍ତ ଧରି ହୋଇଲେ ବାହାର
ଗୋଗୋଷ୍ଠକୁ ନନ୍ଦ ଯାନ୍ତି ହୋଇ ତରତର ।
କଦମ୍ବ ମୂଳକୁ ନନ୍ଦ ଗଲେ ବେଗ ହୋଇ
ଧାଇଁ ଯାଇଣ ବୋଇଲେ କାହିଁ ମୋ କହ୍ନାଇ
ଯାଇଣ କଦମ୍ବତଳେ ସତ୍ୱରେ ମିଳିଲେ
ଏକଦୃଷ୍ଟି କରି କୃଷ୍ଣ ମୁଖକୁ ଚାହିଁଲେ ।
କୋଟିଏ ଜନ୍ମର ପାପ ହୋଇଲା ଦହନ
ନୟନରୁ ଅଶ୍ରୁଜଳ ବହେ ଘନ ଘନ ।
ନନ୍ଦର ବଦନ ଯହୁଁ ଚାହିଁଲେ ଶ୍ରୀହରି
ନମସ୍କାର କରି ଉଭା ହେଲେ କରଯୋଡ଼ି ।
ନନ୍ଦ ବୋଲେ ଦେଖିଲି ମୁଁ ଆଜ ପଦ୍ମମୁଖ
ହେ କେଶବ ମୋହର ଏ ଅବସ୍ଥାକୁ ଦେଖ ।
ସାତଶ ପଞ୍ଚାଶ ବର୍ଷେ ତୋତେ ପାଇଥିଲି
କର୍ମର ଅବଳେ ପୁଣି ହରାଇ ବସିଲି
କେତେଦିନ ହେଲା ମୋତେ ଗୋପେଗଲୁ ଛାଡ଼ି
ମୋର ନୟନରୁ ଦଣ୍ଡେ ନ ଶୁଖଇ ବାରି ।
ଯଶୋଦା ତୋ ପାଇଁ ସବୁବେଳେ କାନ୍ଦୁଛଇ
ଘାଉଆ ହରିଣୀ ଯେହ୍ନେ ବନେ ପଡ଼ିଥାଇ ।
ଯେଉଁଦିନୁ ତୁମ୍ଭେ ଗଲ କୃଷ୍ଣ ହଳଧାରୀ
ଅନ୍ଧାର ଦିଶିଲା ସବୁ ଗୋପପୁର ଶିରୀ ।
ହଇବ ଲେଖନକୁ ବା କେ କରିବ ଆନ
ଏବେ କର୍ମକୁ ମିଳିଲୁ ଆରେ ଜନାର୍ଦ୍ଦନ ।

ନନ୍ଦର ବିକଳ ଦେଖି ପ୍ରଭୁ ନାରାୟଣ
ମନେ ମନେ ବିଚାରନ୍ତି ଶ୍ରୀମଧୁସୂଦନ ।
ପିତାଙ୍କର କୋଳେ ବସିଲେକ ଦେବ ଯାଇ
ଶ୍ରଦ୍ଧାକରି ନନ୍ଦ କୋଳେ କୃଷ୍ଣଙ୍କୁ ବସାଇ ।
ବୋଲେ ଚାଲ ନଗରକୁ ଯିବା ଚକ୍ରଧର
କୃଷ୍ଣଙ୍କୁ ନ ଦେଖି ସର୍ବେ ହୁଅନ୍ତି ବିକଳ ।
ପିତାଙ୍କର କୋଳରୁ ସେ ଓହ୍ଲାଇଣ ବେଗେ
ଉଦ୍ଧବ ଅକ୍ରୂରଙ୍କୁ ଯେ ବୁଝିଲେ ସରାଗେ ।
ନଗରକୁ ଯିବା ଚାଲ ଏଥେ କିସ କାର୍ଯ୍ୟ
ଦାରୁକକୁ ଆଜ୍ଞାଦେଲେ ପ୍ରଭୁ ଦେବରାଜ ।
ଆଜ୍ଞା ପ୍ରମାଣେ ଦାରୁକ ସଜାଇଲେ ରଥ
ପିତାଙ୍କୁ ଘେନି ବିଜୟ କଲେ ଗୋପୀନାଥ ।
ସାବଧାନେ ଶୁଣ ପରୀକ୍ଷିତ ନୃପବର
ରଥରେ ଆରୋହି ବିଜେକଲେ ଦାମୋଦର
ଶୁଣ ଆହେ ଦିବ୍ୟ ରସ ଏଥି ଉତ୍ତାରେଣ
ଗୋପରେ ଶୁଭିଲା ବିଜେ କଲେ ନାରାୟଣ ।
ଯେ ଯାହା କାର୍ଯ୍ୟରେ ସର୍ବ ଗୋପୀମାନେଥିଲେ
ଶ୍ରୀକୃଷ୍ଣ ଅଇଲେ ବୋଲି ବାରତା ପାଇଲେ ।
ଏକ ସଖିଙ୍କ ଆଗରେ ଆରେକ କହନ୍ତି
ନିଶ୍ଚେ ଆମ୍ଭେମାନେ ଆଜ ଦେଖିବା ଶ୍ରୀପତି ।
ଏସନକ କଥାବାର୍ତ୍ତା ହୋଇ ସର୍ବ ଗୋଈ
ଗୋବିନ୍ଦ ଗୋବିନ୍ଦ ବୋଲି ଅଇଲେକ ଧାଇଁ ।
ବସ୍ତ୍ର ଅସମ୍ଭାଳ ଆଉ ବାଳ ନ ବାନ୍ଧିଣ
ଉନମତ୍ତ ହୋଇକରି ଧାମନ୍ତି ବହନ ।
ଶତେସ୍ୱର କରି ଗୋପୀ ବଡ଼ିଲେକ ଯାଇ
ହା କୃଷ୍ଣ ବୋଲି ରୋଦନ କଲେ ସର୍ବେ ତହିଁ
ଏ କଳା ବଦନଟିଗୋଟି ପରିମୁଣ୍ଡା ଯାଉ
ଆଜିଯାଏ ଲୁଚିକରି ରହିଥିଲୁ କାହିଁ ।
ତୋହର ବିହୀନେ ଆମ୍ଭେ ଅନାଥା ହୋଇଲୁ
କର୍ମ ଶୁଭଯୋଗେ ଆଜ ଶ୍ରୀମୁଖ ଦେଖିଲୁଁ ।
ପିଣ୍ଡମାତ୍ର ରଖି ପ୍ରାଣ ନେଇଥିଲ ହରି
ଆମ୍ଭର କଷ୍ଟ ନୟନେ ଦେଖ ଦଇତ୍ୟାରି
କେତେ କେତେ ଅରିଷ୍ଟ ଏ ଗୋପରେ ପଡ଼ିଲା
ତୋହର ଅଦୃଷ୍ଟ କପା ଆମ୍ଭଙ୍କୁ ହୋଇଲା ।
କେବଣ ଗୋପୀ କୃଷ୍ଣର ଅଧର ଧରଇ
କେବଣ ଗୋପୀ ଶ୍ରୀମୁଖ ଚୁମ୍ବନ କରଇ ।
କେବଣ ଗୋପୀ ବସ୍ତ୍ରରେ ଶ୍ରୀମୁଖ ପୋଛଇ
କେବଣ ଗୋପୀ ବୋଇଲେ ପରିମୁଣ୍ଡା ଯାଇ ।
କେବଣ ଗୋପୀ ଧରଇ ଶ୍ରୀକୃଷ୍ଣର ଭୁଜ
କେବଣ ଗୋପୀ କୋଳରେ ଧରି ଦେବରାଜ
ଲାଜ ସଙ୍କୋଚ ସମସ୍ତ ଗୋପୀଏ ଛାଡ଼ିଲେ
ପଞ୍ଚପ୍ରାଣ ନେଇ କୃଷ୍ଣପାଦେ ଖଞ୍ଜାଇଲେ ।
ଦେଖିଲେ ଯଶୋଦା ପଛେ ଆସୁଛନ୍ତି ଧାଇଁ
ଚନ୍ଦନ କୁଙ୍କୁମ ସ୍ୱର୍ଣ୍ଣ ଭାଣ୍ଡରେ ପୂରାଇ ।
ଖରାରେ ତ ମୋ ପୁଅର ମୁଖ ଶୁଖିଥିବ
ଚନ୍ଦନ କର୍ପୂର ଲେପୁଁ ଶୀତଳ ହୋଇବ ।
ସ୍ୱର୍ଣ୍ଣପାତ୍ରରେ ଲବଣୀଖଣ୍ଡ ମିଶ୍ରି ଧରି
ଧାଇଁଛନ୍ତି ବେଗୁ ବେଗ ନନ୍ଦଙ୍କର ନାରୀ ।
ଏମନ୍ତେଣ ଖଣ୍ଡେଦୂର ଗଲେ ଯଶୋମତୀ
ଆସିଣ ବେଢ଼ିଲେ ଗୋପପୁରର ଯୁବତୀ ।
ହା ହା କୃଷ୍ଣ ବୋଲି ରଥ ସନ୍ନିଧେ ମିଳିଲେ
ଯଶୋଦାଙ୍କର ମୁଖ ଗୋବିନ୍ଦ ବୁଝିଲେ ।
ରଥରୁ ତଳକୁ ବେଗେ ଓହ୍ଲାଇ ଅଇଲେ
ମାତାଙ୍କ ଚରଣ ତଳେ ବେଗେଣ ମିଳିଲେ ।
ଉଠ ଉଠ ବୋଲି କହି ବେଗେ ଉଠାଇଲେ
ଗୁହ୍ୟେଥିଲ ବାବୁ ତୋତେ ଆସ ଏତେକାଳେ
ଲୁଚିଇଣ ରଖିଥିଲୁ ବଦନ ତୋହର
ଏତେକାଳେ ଦେଖିଲି ମୁଁ ଶ୍ରୀରଙ୍ଗାଅଧର ।
ଏତେ ବୋଲି ତାହାଙ୍କର ଶ୍ରୀହସ୍ତ ଧଇଲେ
କୋଳାଗ୍ରତ କରି ତାଙ୍କ ମୁଖେ ଚୁମ୍ବ ଦେଲେ ।
ଯେତେକ ସର ଲବଣୀ ହସ୍ତେ ଧରିଥିଲେ
ସେହି ସବୁ ନେଇ ତାହାଙ୍କର ମୁଖେ ଦେଲେ
ଦନ୍ତ ଅଧରେ ମେଞ୍ଚିଏ ମେଞ୍ଚିଏ ଖୁଆନ୍ତି
ସୁଖେ ମାୟାଧରି ତାଙ୍କୁ ମଣୋହି କରନ୍ତି ।
ଅକ୍ରୂରଙ୍କୁ ବୁଝିକରି କହୁଛନ୍ତି ମାଏ
କଂସବୋଲେ ଘେନଗଲୁ ମୋହର ତନୟେ
ପୁତ୍ରର ବିହୀନେ ମୁହିଁ ହୋଇଲି ଅନାଥ
ଅନ୍ଧକାରମୟ ମୋତେ ଦିଶଇ ଜଗତ ।
ଚନ୍ଦ୍ର ପକ୍ଷ ରହେ ମୋତେ ଅନ୍ଧାର ଦିଶଇ
ଦିନରେ ସୂର୍ଯ୍ୟ ଥିଲେହେଁ ମୋତେ ନ ଦିଶଇ
ଅନ୍ଧ ଅନ୍ଧୁଣୀ ପରାୟେ ଆଉଁ ବେନି ପ୍ରାଣୀ
ଅନୁକ୍ଷଣେ ନୟନରୁ ବହେ ଅଶ୍ରୁପାଣି ।

ତୁମ୍ଭେ ତ ଅଇଲ ବାବୁ ଭ୍ରମ ମୋର କାହିଁ
କପାଇଁ ଛାଡ଼ି ଅଇଲ କହରେ କହ୍ନାଇ ।
ଗୋବିନ୍ଦ କହନ୍ତି ଚହୁଁ ମାତାଙ୍କ ବଚନେ
ପଛରେ ଆସୁଅଛନ୍ତି ଦେବ ବଳରାମେ ।
ରଙ୍ଗ କୁତୂହଳେ ରଥବର ଚଳାଇ
ନନ୍ଦର ସିଂହଦୁଆରେ ଉଭଟେ ମିଳଇ ।
ଜନନୀଙ୍କର ପାଖରେ କୃଷ୍ଣ ବସିଥିଲେ
ନବର ଭିତରେ ଯାଇଁ ଦୁହେଁ ଉହ୍ଲାଇଲେ ।
ଚନ୍ଦ୍ରଶାଳାପୁରେ ମିଳିଲେକ ଦେବ ଯାଇ
ରତ୍ନ ପଲଙ୍କରେ ମାତା ବସାଇଲେ ନେଇ ।
କେବଣ ଗୋପୀ ମୁଖରେ ଚୁମ୍ବନ ଦିଅନ୍ତି
ଶ୍ରୀକୃଷ୍ଣ ମୁଖକୁ ଚାହିଁ ଅଙ୍ଗ ପୁଲକାନ୍ତି ।
ମଦନେ ଆରତ ହେଉଁ ହୋଇ ଉଯ ଭୋଳ
କେତେହେଁ ସେ ନ ଛାଡ଼ନ୍ତି ମଦନ ଗୋପାଳ
ଚନ୍ଦନ କର୍ପୂର ସ୍ୱର୍ଣ୍ଣପାତ୍ରେ ଥିଲେ ନେଇ
କୃଷ୍ଣ ଅଙ୍ଗରେ ଲେପନ୍ତି ଆନନ୍ଦିତ ହୋଇ ।
ଗୋପୀଏ ଆନନ୍ଦମନେ ଚାମର ଢାଳନ୍ତି
କେଉଁ ଗୋପୀ ଆନନ୍ଦରେ ଦେହ ଆଉଁଷନ୍ତି
କେବଣ ଗୋପିକା ମୁଖେ ତାମ୍ବୁଳ ଭୁଞ୍ଜାନ୍ତି
କେବଣ ଗୋପିକା ଆସି ପାଦ ମଞ୍ଜାଳନ୍ତି ।
ଉଦ୍ଧବ ଅର୍ଥରେ ନନ୍ଦ ଗଉରବ କଲେ
ମାନ୍ୟ କରିଣ ଆସନେ ନେଇ ବସାଇଲେ ।
ସ୍ନାନ ନିତ୍ୟକର୍ମମାନ ସେମାନେ ସାରିଲେ
ଷଡ଼ରସ ଦ୍ରବ୍ୟମାନ ମଣୋହି କରିଲେ ।
ଅମୃତମଣୋହି କୃଷ୍ଣ କରନ୍ତି ଆନନ୍ଦେ
ବେଢ଼ି ବସିଛନ୍ତି ତହିଁ ସର୍ବ ଗୋପୀବୃନ୍ଦେ ।
ସଙ୍ଗରେ ଗୋପାଳପୁଏ ମିଳିଲେକ ଆସି
ବୋଲନ୍ତି ଭୋଜନ କର ଆମ୍ଭେ ବ୍ରଜବାସୀ ।
କେବଣ ଗୋପାଳପୁଅ ବୋଲନ୍ତି କହ୍ନାଇ
ଆମ୍ଭର ସଙ୍ଗେ ବିହରୁଥିଲ ଭବଗ୍ରାହୀ ।
ସେ ବୃନ୍ଦାବନ ଆମ୍ଭଙ୍କୁ ଅପୂର୍ବ ହୋଇଲା
ଦିନେ ଦେଖିବାକୁ ତୁମ୍ଭ ଚିତ୍ତ ନ ବଳିଲା ।
ଛାଡ଼ିଗଲ ଦିନୁ ଖେଳ କୌତୁକ ନ ଜାଣୁ
କୃଷ୍ଣ କୃଷ୍ଣ ବୋଲି ଭଜୁଥାଉଁ ଦିନୁ ଦିନୁ
ଗୋପାଳପୁଅଙ୍କ ମୁଖୁ ଏସନକ ଶୁଣି
ମାୟାରେ ମୋହିଲେ ତାଙ୍କୁ ଦେବ ଚକ୍ରପାଣି

ଯେଉଁରୂପେ କୃଷ୍ଣ ସଙ୍ଗେ ପୂର୍ବେ ଖେଳୁଥିଲେ
ତେସନକ ପରକାରେ ସମସ୍ତେ ମଣିଲେ ।
ପୁଅଙ୍କର ଆନନ୍ଦ ସେ କହି ନ ସରଇ
ଗୋପୀମାନଙ୍କର ଅଙ୍ଗ ପୁଲକ ଉଠଇ ।
ନନ୍ଦ ଯଶୋଦା ଆନନ୍ଦ କହିଲେ ନ ସରେ
ହଜିଲା ପଦାର୍ଥ କିବା ପ୍ରାପ୍ତ ହେଲା କରେ ।
ତେସନ ପ୍ରକାରେ ଗୋପୀ ଗୋପାଳ ସଭିଏଁ
ଆନନ୍ଦରେ କୃଷ୍ଣଙ୍କୁ ନ ଛାଡ଼ନ୍ତି କ୍ଷଣେହେଁ ।
ପୂର୍ବେ କୃଷ୍ଣ ସଙ୍ଗେ ହୋଇଥିଲେକ ଯେସନ
ଗୋପପୁରେ ସେ ରୂପରେ ଧ୍ୱନି ବାଦ୍ୟମାନ
ଏମନ୍ତେ ପାଞ୍ଚ ଦିବସ ରହି ନାରାୟଣ
ଗୋପୀ ଗୋପାଳ ଛାଡ଼ନ୍ତି ନାହିଁ ଏକକ୍ଷଣ ।
ଏକଦିନକରେ ମିଳି ସର୍ବ ଗୋପାଙ୍ଗୁଣୀ
ଯମୁନା ସ୍ନାନକୁ ଯାଇଥିଲେକ ତରୁଣୀ ।
ଦୈବଯୋଗେ ସେହିଦିନ ରାଧିକା ସୁନ୍ଦରୀ
ଯମୁନା ଯାଇଅଛନ୍ତି ସେହି ସ୍ନାନ କରି ।
ଯମୁନା ତଟେ ହୋଇଲା ତାଙ୍କ ସଙ୍ଗେ ଭେଟ
ବୋଲନ୍ତି ତୁମ୍ଭର କପି ବହୁତ ଉଚାଟ ।
ଶ୍ରୀକୃଷ୍ଣ ଗଲା ଦିନରୁ ନ ଦେଖୁ ଏଠାରେ
ଦହି ବିକିବାକୁ ଯାଉ କେବଣ ବାଟରେ ।
ଏବେ ତୁମ୍ଭମାନଙ୍କର ହର୍ଷମୁଖ ଦିଶେ
ଶତଦଳ ପଦ୍ମ ପ୍ରାୟେ ବଦନ ପ୍ରକାଶେ ।
ହସି ହସି ଗୋପୀମାନେ ବୋଲନ୍ତି ବଚନ
ଉଦ୍ଧବଙ୍କୁ ଘେନ ଆସିଛନ୍ତି ନନ୍ଦନାନ ।
ପରିହାସ ମଣି ବୃଷଭାନୁର ନନ୍ଦନୀ
ଆପଣାର ମନେ ମନେ ଭାଳି ପୁଣି ପୁଣି ।
ବୋଲନ୍ତି ଯେବେ ଅଇଲେ ଜଗତ ଈଶ୍ୱର
କେଭେ ପ୍ରତେ ହେଉନାହିଁ ମନରେ ମୋହର
ଭକତବତ୍ସଳ ଯେବେ ଗୋପକୁ ଅଇଲା
ଜାଣିଲିଇଁ ନିଶ୍ଚେ ଆସି ଯୁଗ ଶେଷ ହେଲା ।
ନିଜ ଧାମକୁ ଚଳିବେ ଦେବ ନାରାୟଣ
ଦେଖିବାକୁ ଆସିଅଛନ୍ତି ଗୋପାଙ୍ଗୁଣୀମାନ ।
ଦ୍ୱାରକାପୁରେ ଏହାଙ୍କୁ ରଖିବେ ସେ ନେଇ
ଯଦୁବଂଶ ନାଶ କରାଇବେ ଭବଗ୍ରାହୀ ।
ପୂର୍ବର କଥା ସମସ୍ତ ହୃଦରେ ସ୍ମରିଲେ
ଯାହା ବିସ୍ମରିଲେ ତାହା ହୃଦରେ ରଖିଲେ ।

ରାଧିକା ବୋଲନ୍ତି ଶୁଣ ଆଗୋ ଗୋପାଙ୍ଗଣୀ
ସତେହେଁ କି ଗୋପେ ଆସିଛନ୍ତି କମ୍ବୁପାଣି ।
ଗୋପୀ ବୋଇଲେ ଅଇଲେ ପାଞ୍ଚଦିନ ହେଲା
ତୁମ୍ଭଙ୍କୁ ଏ କଥା କେହ୍ନେ ଜଣା ନ ପଡ଼ିଲା ।
ଏହା ଶୁଣି ରାଧିକା ବଦନେ ଚଳିଗଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ
ଦୂତିକା ସଖୀକି ରାଧା ରାଇଲେ ଏକାନ୍ତେ
ବୋଇଲେ ଗୋପକୁ ଆସିଛନ୍ତି ଗୋପୀନାଥେ
ଗୋପୀକାମାନେ କହିଲେ ମୋତେ ଏହିକ୍ଷଣି
ଚାଲ ଚାଲ ସଖି ଦେଖିବା ଗୋ ଚକ୍ରପାଣି ।
ଦୂତିକା ବୋଇଲେ ସ୍ୱପ୍ନ କିପାଁ କହୁ ମିଛ
କେବେ ଗୋପକୁ ତ ନ ଆସନ୍ତି ନନ୍ଦବତ୍ସ ।
ରାଧିକା ବୋଇଲେ କେବେ ଏ ମିଥ୍ୟା ନୁହଇ
ଯମୁନାଘାଟେ କହିଲେ ମୋତେ ସର୍ବ ଗୋଈ
ନନ୍ଦର ମନ୍ଦିରେ ବିଜେ କରିଛନ୍ତି ହରି
କଷ୍ଟ ପାସୋରନ୍ତି ତାଙ୍କୁ ଦେଖି ଗୋପନାରୀ
ଏମନ୍ତେ ହୋଇଲା ଷଡ଼ ଦିବସର କଥା
ଏକମନେ ଶୁଣ ପରୀକ୍ଷିତ ମହାରଥୀ
ଦୂତିକାକୁ ଘେନି ସଙ୍ଗେ ରାଧିକା ସୁନ୍ଦରୀ
ବେଗେଣ ଯାଇ ମିଳିଲେ ନନ୍ଦରାଜା ପୁରୀ ।
ଦେଖିଲେ ସିଂହାସନରେ ବିଜେ ନାରାୟଣ
ତାଙ୍କ ଯୋଗେ ଶୋଭା ପାଉଅଛି ତ୍ରିଭୁବନ ।
ମନେ ମନେ କୋଟି କୋଟି ପ୍ରଣାମ ସେ କଲା
କରପଦ୍ମ ଯୋଡ଼ିଣ ସମ୍ମୁଖରେ ଉଭା ହେଲା ।
ଶ୍ରୀକୃଷ୍ଣଙ୍କୁ ଚାହିଁ ରାଧା ଭାଷେ ମୃଦୁବାଣୀ
ଏସନକ ଭଣ୍ଡ ତୁମ୍ଭେ ଅଟ ଚକ୍ରପାଣି ।
ଆମ୍ଭଙ୍କୁ ଛାଡ଼ି ମଥୁରା ଗଲ ଦାମୋଦର
ଲୁଚାଇଥିଲ ତୋହର ଶ୍ରୀବିମ୍ବ ଅଧର ।
ଏତେକାଳରେ ସୁଦଶା ହେଲା ଆମ୍ଭଠାରେ
ତୁମ୍ଭଙ୍କୁ ଦେଖିଲୁ ଆମ୍ଭେ ଚର୍ମନୟନରେ ।
ଏତେ ନିରାଶ କରିବା ନୁହଇ ଉଚିତ
ନାମ ତୁମ୍ଭ ବୋଲାଇ ତ ଅଛୁ ଗୋପୀନାଥ ।
କମଠ ଡିମ୍ବ ପାଡ଼ିଲା ପ୍ରାୟ ତୁମ୍ଭ କର
ଛାଡ଼ିଣ ମଥୁରାପୁରେ ରହିଲ ଶ୍ରୀହରି ।
ଏତେ କହିଣ ମଉନ ହେଲେ ଠାକୁରାଣୀ
କୋମଳ ବଚନେ ବଦନ୍ତି ଯଦୁମଣି ।
କଂସ ଘେନାଇ ଥିଲାକୁ ଆମ୍ଭେ ଯିବା ଗଲୁ
ଆମ୍ଭର ଇଚ୍ଛା ଏ ତ ତୁମ୍ଭଙ୍କୁ ନ ଛାଡ଼ିଲୁ ।
ଆମ୍ଭଙ୍କୁ ମାରିବା ପାଇଁ ଘେନାଇ ସେ ଗଲା
ଦେଖିବା ମାତ୍ରକେ ସେହୁ ପ୍ରାଣତ୍ୟାଗ କଲା ।
ସମସ୍ତଙ୍କର ଭାଗ୍ୟକୁ କଂସ ଗଲା କ୍ଷୟେ
ଏହିଯୋଗେ ଗତ ହେଲା ଏତେଦିନ ଯାଏ ।
ରହି ନ ପାରିଲ ଜରାଭୟେ ମଥୁରାରେ
ପଳାଇ ଯାଇ ପଶିଲୁ ସମୁଦ୍ର ଭିତରେ ।
ଦ୍ୱାରବତୀ ପୁରେ ଲୁଚି ନିଶ୍ଚିନ୍ତରେ ଥାଉଁ
ଜରାସନ୍ଧ ଡରେ ଆସି ନ ପାରିଲୁ ତହୁଁ ।
ଏସନକ ଛନ୍ଦୁବାଣୀ କହନ୍ତେ ମାଧୋଇ
ଶୁଣି ମନେ ହସ ହସି ଦୂତିକା ବୋଲଇ ।
ମାୟାଧର ପ୍ରଭୁ ତୁମ୍ଭେ ଜରାସନ୍ଧ ଡରେ
କହୁଛ ଲୁଚିଲୁ ଯାଇ ସମୁଦ୍ର ଭିତରେ ।
ଦୈତ୍ୟନାଶନ ତୋହର ନାମ ଦଇତ୍ୟାରି
ସମୁଦ୍ରରେ ପଶି ମାରୁ ଦୈତ୍ୟ ମହାବଳୀ ।
କାଳେ କାଳେ ତୁମ୍ଭେ ସିନା ଦୈତ୍ୟ ଭୟହର
ଦୈତ୍ୟ ବିନାଶନେ ବାରମ୍ବାର ଅବତାର ।
କପଟ କର ଆମ୍ଭଙ୍କୁ କହୁ ନାରାୟଣ
ଯୁଗ ପ୍ରଳୟ କାରଣେ କଲୁଣି ତୁ ମନ ।
ଯଦୁବଂଶ ମରାଇ ଆପଣେ ସ୍ୱର୍ଗେ ଯିବୁ
ଏଠାକୁ ଆସିଛୁ ସଙ୍ଗେ ଆମ୍ଭଙ୍କୁ ତୁ ନେବୁ
ଦ୍ୱାରକାପୁରେ ଥୋକାଏ ଦିବସ ରହିବୁ ।
କାଳାନ୍ତରେ ତୁମ୍ଭ ନିଷ୍ଟେଁ ପ୍ରଳେ କରାଇବୁ
ଆଗତ ଭବିଷ୍ୟ ଯହୁଁ ଦୂତିକା କହିଲା
ଅନ୍ତର୍ଯ୍ୟାମୀଙ୍କ ମନକୁ ସେ କଥା ରୁଚିଲା ।
ତହୁଁ ରାଧିକା ବୋଲନ୍ତି ଶୁଣ ହେ କହ୍ନାଇ
ବୃନ୍ଦାବନ ପ୍ରାୟେ ତୋର କୁଟୁମ୍ବ ବଢ଼ଇ ।
ସୁଖଭୋଗ ବହୁତ କରିଲ ମଞ୍ଚପୁରେ
ସ୍ୱର୍ଗକୁ ନ ଯାଇ କମ୍ପା ଅଛ ଅବନୀରେ ।
ଦେବସଭା ନ ଶୋଭଇ ତୁମ୍ଭେ ନ ଥିବାକୁ
ବେଗୁଁ ବେଗ ନାଶ କର ଯାଦବବଂଶକୁ ।
ରାଧିକାଙ୍କର ବଚନେ ଶ୍ରୀକୃଷ୍ଣ ହସିଲେ
ଗୁପତ କଥା ପ୍ରକାଶ ନ କର ବୋଇଲେ ।
ମୁହିଁ ନାରାୟଣ ତୁମ୍ଭେ ଅଟ ପରଂ ଲକ୍ଷ୍ମୀ
କେବେହେଁ ତୁମ୍ଭଙ୍କୁ ଆମ୍ଭେ ନ ପାରୁ ମୁଛିଛି

ଅବତାରେ ଅବତାରେ ସଙ୍ଗେ ଘେନଥାଇ
ତୁମ୍ଭଙ୍କୁ ଘେନଣ ମୁଁ ଦୈତ୍ୟ ସଂହରଇ ।
ଏବେତ ଯୁଗ ଶେଷ ଗୋ ହେଉଅଛି ସହି
ଯିବ ମୁହିଁ ନିଜସ୍ଥାନେ ନ ପାରିବ ରହି ।
ପୃଥିବୀର ମହାଭାର ଉଶ୍ୱାସ ହୋଇଲା
ମୋତେ ନେବାପାଇଁ ଦେବଦୂତ ଆସିଥିଲା ।
ନିକଟ ତ ହୋଇଲାଣି ଯିବ ସ୍ୱର୍ଗପୁର
ପୂର୍ବ ନାତି ଯେତେକ ବା ଅଛନ୍ତି ମୋହର ।
ସେମାନଙ୍କୁ ତ ସଂହାର କରାଇବ ମୁହିଁ
ଶବର ବାଣରେ ନାଶ ହେବ ମୋର ଦେହି ।
ଏହି ଗୁପତ ଚରିତ ନ ଜାଣିବେ କେହି
ଏଣୁକରି ତୁମ୍ଭଙ୍କୁ ଗୋ କହିଲି ମୁଁ ସହି ।
ଗୋପାଙ୍ଗଣୀମାନେ ଏହା କେହି ନ ଜାଣିଲେ
ନନ୍ଦ ଯଶୋଦା ଜାଣିବେ ଏହା କାହୁଁ ଭଲେ
କଥାର କୌତୁକେ ତାଙ୍କ ମନକୁ ମୋହିଲେ
ମାୟାଧର ପୁରୁଷ ତ ସବୁ ମାୟା କଲେ ।
ନନ୍ଦଙ୍କୁ ସ୍ୱହିଁଣ କୃଷ୍ଣ କହନ୍ତି ଏସନ
ଯିବୁ ଦ୍ୱାରକାପୁରକୁ କର ଅବଧାନ ।
ନନ୍ଦ ବୋଇଲେ ଆମ୍ଭଙ୍କୁ ନିଅ ତୋର ସଙ୍ଗ
ଅନାଥ କରିଣ ଆଉ ନ ଯାଅ ଶ୍ରୀରଙ୍ଗ ।
ଯଶୋଦା ବୋଇଲେ ଆମ୍ଭେ ନ ପାରୁ ମୁହୁଛୁ
ଥାଅ ବନାନ୍ତେକେତେ ଆଉ ନ ଯାଅ ଶ୍ରୀବତ୍ସ ।
ଛାଡ଼ି ଗଲେ ନିଶ୍ଚେଁ ଆମ୍ଭେ ହରାଇବୁ ପ୍ରାଣ
ଆମ୍ଭମାନଙ୍କୁ ସଙ୍ଗତେ ନିଅ ନାରାୟଣ ।
ଗୋବନ୍ଦ ବୋଇଲେ ଆମ୍ଭେ ସଙ୍ଗତରେ ନେବୁ
ଦ୍ୱାରକା ପୁରରେ ନେଇ ତୁମ୍ଭଙ୍କୁ ଥୋଇବୁ ।
ଶ୍ରୀକୃଷ୍ଣଙ୍କ ମୁଖୁଁ ଏହା ଶୁଣି ଗୋପନାରୀ
ତତକ୍ଷଣେ ବେଢ଼ି ଗଲେ ଶତେପୁର କରି ।
ବୋଲନ୍ତି ଆମ୍ଭଙ୍କୁ ଛାଡ଼ି ଯିବୁ ଗୋପୀନାଥ
କଦାଚିତ ତୋତେ ଛାଡ଼ି ନ ଦେବୁ ଅଚ୍ୟୁତ
ଦରିଦ୍ରକୁ ଧନ ଆସି ପ୍ରାପତ ହୋଇଛି
ତାହାକୁ ଆମ୍ଭେ କି ଥରେ ପାରିବୁ ମୁହୁଛୁ ।
ଅନ୍ଧକୁ ନୟନ ଯିନା ହୋଇଛି ପ୍ରାପତ
ଯେଣୁକରି ଅନାଥ ଯେ ପାଇଅଛି ନାଥ ।
ଥୋଇବା ପଦାର୍ଥ ଦୈବ ନେଇଥିଲା ହରି
ସେ ପଦାର୍ଥ କର୍ମବଳେ ମିଳିଛି ଆମ୍ଭର ।
କେମନ୍ତ ପ୍ରକାରେ ହସ୍ତୁଁ ଛାଡ଼ିଦେବୁ ତାହା
ହସ୍ତରୁ ଖସି ପଡ଼ିଲେ ନ ମିଳଇ ଯାହା ।
ଏହି ଅକ୍ରୂର ଆସି ତ ଭଣ୍ଡାଇଣ ନେଲା
ବେଳକ ଆସି ଉଦ୍ଧବ ପ୍ରବୋଧିଣ ଗଲା ।
ସେହିଦିନୁ ଆମ୍ଭେମାନେ ମୁର୍ଚ୍ଛିଥିଲୁଁ ତୋତେ
ଏବେ ଆସି ହସ୍ତେ ପଡ଼ିଅଛି ଜଗନ୍ନାଥେ ।
କେମନ୍ତ ପ୍ରକାରେ ଯିବ ଦ୍ୱାରାବତୀ ପୁର
ଯେବେ ଯିବ ଘେନଯାଅ ଆମ୍ଭଙ୍କୁ ସଙ୍ଗର ।
ଯେବେ ତୁ ଆମ୍ଭଙ୍କୁ ଛାଡ଼ି ଯିବୁରେ କହ୍ନାଇ
ନିଶ୍ଚୟ ମରିବୁ ବିଷ ଖାଇ ସର୍ବ ଗୋଷ୍ଠି ।
ହତ୍ୟା ଗୋଟିକ ବସିବ କନ୍ଧରେ ତୋହର
ସ୍ତ୍ରୀହତ୍ୟା ଦୋଷ କେବେ ନ ଯିବଟି ପାର
ଏମନ୍ତ କଠୋର ବାକ୍ୟ ଗୋପୀଙ୍କର ଶୁଣି
ମନେ ମନେ ବିଚାରଣ ପ୍ରଭୁ ଚକ୍ରପାଣି ।
ଆଶ୍ୱାସନା ଦେଇ ତାଙ୍କୁ କହନ୍ତି ମଧୁର
ସମସ୍ତଙ୍କୁ ଘେନଯିବା ଦ୍ୱାରାବତୀପୁର ।
ତୁମ୍ଭଙ୍କୁ ନେବା ନିମନ୍ତେ ଆସିଛି ଏଥକୁ
ନ ନେଲେ ସିନା ଦୋଷ ଯେ ଲଗିବ ଆମ୍ଭଙ୍କୁ
ନନ୍ଦ ଆଦିର ଯଶୋଦା ରାଧିକା ସହିତେ
ଷୋଳସହସ୍ର ଗୋପୀ ଯିବେ ଏହାଙ୍କ ସଙ୍ଗତେ ।
ଆଉ ଯେତେ ଗୋପାଙ୍ଗଣୀଥିବେ ଗୋପପୁରେ
ଗୋରୁଙ୍କୁ ଚରାଉଥିବେ ଆନନ୍ଦ ମନରେ ।
ଏତେକ କହିଣ ସର୍ବ ଗୋପୀଙ୍କି ବୋଧିଲେ
ବନଚାରି ନନ୍ଦନକୁ ମନେ ସୁମରିଲେ ।
ରମ୍ୟକ ଦ୍ୱୀପରେ ଥାଇ ଜାଣି ଖଗେଶ୍ୱର
ବିଚାରିଲେ ସୁମରନ୍ତି ଗୋପେ ଚକ୍ରଧର ।
କାଳିୟଗଞ୍ଜନ କାଳେ ଦେଖିଥିଲି ପୂର୍ବେ
ପ୍ରଭୁଙ୍କଠ ପ୍ରିୟ ଭକ୍ତ ଗୋପ ଗୋପୀ ସର୍ବେ ।
ସେମାନେ ତ ଶ୍ରୀକୃଷ୍ଣର ସେବକ ଅଟନ୍ତି
ଶ୍ରୀକୃଷ୍ଣ ତାଙ୍କର ଅଙ୍ଗ ସ୍ପର୍ଶ କରିଛନ୍ତି ।
ତାହାଙ୍କର ମୁଖ ଦେଖି ନିସ୍ତାର ପାଇବା
ଗୋପୀଙ୍କ ଭକତ ସରି ନୋହେ ସୁରଦେବା
ଏତେକ ବିଚାରି କରି ବାହାର ହୋଇଲା
ଏକା ନିଃଶ୍ୱାସକେ ବୃନ୍ଦାବନରେ ମିଳିଲା ।
ବୃନ୍ଦାବନ ଶୋଭା ଦେଖି ମନେ ବିଚାରଇ
ଏଥେ ବାଳଲୀଳା କରିଥିଲେ ଭବଗ୍ରାହୀ ।

ଏ କଦମ୍ବ ବୃକ୍ଷତଳେ ବସି ଭଗବାନ
ଶ୍ରୀବିମ୍ବ ଅଧରେ କରୁଥିଲେ ବେଣୁସ୍ୱନ ।
ଏତେ ଶୁଣି ସେ ବୃକ୍ଷକୁ ନମସ୍କାର କଲା
ବୃନ୍ଦାବନକୁ ନିରେଖି ବାହାର ହୋଇଲା ।
ଗୋପ ନଗରକୁ ଚଳିଯା ଏ ଖଗଚର
ସର୍ବେ ବୋଇଲେ କପାଇଁ ଆସେ ଖଗବର ।
ଧୀରେ ଧୀରେ ଯାଇଣ ସେ ମିଳେ ସିଂହଦ୍ୱାର
ବିଶ୍ୱମୂର୍ତ୍ତି ଛାଡ଼ି ହେଲା ମନୁଷ୍ୟ ଶରୀର ।
ଅନ୍ତଃପୁରେ ବାରତା ପାଇଣ ନନ୍ଦଗଣ
ବାହ୍ୟରେ କପାଁ ଅଇଲା ବିନତା ନନ୍ଦନ ।
ରମ୍ୟକ ଦ୍ୱୀପରେ ଏହୁ କରଥାଇ ବାସ
ଅନନ୍ତ ଶଯ୍ୟାରେ ଜଗି ନାରାୟଣ ପାଶ ।
ଏହି ମଞ୍ଚ ପୁରକୁ ସେ କପାଇଁ ଅଇଲା
ଏହି କଥା ଗୋଟି ମନେ ସନ୍ଦେହ ଲଗିଲା ।
ମଞ୍ଚରେ ମାନବ ମୂର୍ତ୍ତି ଅଟଇ ଦଇବେ
ଶ୍ରୀକୃଷ୍ଣର ସେବକ ଏ ଅଟଇ ସ୍ୱଭାବେ ।
ଏତେକ ବିଚାରି ନନ୍ଦ ହୋଇଲା ବାହାର
ନମସ୍କାର କଲା ଯାଇ ଗରୁଡ଼ ପୟର ।
କଲ୍ୟାଣ କଲେ ତାହାକୁ ବିନତାର ବତ୍ସ
ଆରୋଗ୍ୟ ଶରୀର ହେଉ ତୁମ୍ଭର ପ୍ରତ୍ୟକ୍ଷ ।
ବୃଦ୍ଧ ତନୁ ତେଜି ତୁମ୍ଭେ ଯୁବା ତନୁଧର
ରାମ କୃଷ୍ଣ ହେତୁ ତୁମ୍ଭେ ପ୍ରିୟପାତ୍ର ମୋର ।
ଏତେକ କଲ୍ୟାଣ ତାଙ୍କୁ କଲେ ଖଗେଶ୍ୱର
ଆସନରେ ବସାଇଲେ ନନ୍ଦ ନୃପବର ।
ଯହୁଁ ଶ୍ରୀକୃଷ୍ଣ ଜାଣିଲେ ଗରୁଡ଼ ଅଇଲା
ଭିତର ପୁରୁ ବାହାର ହେଲେ ନନ୍ଦବାଳା ।
ଗରୁଡ଼ ତାହାଙ୍କୁ ଚାହିଁ ଦରଶନ କଲା
ହୃଦୟ ମଧ୍ୟରେ କୋଟି ନମସ୍କାର କଲା ।
ଯାଇଣ ଭେଟିଲା ସେହୁ ଶ୍ରୀଚରଣ ତଳ
ଆଶ୍ୱାସ କରି ବୋଇଲେ ଦେବ ଦାମୋଦର
ଶ୍ରୀକୃଷ୍ଣ ମୁଖକୁ ଚାହିଁ କହେ କରଯୋଡ଼ି
କାହିଁପାଇଁ ମୋତେ ସ୍ମରିଲ ନରହରି ।
କୃପାକରି କହ ମୋତେ କମଳାର ସାଇଁ
ଗୋବିନ୍ଦ ବୋଲନ୍ତି ଶୁଣ ବିନତା ତନୟ
ବିଶ୍ୱାସ କରିଣ ତୋତେ କହିବା କଥାନ୍ତ
ଏକମନ ହୋଇ ଶୁଣ ବିନତାର ସୁତ ।

ଦ୍ୱାପର ଯୁଗ ତ ଶେଷ ହେଉଅଛି ଏବେ
ଗୋପାଙ୍ଗଣୀଙ୍କୁ ପିଠିରେ ବସାଅ ତୁ ଜବେ ।
ନନ୍ଦ ଆବର ଯଶୋଦା ରାଧିକା ସହିତେ
ଏ ସମସ୍ତଙ୍କୁ ପିଠିରେ ବସାଅ ତୁରିତେ ।
ରହସ୍ୟ ଦ୍ୱାରକାପୁରେ ରଖିବାକୁ ନେଇ
ଥୋକେ କାଳ ବଞ୍ଚି ତହିଁ ରହିଥାନ୍ତୁ ଯାଇ ।
ଯେତେବେଳେ ଏହି ଯୁଗ ପ୍ରଳୟ ହୋଇବ
ଲବଣ ସମୁଦ୍ର ମଧ୍ୟେ ଦ୍ୱାରକା ଭାସିବ ।
ସେହି ପ୍ରଳୟ କାଳରେ ସମସ୍ତେ ମରିବେ
ତେବେ ଏ ପୃଥିବୀ ସିନା ଉଶ୍ୱାସ ଲଭିବେ ।
ଶ୍ରୀକୃଷ୍ଣ ମୁଖୁ ଗରୁଡ଼ ଏସନକ ଶୁଣି
ମହା ଆନନ୍ଦିତ ହେଲା ଖଗ ନୃପମଣି ।
ଖଗବର ତହୁଁ ସ୍ନାନ ଭୋଜନାଦି କଲେ
ସେ ଦିନ ଖଗ ଈଶ୍ୱର ସେଠାରେ ରହିଲେ ।
ନାରାୟଣ ମନମଧ୍ୟେ କରିଣ ବିଚାର
ନନ୍ଦ ଯଶୋଦାଙ୍କୁ ଚାହୁଁ ରାଇ ଦାମୋଦର
ଏଠାରେ ଥାଇଣ ଦୁଃଖ ପାଉଅଛ ତୁମ୍ଭେ
ଦ୍ୱାରକା ପୁରକୁ ତେଣୁ ଯାଉଅଛୁ ଆମ୍ଭେ ।
ନନ୍ଦ ଯଶୋଦା ବୋଲନ୍ତି ଶୁଣ ତୁମ୍ଭେ ହରି
ତୁମ୍ଭବିନୁ ଆନ ଆଶ୍ରା ନାହିଁ ଯେ ଆମ୍ଭର ।
ପୋଷିଲେ ପୋଷ ନବୁଝା ନାଶ କର କନା
ତୁମ୍ଭେ କି ନ ଜାଣୁ ବାବୁ ଆମ୍ଭର ବେଦନା ।
ଗୋବିନ୍ଦ ବୋଇଲେ ତୁମ୍ଭେ ବେଗ ହୁଅ ସଜ
ଗରୁଡ଼ ପୃଷ୍ଠରେ ବସି ଚଳିଯିବା ଆଜ ।
ଶୁଣି ଆନନ୍ଦିତ ହେଲେ ନନ୍ଦ ଯଶୋବନ୍ତୀ
ଚନ୍ଦ୍ର ଦେଖିଣ କୁମୁଦ ଯେସନ୍ତେ ବିକଶନ୍ତ ।
ରାଧିକାକୁ ଚାହିଁ ବୋଲୁଛନ୍ତି ମଧୁହାସୀ
ଆମ୍ଭର ସଙ୍ଗେ ଦ୍ୱାରକା ଯିବ ପ୍ରାଣେଶ୍ୱରୀ ।
ରାଧିକା ବୋଇଲେ ଯେବେ କରିବ ବିଧାନ
ତେବେ ସେ ସଙ୍ଗତେ ମୋତେ ନେବ ଭଗବାନ
ଶ୍ରୀକୃଷ୍ଣ ବୋଇଲେ ଆଉ ନ ବିଚାର କିଛି
ତୁମ୍ଭେ କି ନ ଜାଣ ଯୁଗ ଶେଷ ହେଉଅଛି ।
ଚନ୍ଦ୍ରସେଣୀର ସଙ୍ଗତେ ସଜ ହୋଇ ଚଳ
ଗରୁଡ଼ ପିଠ ଉପରେ ବସ ଧାଡ଼ିକାର ।
ଏସନକ ଆଜ୍ଞା ଦେଇ ରାଧିକାକୁ ହେଲେ
ଗୋପାଙ୍ଗଣୀମାନଙ୍କୁ ସେ ଚାହିଁ ପଚାରିଲେ ।

ତୁମ୍ଭେ ତ ଷୋଳସହସ୍ର ନାରୀ ଏଥେ ଅନ୍ତ
ଗୁପତ କଥା ତୁମ୍ଭଙ୍କୁ କହିବା ପ୍ରତ୍ୟକ୍ଷ ।
ଆମ୍ଭେ ଏବେ ଯାଉଅଛୁ ଦ୍ୱାରିକାଶ ପୁର
ତୁମ୍ଭେମାନେ ଗୋକୁଳରେ ଥାଅ ଗୋ ଏଥିର ।
ଥୋକେ ଦିନ ଗତ ହେଲେ ନେବାଟି ଆମ୍ଭେ
ଏଥିପାଇଁ ମନେ ଚିନ୍ତା ନ କର ଗୋ ତୁମ୍ଭେ
ଶ୍ରୀକୃଷ୍ଣ ମୁଖରୁ ଏମନ୍ତ ବାକ୍ୟ ଶୁଣି
ହସିଲେ ବୋଇଲେ ତାଙ୍କୁ ସର୍ବ ଗୋପାଙ୍ଗନୀ
ଆମ୍ଭଠାରେ ଏତେ ସ୍ନେହ କରିଥିଲ ହରି
ନିର୍ଦ୍ଦୟ ହୋଇଣ ଏବେ ଯିବ କେଉଁପରି ।
ଏତେ ନିର୍ଦ୍ଦୟୀ ଯଦ୍ୟପି ଥିଲ ଆମ୍ଭଠାରେ
କମ୍ପା ଏଥକୁ ଅଇଲ କହ ଦାମୋଦରେ ।
ନିରାଶ କରି ଆମ୍ଭଙ୍କୁ ଯେବେ ଯିବ ଛାଡ଼ି
ନିଷ୍ଟେ ପ୍ରାଣ ହରାଇବୁ ଯମୁନାରେ ବୁଡ଼ି ।
ଗୋବିନ୍ଦ ବୋଇଲେ ସର୍ବେ ସଜ ହୋଇ ଆସ
ଗରୁଡ଼ ପୃଷ୍ଠେ ବସାଇ ନେବଇଁ ଅବଶ୍ୟ ।
ଏମନ୍ତ ଶୁଣି ଗୋପାଙ୍ଗନୀଏ ଧାଇଁଲେ
ଯେ ଯାହାର ମତେ ସଜ ହୋଇଣ ରହିଲେ
ତହୁଁ ଗହଳ ହୋଇ ହୋଇଲେ ବାହାର
ସମସ୍ତେ ମିଳିଲେ ଆସି ନନ୍ଦ ସିଂହଦ୍ୱାର ।
ରାଧିକା ଦୂତିକା ସହିତରେ ସର୍ବ ଗୋପୀ
ନନ୍ଦ ମନ୍ଦିରେ ଭିତରେ ମିଳିଲେକ ଯାଇ ।
ଏମନ୍ତେ ରଜନୀ ଆସି ହେଲା ପ୍ରହରେକ
ବିଚାର କରନ୍ତି ତହୁଁ ଜଗତ ନାୟକ ।
ଗରୁଡ଼ ମୁଖକୁ ଚାହିଁ କୃଷ୍ଣ ଆଜ୍ଞା ଦେଲେ
ବିଶ୍ୱରୂପ ଧରି ପିଠି ବିସ୍ତାରି ବୋଇଲେ ।
ଆଜ୍ଞା ପାଇଣ ଗରୁଡ଼ ବେଗେ ଉଠିଗଲା
ଗୋବିନ୍ଦଙ୍କୁ ସୁମରିଣ ପିଠି ବିସ୍ତାରିଲା ।
ଶ୍ରୀକୃଷ୍ଣ ବୋଲନ୍ତି ପିତା ମାତାଙ୍କୁ ଅନାଇ
ଗରୁଡ ପିଠିରେ ତୁମ୍ଭେମାନେ ବସ ଯାଇଁ ।
ଗୋବିନ୍ଦଙ୍କର ବଚନେ ନନ୍ଦ ଯଶୋଦାଏ
ହୃଦଗତେ ବିଚାର କରନ୍ତି ବାପମାଏ ।
ଆନନ୍ଦିତ ହୋଇ ବସିଲେକ ବେନିଜନ
ଗୋପୀମାନେ ବସିଲେ ଯେ ତାଙ୍କ ସନ୍ନିଧାନ
ଚନ୍ଦ୍ରସେଣା ରାଧା ଆଉ ଦୂତିକା ସଙ୍ଗରେ
ସଜହୋଇ ବିଜେ କଲେ ଗରୁଡ଼ ପିଠିରେ ।
କୃଷ୍ଣ ବସିଲେ ଉଦ୍ଧବ ଅକ୍ରୂରଙ୍କୁ ଘେନ
ଦାରୁକ ସହ ବଳଦେବ ଚକ୍ରପାଣି ।
ନିଜ ଗରୁଡ଼ଙ୍କୁ ଆଜ୍ଞା ଦେଲେ ବାସୁଦେବ
ଦ୍ୱାରିକାରେ ପ୍ରବେଶ କରି ତୁମ୍ଭ ଜବ ।
ଆଜ୍ଞା ପାଇଣ ଗରୁଡ ସେଠାରୁ ଚଳିଲା
ଦୁଇ ଦଣ୍ଡର ମଧ୍ୟରେ ତହିଁ ପ୍ରବେଶିଲା ।
ଗୋବିନ୍ଦ ବୋଇଲେ ଶୁଣ ଆରେ ଖଗେଶ୍ୱର
ନିଜମ୍ୟ ଦ୍ୱାରିକା ପୁରେ ଚଳ ଧାଡିକାର ।
ଜଗନ୍ନାଥ ଆଜ୍ଞା ପାଇ ଖଗେଶ୍ୱର ଯାଇଁ
ଭଦମ୍ୟ ଦ୍ୱାରକାପୁରେ ବେଗେଣ ମିଳଇ ।
ତହୁଁ ଗରୁଡ଼ଙ୍କୁ ଆଜ୍ଞା ଦେଲେ ନାରାୟଣ
ଏଥିଠାରେ ରହ ତୁମ୍ଭେ ବିନତା ନନ୍ଦନ ।
ଆଜ୍ଞା ପାଇଣ ଗରୁଡ଼ ସେଠାରେ ରହିଲେ
ବୈନତେୟର ପିଠିରୁ ସର୍ବେ ଓହ୍ଲାଇଲେ
ନନ୍ଦ ଯଶୋଦାଙ୍କୁ ଚାହିଁ ଶ୍ରୀକୃଷ୍ଣ ବୋଲନ୍ତି
ନଗର ମଧ୍ୟରେ ବିଜେ କର ହୋ ତତକ୍ଷଣ ।
ନନ୍ଦ ପାଇଁ ବିଶ୍ୱକର୍ମା ଯା ନିର୍ମାଣି ଥିଲେ
ପିତାମାତା ଘେନ କୃଷ୍ଣ ଆପେ ବିଜେ କଲେ
ବୋଇଲେ ନଗରେ ତୁମ୍ଭେ ସୁଖେ ବାସ କର
ଶୋଭା ପାଉଅଛଇ କି ଶତ ସ୍ୱର୍ଗପୁର ।
ଗୋପ ନଗରହୁଁ ବଳ ହୋଇଅଛୁ ସଜ
ଆପେ ଯାହା ଭିଆଇଅଛନ୍ତି ଦେବରାଜ ।
କୋଟିଏ ଲକ୍ଷ୍ମୀ ଘେନିଣ ବିଜେ କମଳମା
ଅଳକା ପରାୟେ ଶୋଭା ପାଉଅଛୁ ପୁଣି ।
ପୁର ଦେଖି ନନ୍ଦରାଜା ମୋହିତ ହୋଇଲେ
ଗୋପପୁର ନଗରକୁ ମନୁ ପାସୋରିଲେ ।
ନିଷ୍ଟନ୍ତି ଉହିଲେ ସେହି ଦ୍ୱାରିକା ନଗର
ଯାହାର ପ୍ରଭୁ ଅଟନ୍ତି ଦେବ ଚକ୍ରଧର ।
ଚନ୍ଦ୍ରସେଣା ରାଧିକାଙ୍କୁ ଘେନ ମଧୁହାସ
ନଗର ଗୋଟିଏ ଦେଖାନ୍ତି ଠାବ କରି ।
ତହିଁରେ ଯାଇ ବିଜୟ କଲେ ଚନ୍ଦ୍ରସେଣା
ଦେବଙ୍କ ଦୁର୍ଲ୍ଲଭ ପୁରୀ ହୋଇଛୁ ଘଟଣା
ଧନ ରତ୍ନମାନ ଅଛୁ କୁଡ଼ କୁଡ଼ ହୋଇ
ବଖରା ବଖରା ଭିନ୍ନ ଭିନ୍ନ ଯେ ହିଁଶଇ ।
ଅଷ୍ଟ ରହେ ପୁର ଗଢ଼ିଛନ୍ତି ବିଶ୍ୱକର୍ମା
ଯହିଁରେ ବିଜେ କରିବେ ଶ୍ରୀକୃଷ୍ଣଙ୍କ ବାମା ।

ଦେଖି ଚନ୍ଦ୍ରସେଣା ମହା ସନ୍ତୋଷ ଲଭିଲା
ଗୋପରେ ଗାଈ ରଖିବା କଥା ପାସୋରିଲା ।
ଶ୍ରୀକୃଷ୍ଣଙ୍କର ମହିମା ଦେବେ ଅଗୋଚର
ଚନ୍ଦ୍ରସେଣାକୁ ସେ କଥା ହେଲ ନ ଗୋଚର ।
ଚନ୍ଦ୍ରସେଣାକୁ ସେଠାରେ ରଖି ଜଗନ୍ନାଥେ
ଆବର ଗୋପୀମାନଙ୍କ ଯେଉଣି ସଙ୍ଗତେ ।
ଗୋଷ୍ଠି ଗୋଷ୍ଠି କରି ପୁର ତାଙ୍କୁ ଦେଖାଇଲେ
ଗୋଷ୍ଠି ଗୋଷ୍ଠି କରି ସମସ୍ତଙ୍କୁ ଠାବ ଦେଲେ
ପୁରଦେଖିଗୋପୀମାନେ ହୋଇଲେ ସନ୍ତୋଷ
ମନେ ମନେ ପ୍ରଶଂସନ୍ତି ଧନ୍ୟ ନନ୍ଦଶିଷ୍ୟ ।
ଅଷ୍ଟରତ୍ନେ ପୁରମାନ ହୋଇଅଛି ନିର୍ମା
ମନୋମତ ଗଢ଼ିଅଛି ଯାହା ଶିଳ୍ପି ଦେବା ।
ଦେବ ଭୁବନ ପରାୟେ ସୁନ୍ଦର ଦିଶଇ
ଦେଖି ଗୋପାଙ୍ଗଣୀଙ୍କର ମନ ହେଲ ମୋହି ।
ଏ ପ୍ରକାରେ ଆଜ୍ଞା ଦେଇ ଅଛନ୍ତି ମୁରାରି
ଘରେ ଘରେ ଚରଚଇ ସିନ୍ଧୁର କୁମାରୀ ।
ଗୋପ ସମୃଦ୍ଧିକୁ ପାସୋରିଲେ ବ୍ରଜନାରୀ
ଯାଇ ରହିଲେ ରହସ୍ୟ ଦ୍ୱାରକା ନଗରୀ ।
ନିଶ୍ଚିନ୍ତେ ରହାଇ ସମସ୍ତଙ୍କୁ ଭଗବାନ
ରହସ୍ୟ ଦ୍ୱାରକାପୁରୁ ବାହାରିଲେ ପୁଣ ।
ଶୁଣ ଆହେ ପରୀକ୍ଷିତ ହରିବଂଶ ଧ୍ୱନି
ପାପ ନାଶ ଏ ମଧୁର ମଙ୍ଗଳକୁ ଶୁଣି ।
ମୁନିବରଙ୍କ ମୁଖରୁ ଶୁଣି ଏ ପ୍ରକାର
କରପଦ୍ମ ଯୋଡ଼ି ପୁଚ୍ଛିଲେ ନୃପବର ।
ଏଥିର ଉତ୍ତରେ କିସ ହୋଇଲା ଗୋସାଇଁ
ସାବଧାନେ କହ ତାହା ଶୁଣିବଇଁ ମୁହିଁ ।
ମୁନି ବୋଲନ୍ତି ସେଠାରୁ ଯାଇ ଜଗନ୍ନାଥ
ଉଦ୍ଧବ ଅକ୍ରୂର ପାଶେ ମିଳିଲେ ତ୍ୱରିତ ।
ଗରୁଡ଼ ପିଠିରେ ବିଜେ କଲେ ଦାମୋଦର
ସନ୍ନିଧିକୁ ଡକାଇଲେ ଉଦ୍ଧବ ଅକ୍ରୂର ।
ବୋଇଲେ ତୁମ୍ଭେମାନେ ହେ ଯାଅ ଯେଝାପୁରେ
ଉଦ୍ଧବ ଅକ୍ରୂର ଗଲେ ଯେ ଯାହା ନଗରେ ।
ଯେ ଯାହାର ଭୁବନକୁ ମେଲାଣି ସେ ଦେଲେ
ମେଲାଣି ପାଇ ଦାରୁକ ସେଠାରୁ ଚଳିଲେ ।
ଆପଣେ ଶ୍ରୀ ନାରାୟଣ ଶଙ୍ଖ ଚକ୍ର ବହି
ବାହାର ପ୍ରାଙ୍ଗଣେ ବିଜେକଲେ ଜ୍ଞବଗ୍ରାହୀ ।

ନାରୀ ପରିବାରମାନେ ପ୍ରଭୁଙ୍କୁ ଦେଖିଲେ
ଅନ୍ତଃପୁରକୁ ଚହିଁ ବେଗେ ଧାଇଁ ଗଲେ ।
ରୁକ୍ମିଣୀ ସତ୍ୟଭାମାଙ୍କୁ ବାରତା କହନ୍ତେ
ଧାଇଁ ଆସିଲେ ସେ ଦୁହେଁ ଦେଖିବା ନିମନ୍ତେ
ସେକାଳେ ଶ୍ରୀକୃଷ୍ଣ ଆଜ୍ଞା ଦେଲେ ଗରୁଡ଼କୁ
ସୁଖେ ଯାଅ ଖଗପତି ରମ୍ୟକ ଦ୍ୱୀପକୁ ।
ଆଜ୍ଞା ପ୍ରମାଣେ ଗରୁଡ଼ ଚଳିଣ ଆକାଶେ
ରମ୍ୟକ ଦ୍ୱୀପେ ମିଳିଲେ ଏକଇ ନିଃଶ୍ୱାସେ ।
ଅନ୍ତର ପୁରକୁ ନେଇ ଅତି ସମାଦରେ
ପାଦଧୌତ କରିଦେଲେ ସୁବର୍ଣ୍ଣ ଝରୀରେ ।
ତହୁଁ ଭୋଜନ ଚରବ୍ୟ ବିଧିମତେ କଲେ
ଭଲ ଭଲ ମିଷ୍ଟ ଦ୍ରବ୍ୟମାନ ଭୁଆଇଲେ ।
ସୁବର୍ଣ୍ଣ ଥଳମ ମଧ୍ୟ ଭରିଆ ପୁରାଇ
ସୁବାସିତ ଘୃତ ଆଣି ତହିଁ ନିଗିଡ଼ାଇ ।
ଚୌରାଶୀ ବ୍ୟଞ୍ଜନ ମଡ଼ଫଳ ସେ ରାନ୍ଧିଲେ
ସତ୍ୟଭାମା ନେଇକରି ସର୍ବ ପରଷିଲେ ।
ଯାହାକୁ ରାନ୍ଧଅଛନ୍ତି ସିନ୍ଧୁର ଦୁହିତା
ଏକକୁ ଆରେକ ସର୍ବେ ସୁଆଦରେ ଜେତା ।
ଭୋଜନ କରି ଗୋବିନ୍ଦ ଲଭିଲେ ସନ୍ତୋଷ
ବାସ ପାଣିରେ ଶ୍ରୀମୁଖ ଧୋଇ ପୀତବାସ ।
ଦାନ୍ତଖୁଣ୍ଟା ଆଣି ତହିଁ ରୁକ୍ମିଣୀ ଅର୍ପିଲେ
ସନ୍ତୋଷ ଲଭି ଗୋବିନ୍ଦ ଶ୍ରୀଦନ୍ତ ଖୁଣ୍ଟିଲେ ।
ସହସ୍ର ବେଳ ପର୍ଯ୍ୟନ୍ତ କୁଳୁକୁଞ୍ଚା କଲେ
ମୁଖ ହସ୍ତ ପୋଛି ପ୍ରଭୁ ନିଶ୍ଚିନ୍ତେ ବସିଲେ ।
କର୍ପୂର ତାମ୍ବୁଳ ଦ୍ୟନ୍ତି ସିନ୍ଧୁଙ୍କ କୁମାରୀ
ହରଷେ ଗ୍ରେବାଇ ତାହା ବୈକୁଣ୍ଠବିହାରୀ ।
ଶିରରେ ଗଞ୍ଜ ବାନ୍ଧିଲେ ଦିବ୍ୟଫୁଲ ମଲ୍ଲୀ
ସୁବାସିତ ଚନ୍ଦନକୁ ଦେହେ ହସନ୍ତି ବୋଳି ।
ନାନା ଅଳଙ୍କାର ରତ୍ନଖଚେ ବିଜେ କଲେ
ଜାମ୍ବବ-କନ୍ୟା ସୁବର୍ଣ୍ଣ ବିଞ୍ଚଣୀ ବିଞ୍ଚିଲେ ।
ଯେ ଯାହା ସେବାରେ ଲାଗିଲେକ ନାରୀଗଣ
ଏମନ୍ତ ପ୍ରକାରେ ଗଲା କେତେହେଁକ ଦିନ ।
ଦିନେ ସତ୍ୟଭାମା ସଙ୍ଗେ ଖେଳୁଥିଲେ ହରି
ପଶା ଖେଳରେ ହାରିଲେ ଦେବ ଦଇତ୍ୟାରି ।
ସତ୍ୟଭାମା ବୋଲେ ତୁମ୍ଭେ ହାରିଲ ମାଧୋଇ
ଗୋବିନ୍ଦ ବୋଇଲେ ମୋର ସାରୁ ଯେ ପଡ଼ଇ

କଉତୁକେ ଭୁଲାଇଣ କହନ୍ତି ଗୋବିନ୍ଦ
ମୋର ଦାନ ପଡ଼ିଅଛି ତୁମ୍ଭେ କର ଛନ୍ଦ ।
ସତ୍ୟା ବୋଇଲେ ହେ ପ୍ରଭୁ ତୁମ୍ଭେ ମାୟାଧର
ତୁମ୍ଭର ମହିମା ସିନା ତୁମ୍ଭଙ୍କୁ ଗୋଚର ।
ତୁମ୍ଭେ ତ ହାରିଲ ଆମ୍ଭେ ଦେଖିଲୁ ନୟନେ
ମୋହର ଦାନ ପଡ଼ିଲା ବୋଲୁଛ କେସନେ ।
ପ୍ରିୟବନ୍ତ ସତ୍ୟଭାମା ମୁଖୁଁ ଏହା ଶୁଣି
ଆନନ୍ଦରେ ମନ୍ଦହାସ କଲେ ଚକ୍ରପାଣି ।
ଏମନ୍ତ ସମୟେ ତହୁଁ ରୁକ୍ମିଣୀ ମିଳିଲେ
ଗୋବିନ୍ଦଙ୍କ ଶ୍ରୀଚରଣେ ଓଳଗି ହୋଇଲେ ।
ତଦନ୍ତେ ପ୍ରଭୁଙ୍କୁ ଚାହିଁ ପୁଚ୍ଛିଲେ ଏ ବାଣୀ
ଏତେ ବିଳମ୍ବ କାହିଁଥିଲ ଚକ୍ରପାଣି ।
ଶ୍ରୀକୃଷ୍ଣ ବୋଇଲେ ଆମ୍ଭେ ଥିଲୁଁ ଗୋପପୁରେ
ସାତଦିନ ରହିଲୁଁ ଯାଇ ସେହିଠାରେ ।
ସତ୍ୟଭାମା ରୁକ୍ମିଣୀ ଯେ ପୁଚ୍ଛନ୍ତି ହରଷେ
କଥା ଏକ ପୁଚ୍ଛୁଁ ହେ ଶୁଣ ପୀତବାସେ ।
ରାଧାଙ୍କୁ ଆମ୍ଭଙ୍କୁ ଦେଖାଇବ ବୋଲିଥିଲ
ସେହି କଥାଗୋଟି ପ୍ରଭୁ ଗୁପତେ ରଖିଲ ।
ଗୋବିନ୍ଦ ବୋଇଲେ ସଜହୁଅ ଚାଲ ଯିବା
ଗୋପାଳୁଣିମାନଙ୍କୁ ଯେ ନେଇ ଦେଖାଇବା ।
ଶ୍ରୀକୃଷ୍ଣ ମୁଖରୁ ଯହୁଁ ଏମନ୍ତ ଶୁଣିଲେ
ଗୋପୀଙ୍କି ଦେଖିବା ପାଇଁ ଶୀଘ୍ର ବେଶ ହେଲେ
ଶ୍ରୀକୃଷ୍ଣଙ୍କର ସମ୍ମୁଖେରେ ଆସିଣ କହିଲେ
ସଜ ହୋଇଣ ଅଇଲୁ ତୁମ୍ଭର ଆଜ୍ଞାରେ ।
ତହୁଁ କରପଦ୍ମ ଯୋଡ଼ି କହନ୍ତି ତରୁଣୀ
ଗୋପୀଙ୍କି ଦେଖାଅ ନେଇ ଆହେ ଚକ୍ରପାଣି
ଦାରୁକକୁ ଡାକି ଆଜ୍ଞା ଦେଲେ ଜଗନ୍ନାଥ
ରହସ୍ୟ ଦ୍ୱାରକା ଯିବା ସଜକର ରଥ ।
ଆଜ୍ଞା ପାଇଣ ଦାରୁକ ତହୁଁ ଚଳିଗଲା
ଅପୂର୍ବ ପ୍ରକାର କରି ରଥକୁ ମଣ୍ଡିଲା ।
ଅଷ୍ଟ କନ୍ୟାଙ୍କୁ ଘେନିଣ ପ୍ରଭୁ ନାରାୟଣ
ସତ୍ୟଭାମା ହସ୍ତ ଧରି ବିଜେ କଲେ ପୁଣ ।
ଅଶ୍ୱ ଚମକାଇ ତହୁଁ ରଥ ଚଳାଇଲେ
ରହସ୍ୟ ଦ୍ୱାରକା ପୁରେ ନେଇ ପ୍ରବେଶିଲେ
ପ୍ରଥମେ ଲଳିତା ପୁରେ ବିଜେ କଲେ ହରି
ରତ୍ନଖଟେ ବିଜେ କରି ଅଛନ୍ତି ସୁନ୍ଦରୀ ।

ତାଙ୍କ ପାଶରେ ବାଳକ ସ୍ୱରୂପକୁ ଧରି
ପଲଙ୍କ ଉପରେ ବିଜେ କରିଛନ୍ତି ହରି ।
ତହିଁ ଯାଇ ବିଜେ କଲେ ଦ୍ୱିତୀୟ ଭଗବାନ
ଦାରୁକ ସାରଥି ରଥ ରଖି ସେହିସ୍ଥାନ ।
ରୁକ୍ମିଣୀର ସହିତରେ ଅଷ୍ଟ ପାଟବଂଶୀ
ଲଳିତାଙ୍କର ମନ୍ଦିରକୁ ଗୃହାନ୍ତି ବିଶେଷି ।
କୋଟିଏ ଶଶୀ ଉଇଁଲା ପରାୟେ ଦିଶଇ
ସୁନ୍ଦରୀ ପଣରେ ରତି ସମାନ ନୁହଇ ।
ରୂପ ଦେଖିଣ ସେମାନେ ହୋଇଗଲେ ମୋହି
ବାଳରୂପ ଧରି ତହିଁ ବିଜୟ ମାଧୋଇ ।
ଲଜ୍ଜିତା ହେଲେ ରୁକ୍ମିଣୀ ଆଉ ସତ୍ୟଭାମା
ଲଜ୍ଜାପାଇଁ ମସ୍ତକକୁ ପୋତି ଅଷ୍ଟବାମା ।
ବିଶାଖା ପୁରକୁ ତହୁଁ ତ୍ୱରିତ ଚଳିଲେ
ସତ୍ୟଭାମା ହସ୍ତ ଧରି ଭିତରକୁ ନେଲେ ।
ବିଚିତ୍ର ଆସନ ଗୋଟି ସଜାଡ଼ି ତରୁଣୀ
ତହିଁ ବିଜେ କରାଇଣ ଛନ୍ତି ଚକ୍ରପାଣି
ଶତଦଳ ପଦ୍ମପ୍ରାୟ ଦିଶେ ତାଙ୍କ ମୁଖ
ପଟାନ୍ତର ନାହିଁ ତିନି ଭୁବନେ ପ୍ରତ୍ୟକ୍ଷ ।
ଏସନ ରୂପ ତାଙ୍କର ଦେଖିଣ ତରୁଣୀ
ସତ୍ୟଭାମା ରୂପ ଦେଖି କହନ୍ତି ରୁକ୍ମିଣୀ ।
ବୋଲନ୍ତି ସଖି ଗୋ ତୁମ୍ଭେ ସାବଧାନେ ଶୁଣ
ଅପୂର୍ବ ରହସ୍ୟ ଏହୁ ବିଚିତ୍ର ଆଖ୍ୟାନ ।
ଆମ୍ଭମାନଙ୍କ ସଙ୍ଗତେ ଅଛନ୍ତି ମାଧୋଇ
ଗୋପୀଙ୍କ ସଙ୍ଗେ ମୂରତି ଗୋଟିଏକ ହୋଇ ।
ବାଳ ମୁକୁନ୍ଦ ସ୍ୱରୂପେ ବସିଛନ୍ତି ଦେଖ
ଆମ୍ଭେ ଗୋପୀଙ୍କ ସମାନ ନୋହୁଁ ଯେ ପ୍ରତ୍ୟକ୍ଷ
କହୁଁ କହୁଁ ଦେବ ତହୁଁ ଚଳାଇଣ ଗଲେ
ସୁମେଧା ଭୁବନେ ଯାଇ ପ୍ରବେଶ ହୋଇଲେ
ତାହାର ପୁର ଗୋଟିକ ମଣ୍ଡିଣ ସୁନ୍ଦରୀ
ଶେଯ ଗୋଟିଏ ବିଚିତ୍ର ରୂପରେ ସଜାଡ଼ି ।
ସୁବାସ ପୁଷ୍ପ ଗୋଟିଏ ଶେଯରେ ପକାଇ
ତହିଁ ଉପରେ ବିଜୟ ଛନ୍ତି ଭାବଗ୍ରାହୀ ।
କର୍ପୂର ବିଡ଼ିଆ ପାନ ଅଧରେ ଦିଅଇ
ସେହି ତାମ୍ବୂଳ ଭୁଞ୍ଜନ୍ତି ତ୍ରୈଲୋକ୍ୟ ଗୋସାଇଁ
ଅଷ୍ଟବଂଶୀ ସହିତରେ ମିଳି ନାରାୟଣ
କନ୍ୟାଏ ଗୋପୀମାନଙ୍କୁ ଚାହିଁ ପୁଣି ପୁଣ ।

ସହସ୍ରେ ଗୋପୀ ଯେ ବେଢି ଅଛନ୍ତି କୃଷ୍ଣଙ୍କୁ
ଆନନ୍ଦେ ସେମାନେ ନିରେଖନ୍ତି ଶ୍ରୀମୁଖକୁ ।
ଖଣ୍ଡ ଗୁମର ଆଲଟ ଯେବଣ ବଞ୍ଚନ୍ତି
କେବଣ ସୁନ୍ଦରୀ ବସି ପାଦ ମଞ୍ଜାଳନ୍ତି ।
ସତ୍ୟଭାମା ରୁକ୍ମିଣୀ ତା ଦେଖିଲେ ନୟନେ
ସୁମେଧା ରୂପେ ସମାନ ନୋହୁ ଆମ୍ଭେମାନେ
ଲଜ୍ଜାପାଇ ମଥାପୋତି ନ ଗୃହାନ୍ତି ବାଳୀ
ମନେ ମନେ ହସୁରନ୍ତି ପ୍ରଭୁ ବନମାଳୀ ।
ବୃନ୍ଦାବତୀର ପୁରକୁ ଶୀଘ୍ର ଚଳିଗଲେ
ରୁକ୍ମିଣୀ ସତ୍ୟଭାମାକୁ ଧରି ଦାମୋଦରେ ।
କୁଞ୍ଜବନ ପ୍ରାୟେ ପୁର ସଜାଇଣ ବାଳୀ
ମଥା ଗୋଟିକ ପୋତିଣ ବସିଛି ସୁନ୍ଦରୀ ।
ମୋହନ ମୂରତି ଧରି ଦେବ ନାରାୟଣ
ଓଷ୍ଠ ଧରି ଚୁଟି କନ୍ଧ ନନ୍ଦର ନନ୍ଦନ ।
ସତ୍ୟଭାମା ରୁକ୍ମିଣୀ ଯା ଚାହାନ୍ତି ତା ମୁଖ
ସହସ୍ରେ ଚନ୍ଦ୍ରମାଠାରୁ ଅଟଇ ଅଧିକ ।
ଲଜ୍ଜାରେ ତରୁଣୀମାନେ ନ କହନ୍ତି କଥା
ଏକ ସଖୀର ଆଗରେ ଅନ୍ୟ କହେ ବାର୍ତ୍ତା ।
ଦେଖ ଆଗୋ ପ୍ରାଣସଖି ଗୋପୀଙ୍କ ସଙ୍ଗତେ
ବିଜେ କରିଛନ୍ତି କେହ୍ନେ ଆମ୍ଭ ନିଜକାନ୍ତେ ।
ରୁଷିକରି ବସିଅଛି ସେ ତରୁଣୀମଣି
ସଲଜ୍ଜ ଭାବରେ ବାମା କରଇ ଭ୍ରଳେଣି ।
ସେ ସ୍ଥାନରୁ ଚଳିଗଲେ ପ୍ରଭୁ ଦାମୋଦର
ଏରୂପେ ବୁଲି ଦେଖାନ୍ତି ଗୋପୀଙ୍କ ନଗର ।
ବାଳଗୋପାଳଙ୍କ ରୂପ ଧରି ନନ୍ଦବାଳ
ସମସ୍ତଙ୍କ ପୁରେ ବିଜେ ମଦନ ଗୋପାଳ ।
କେବଣ ଗୋପୀର ପୁରେ ବେଣୁଗୋଟି ଧରି
ହାସ୍ୟ ପରିହାସେ ଲାଗିଛନ୍ତି ଦଇତ୍ୟାରି ।
କେବଣ ଗୋପୀର ପୁରେ ଯାଇବସିଛନ୍ତି
ସ୍ୱୈର ପରକାରେ ସର ଲବଣୀ ଭୁଞ୍ଜନ୍ତି ।
କେବଣ ଗୋପୀଙ୍କି ଅବା ମାଗୁଛନ୍ତି ଘୃତ
କେବଣ ଗୋପୀଙ୍କି କୋଳେ ଧରନ୍ତି ଅନନ୍ତ ।
କେବଣ ଗୋପୀର ଦଧିହାଣ୍ଡି ଭାଙ୍ଗି କରି
କପଟରେ ଦେହୁଁ ନାଚ କରନ୍ତି ମଞ୍ଜାରୀ ।
ସାତ ପାଞ୍ଚ ମଞ୍ଜାରୀଏ ବସି ଦଧି ଖାଇ
ବିକଳରେ ଗୋପାଙ୍ଗୁଣୀ ବସିଣ ଦେଖଇ ।

କେବଣ ଗୋପାଙ୍ଗୁଣୀ ଯେ କୃଷ୍ଣ କୋଳେଧରି
ଦୁଧ ପେଇ ଗୀତ ଗାଉଅଛନ୍ତି ସୁନ୍ଦରୀ ।
ଏକ ଗୋପୀର ଗୃହରେ ଛନ୍ତି ଚକ୍ରପାଣି
ପାଣି ଯେହ୍ନ ବେଗେ ଆସି ବସିଛି ତରୁଣୀ ।
ଦଧି ଦୁଧ ସରମାନ ଖାଉଛନ୍ତି ବସି
ମୋହନ ମୂରତି ରୂପ ଧରି ହୃଷୀକେଶୀ ।
ଏମନକ ପରକାରେ ଦେଖି ଗୋପନାରୀ
ପାଣି ଧୋଇ କୃଷ୍ଣ ହସ୍ତ ଧରିଛି ସୁନ୍ଦରୀ ।
ଏବେ ଜାଇଁ ଯିବୁ ବୋଲି କରୁଅଛି ଗୋଳ
ସତ୍ୟଭାମାଙ୍କୁ ଦେଖାଇ ଦ୍ୟନ୍ତି ନନ୍ଦବାଳ ।
ଦେଖି କନ୍ୟାମାନେ ବଡ଼ଲଜ୍ଜିତ ହୋଇଲେ
ରହସ୍ୟ ଦ୍ୱାରକାପୁରେ ଗୃହାନ୍ତି ହର୍ଷରେ ।
ଏକ ଗୋପୀର ଦୁଆରେ ଯାଇଣ ମିଳିଲେ
ସତ୍ୟଭାମା ରୁକ୍ମିଣୀଙ୍କି ଧରି ଦାମୋଦରେ ।
ସେ ଗୋପାଙ୍ଗୁଣୀକି କୃଷ୍ଣ କୋଳରେ ଧରିଣ
ରତ୍ନ ପଲଙ୍କରେ ଶୋଇଛନ୍ତି ନିଶ୍ଚିନ୍ତେଣ ।
ତାହା ଦେଖାଇ ଶ୍ରୀକୃଷ୍ଣ ତହୁଁ ବାହୁଡ଼ିଲେ
ଆରେକ ଗୋପୀ ଦୁଆରେ ପ୍ରବେଶ ହୋଇଲେ
କୁଙ୍କୁମ ହଳଦୀ ତୈଳ ତାଙ୍କ ଅଙ୍ଗେ ଦେଇ
ଉରଜ ଉପରେ ପ୍ରେମେ କୃଷ୍ଣଙ୍କୁ ଶୁଆଇ ।
ନାନାବିଧ ପରକାରେ ଗାଉଛନ୍ତି ଗୀତ
ଅନନ୍ତ ଅଚ୍ୟୁତ ବୋଲି ସୁମରନ୍ତି ଚିତ୍ତ ।
ଏସନକ କୃତ୍ୟମାନ ଦେଖିଣ କାମିନୀ
ମନେ ମନେ ପ୍ରଶଂସନ୍ତି ସର୍ବ ଗୋପାଙ୍ଗୁଣୀ ।
ଧନ୍ୟ ଧନ୍ୟ ଗୋପୀ କେଉଁ ତପ କରିଥିଲେ
ବାଳଗୋପାଳ ମୂରତି କୋଳରେ ଧଇଲେ
ଏତେକ ପ୍ରଶଂସା ଯହୁଁ କଲେ ସର୍ବ ନାରୀ
ଭାର୍ଯ୍ୟାଙ୍କର ମନ ଜାଣିଲେକ ଚକ୍ରଧାରୀ ।
ସେଠାରୁ କାମିନୀମାନେ ବାହାର ହୋଇଲେ
ସୁଲକ୍ଷଣା ଗୋପାଙ୍ଗୁଣୀ ଦୁଆରେ ମିଳିଲେ ।
ନିର୍ଭୟେ ଚିତ୍ତେ ତାହାର ଗୃହେ ଗଲେ ପଶି
ଦେଖିଲେ ଖଟ ଉପରେ କୃଷ୍ଣ ଛନ୍ତି ବସି ।
ସୁଲକ୍ଷଣା ବସିଛନ୍ତି କୃଷ୍ଣପାଦଧରି
ପ୍ରୀତି ମାଗୁଅଛନ୍ତି ସେ ପ୍ରେମ ଭାବକରି ।
ତାହାର ସ୍ତନରେ ହାତ ଦେଇ ନାରାୟଣ
ବିଜୟ କରିଅଛନ୍ତି ରତନ ଖଟେଣ ।।

ଦେଖି ଅଷ୍ଟ ପାଟବଂଶୀ ପାଶ୍ଚେଟିଣ ଗଲେ
ଗୋବନ୍ଦର ମାୟାମୋହେ ଭୋଳ ସେ ହୋଇଲେ
ପୁରେ ପୁରେ ପଶିକର ଦେଖାନ୍ତି ମୋହନ
ସମସ୍ତ ପୁରେ ଦେଖିଲେ ବଜେ ନାରାୟଣ ।
ନ ଥିଲା ହୋଇ କୃଷ୍ଣଙ୍କୁ ନ ଦେଖିଲେ କାହିଁ
ସବୁଠାରେ ବଜେ କରଛନ୍ତି ଗ୍ରାବଗ୍ରାହୀ ।
କାହିଁ ରାସକେଳ କାହିଁ ହୁଏ ବାଳକେଳ
କାହିଁ ଗୋପୀ ସଙ୍ଗେ ପଶା ଖେଳ ବନମାଳୀ
କେଉଁଠାରେ ଘୃତ ସର କରନ୍ତି ଭୋଜନ
ଗୋପୀଙ୍କି ଲୁଚନ୍ତି କେଉଁଠାରେ ଭଗବାନ ।
ନାନା କଉତୁକ କରୁଅଛନ୍ତି ମାଧୋଇ
ରହସ୍ୟ ଦ୍ୱାରକା ପୁରେ ଥାଇ ଗ୍ରାବଗ୍ରାହୀ ।
ଗୋପରେ ଥାଇ ଯେମନ୍ତ କରୁଥିଲେ ହରି
ରହସ୍ୟ ଦ୍ୱାରକା ପୁରେ କଲେ ତା ମୁରାରି ।
ରୁକ୍ମଣୀ ସତ୍ୟଭାମାଙ୍କୁ ଦେବ ମାୟା କଲେ
ଅଷ୍ଟ ପାଟବଂଶୀଙ୍କର ଗରବ ଗଞ୍ଜିଲେ ।
ଗୋପୀଙ୍କ ସହିତ ବାଳ କ୍ରୀଡ଼ାର ଚରିତ
ରହସ୍ୟ ଦ୍ୱାରକା ପୁରେ ରଚ ପଦ୍ମନେତ୍ର ।
ଗୋପୀମାନଙ୍କର କ୍ରୀଡ଼ା ରହସ୍ୟ ଦେଖାଇ
ନନ୍ଦର ମନ୍ଦିରେ ବଜେ କଲେ ଗ୍ରାବଗ୍ରାହୀ ।
ଭିତରେ ଥାଇ ବାରତା ପାଇ ନନ୍ଦରାଣୀ
ସୁବର୍ଣ୍ଣ ଝୁରିରେ ଆଣି ଦେଲେ ଗଙ୍ଗାପାଣି ।
ପାଦ ଧୋଇ ଭିତରକୁ ଗଲେ ଗୋପୀନାଥ
ମାତାଙ୍କୁ ସେ ନମସ୍କାର କରନ୍ତି ଅଚ୍ୟୁତ ।
ଅଷ୍ଟପାଟବଂଶୀ ଯଶୋଦାଙ୍କୁ ଓଳଗିଲେ
କଲ୍ୟାଣ କରି ଶିରରେ ହାତ ବୁଲାଇଲେ ।
ତାଙ୍କ ହସ୍ତ ଧରି ଘେନଗଲେ ଯଶୋଦାଏ
ବରୁଣ ଶଯ୍ୟା ନେଲ କି ଲକ୍ଷ୍ମୀ ମହାମାୟେ ।
ଅମୃତ ରସ ମଣୋହି ମରନ୍ତି କନ୍ୟାଏ
ଏମନ୍ତେଣ ମୋହପ୍ରାପ୍ତ ହୋଇଲେ ଦେଖାଏ ।
ପୁତ୍ରକୁ ଦେଖି ଯଶୋଦା ରାଣୀ ମହାଦେଈ
ତାହାଙ୍କର ଆନନ୍ଦ ଯେ କହି ନ ସରଇ ।
ସ୍ୱୟଂ କମଳା ବଜେ କଲେକ ଯହିଁରେ
ସେଥିର ଉପମା କବା ଦେବ ନୃପବରେ ।
ନନ୍ଦଙ୍କୁ ଶ୍ରୀନାରାୟଣ ନମସ୍କାର କଲେ
ଶ୍ରୀକୃଷ୍ଣଙ୍କ ହସ୍ତ ଧରି ଭିତରକୁ ନେଲେ ।

ଅମୃତ ରସ ଭୋଜନ କଲେ ନାରାୟଣ
ବନା ଘରି ପାଞ୍ଚ ବଜେ କଲେ ଜନାର୍ଦ୍ଦନ ।
ରୁକ୍ମଣୀ ସତ୍ୟଭାମାଙ୍କୁ ଘେନ ତହିଁରୁ
ପ୍ରବେଶ ହୋଇଲେ ଯାଇ ଚନ୍ଦ୍ରସେଣା ପୁର ।
ମାୟାରେ ଚନ୍ଦ୍ରସେଣାକୁ ମୋହ ଜଗାଇଲେ
କୃଷ୍ଣ ବଜ କରିବା ସେ ଜାଣି ନ ପାରିଲେ ।
ଚନ୍ଦ୍ରସେଣାର ନଗର କଳନା ନ ଯାଇ
ତହିଁ ବଜ କରଛନ୍ତି ରାଧିକା ମାଧୋଇ ।
ଶତଦଳ ବଖରା ତହିଁ ଅନ୍ତ କର ନୋହି
ରାହାସ କ୍ରୀଡ଼ା ବିନୋଦ କରନ୍ତି କହ୍ନାଇ ।
ଅଷ୍ଟ କନ୍ୟାକୁ ଘେନଣ ଭିତରେ ପଶିଲେ
ଚନ୍ଦ୍ରସେଣା ନଗରରେ ଯାଇଁ ବଜେ କଲେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ
ରତନ ଖଟ ଉପରେ ବଜେ ଗ୍ରାବଗ୍ରାହୀ ।
ଯେଉଁ ଖଟେ ବଜ କରଛନ୍ତି ଦେବ ହରି
ସେହି ଖଟର ମହିମା କହି ତ କେ ପାରି ।
ଚଉପାଶେ ଚାରି ପଦ ପୁଷ୍ପ ଫୁଟିଅଛୁ
ତାର ମଧ୍ୟେର କେଶର ଗୋଟିଏ ହୋଇଛୁ ।
କେଶର ମଧ୍ୟେ ବସି ଅଛନ୍ତି କହ୍ନାଇ
ମଦନମୋହନ ମୂର୍ତ୍ତି ଧରି ନନ୍ଦପୋଇ ।
ରାଧିକାକୁ ବାମଅଙ୍ଗେ ଧରଛନ୍ତି ହରି
ସେ ଶୋଭାରମହିମା କେ କହି ଅବା ପାରି ।
ଅଧରେ ଅଧର ଲଗାଇଣ ବନମାଳ
ପ୍ରେମାଳାପ କରୁଛନ୍ତି ହୋଇ କୁତୁହଳୀ ।
ଝାଞ୍ଜ କଂସାଳ ବଜାଉଛନ୍ତି ଅଷ୍ଟସଖୀ
ନୃତ୍ୟ ରହାସ କ୍ରୀଡ଼ାରେ ବଜେ ପଦ୍ମଆଖି ।
ମାୟା କ୍ରୀଡ଼ା ରାସମାନ ଭିଆଣ ସେ କଲେ
ରୁକ୍ମଣୀ ସତ୍ୟଭାମାଙ୍କୁ ମାୟାରେ ମୋହିଲେ ।
ଘେନଣ କନ୍ୟାମାନଙ୍କୁ ମିଳାଇଲେ ତହିଁ ।
ନୃତ୍ୟ ଗୀତ ରାସ ଦେଖାଇଣ ଗ୍ରାବଗ୍ରାହୀ ।
ଦେଖି ମୋହ ଗଲେ ସତ୍ୟଭାମା ଯେ ରୁକ୍ମଣୀ
ଅନେକ ପ୍ରଶଂସା କରୁଛନ୍ତି ପୁଣ ପୁଣି ।
ରାଧାର ସ୍ୱରୂପ ଦେଖି ହେଲେ ମୋହମାନ
ଶତଦଳ ପଦ୍ମ ପ୍ରାୟେ ବରାଙ୍କ ବଦନ ।
କୋଟି ଚନ୍ଦ୍ର ପରାୟେକ ଦିଶେ ସୁଶୋଭନ
ରାଧାକୃଷ୍ଣ ବେନି ମୂର୍ତ୍ତି ଦିଶି ଆନୁ ଆନ ।

କୋଟିଏ ପାଟଖଣ୍ଡୁ କ ଏକ ଅଟେ ଏକ୍ଷେ
କମଳର ଭିତରେ କି କମଳା ଅଛଇ ।
ପଟାନ୍ତର ଦେବା ପାଇଁ ନାହିଁ ତିନିପୁରେ
ବାମାଙ୍ଗେ ରାଧାକୁ ଧରିଛନ୍ତି ଦାମୋଦରେ ।
ଏମନ୍ତ ଦେଖିଣ ଶ୍ରୀକୃଷ୍ଣଙ୍କ ନାରୀମାନେ
ହୃଦରେ ଚିନ୍ତା କରନ୍ତି ଦେବ ଭଗବାନେ ।
ନିର୍ଧୂମ ଅନଳ ପ୍ରାୟେ ବିଶ୍ୱଜନ୍ମୁ ତେଜ
ସିଂହାସନେ ଭେଟିର ବସିଛନ୍ତି ଦେବରାଜ ।
ନୀଳ ମେଘେ ଇନ୍ଦ୍ରଧନୁ ପ୍ରାୟେକ ଦିଶଇ
ଦେଖି ଅଷ୍ଟପାଟବଂଶୀ ମୋହମାନ ହୋଇ ।
ଶ୍ରୀକୃଷ୍ଣଙ୍କୁ ଉପ୍ଭ କରି ନ ପାରନ୍ତି କହି
ଅତ୍ୟଦ୍ଭୁତ ରୂପ ଧରି ଅଛନ୍ତି ମାଧୋଇ ।
ମାନବେ ଜନମି ଦେଖିଲେକ ନିତ୍ୟସ୍ଥଳ
ମାନବ ବପୁରେ ଅଟନ୍ତି ପ୍ରଭୁ ଆଦିମୂଳ ।
ଅଷ୍ଟଭାର୍ଯ୍ୟା ଘେନି ହରି ବାହାର ହୋଇଲେ
ତହୁଁ ଦ୍ୱାରକାପୁରକୁ ବିଜେ କରିଗଲେ ।
ଅନ୍ତଃପୁର ଭିତରକୁ ଗଲେ ସର୍ବନାରୀ
ବାହାର ଅବକାଶରେ ରହିଲେ ଶ୍ରୀହରି ।
ରୁକ୍ମିଣୀ ବୋଲନ୍ତି ଆଗୋ ସତ୍ୟଭାମା ଶୁଣ
ଗୋପ କ୍ରୀଡ଼ା ବିନୋଦର ଅପୂର୍ବ ବିଧାନ ।
ଷୋଳସହସ୍ର କନ୍ୟାପୁରେ ଅଛନ୍ତି ମାଧୋଇ
ଏକ ଶରୀରେ ଆରେକ ସ୍ୱରୂପ ସେ ହୋଇ ।
ଦଇବ ଗଠନ ପ୍ରାୟେ ସମସ୍ତେ ଦିଶନ୍ତି
ଗୋପୀଙ୍କ ରୂପକୁ ସରି ନୁହନ୍ତି ପାର୍ବତୀ ।
ତାହାଙ୍କର ରୂପକୁ ଯେ ପଟାନ୍ତର ନାହିଁ
ନୋହିଲେ କି ସେହିମାନେ କୃଷ୍ଣେଛନ୍ତି ମୋହି
କ୍ଷଣେହେଁ ତାହାଙ୍କୁ କୃଷ୍ଣ ମୁର୍ଚ୍ଛି ନ ପାରନ୍ତି
ତେଣୁକରି ଗୋପୀନାଥ ନାମ ବୋଲାଅନ୍ତି ।
ଗୋପୀଙ୍କ ପ୍ରେମଭକ୍ତିକି ବ୍ରହ୍ମା ସରି ନୋହି
କୃଷ୍ଣ ବ୍ୟତୀତ ଆନକୁ ନ ଭଜନ୍ତି ସେହି ।
ଏସନକ ଭାବ କରି । ଗୋବିନ୍ଦ ମୁର୍ଚ୍ଛିବେ
ଗୋପ କ୍ରୀଡ଼ାପାଇଁ ମର୍ତ୍ତ୍ୟେ ଅବତାର ଏବେ ।
ଆମ୍ଭେ ରାଧାର ରୂପକୁ ସର୍ବେ ଲୋଡ଼ିବାରୁ
ଗରବଗଞ୍ଜନ ବାନା ଗଞ୍ଜିଲେ ଆଗରୁ ।
ଏମନ୍ତ ବିଚାରମାନ କରିଣ ତରୁଣୀ
ଯେ ଯାହା ପୁରକୁ ଗଲେ କୃଷ୍ଣ ପାଟରାଣୀ ।
ଅମୃତମଣୋହି ସଞ୍ଜା ହୋଇଲା ତଆର
ଆସେ ମଣୋହିକି ବିଜେ କଲେ ଚକ୍ରଧର ।
ସୁବର୍ଣ୍ଣ ଥାଳୀରେ ଅନ୍ନ ପରଷନ୍ତି ଆଣି
ଘୃତ ପରଷନ୍ତି ଶଙ୍ଖାଜିତର ନନ୍ଦିନୀ ।
ସନ୍ତୋଷେ ଭୋଜନ କରନ୍ତି ଦେବ ଚକ୍ରପାଣି
ଭୋଜନ ଶେଷ କରିଣ ଉଠିଲେ ତକ୍ଷଣି ।
ବାମ ପାଣି ଘେନି କୃଷ୍ଣ ଆଚମନ କଲେ
ରତନ ଖଟ ଉପରେ ଯାଇଣ ବସିଲେ ।
କର୍ପୂର ବିଡ଼ିଆ ପାନ କରନ୍ତି ମଣୋହି
ପାନ ଭାଙ୍ଗି ଦିଅନ୍ତି ଶଙ୍ଖାଜିତର ତନୟୀ ।
ଅଗୁରୁ ଚନ୍ଦନ ଅଙ୍ଗେ ବୋଳନ୍ତି ତରୁଣୀ
ଗନ୍ଧ ବନ୍ଦନ କରନ୍ତି ନାନା ପୁଷ୍ପ ଆଣି ।
ଆଲଟ ଘେନି ବିଞ୍ଚନ୍ତି ଦେବୀ ଜାମ୍ବବତୀ
ଖଡ଼ ଘେନିଣ ବିଞ୍ଚଇ କାଳନ୍ଦୀ ସୁଦନ୍ତୀ ।
ରହସ୍ୟ ପୁରରେ ନନ୍ଦ ଯଶୋଦା ରହିଲେ
ଗରୁଡ଼ କୃପାରେ ବୃଦ୍ଧ ତନୁ ତ୍ୟାଗ କଲେ ।
ଦୁଇ ଜଣଙ୍କର ଯୁବା ଶରୀର ହୋଇଲା
ରତିକାମ ପରାୟେକ ତାଙ୍କ ଶୋଭା ହେଲା ।
କେତେ ଦିନେ ଯଶୋମତୀ ହେଲେ ଗର୍ଭବାସ
ପୁତ୍ର ଗୋଟିଏ ଜନ୍ମିଲା କନ୍ଦର୍ପ ସଦୃଶ ।
ଅତି ସୁନ୍ଦର ହୋଇଲା ଯେଣୁ ପୁତ୍ରମୂର୍ତ୍ତି
ସାତ୍ୟକି ନାମ ତା ଦେଲେ ନନ୍ଦ ନରପତି ।
ପୁତ୍ରବାର୍ତ୍ତା ଶୁଣି କୃଷ୍ଣ ଆନନ୍ଦିତ ହେଲେ
ଦେବ ଭବିଷ୍ୟ କେ ଆନ କରିପାରେ ଭଲେ ।
ଦେଖନ୍ତି ପୁତ୍ରର ତିନି ବରଷ ହୋଇଲା
ଦିନକୁ ଦିନ ଚନ୍ଦ୍ରମା ପରାୟେ ଦିଶିଲା ।
ତିନି ବରଷର ଅନ୍ତେ ଯଶୋମତୀ ପୁଣି
ଆରମ୍ଭେଲେ ଗର୍ଭବତୀ ହୋଇଲେ ତରୁଣୀ ।
ଦଶ ମାସର ଅନ୍ତରେ କନ୍ୟା ପ୍ରସବିଲେ
ସୁଭଦ୍ରା ବୋଲିଣ ସେହି ତାର ନାମଦେଲେ ।
ଅତି ଶୁଭବେଳେ ଯେଣୁ ଲଭିଲେ ଜନମ
ସୁଭଦ୍ରା ବୋଲିଣ ଦେଲେ ଦୁହିତାର ନାମ ।
ପୁତ୍ର କନ୍ୟା ଦୁଇଗୋଟି ହୋଇଲେ ସଂଜାତ
ଅତ୍ୟନ୍ତ ଆନନ୍ଦ ଯେ ଲଭିଲେ ନୃପନାଥ ।
ବାଳକ କାଳରୁ ଯେତୁ ଦିନ ବଞ୍ଚୁଥାନ୍ତି
ଶ୍ରୀକୃଷ୍ଣଙ୍କ ଚରଣରେ ଦେଇ ଚିତ୍ତ ବୃତ୍ତି ।

ବନ୍ଦଇ କୌଶଲ୍ୟାସୁତ ଦଶରଥ ନାନ
ଛେଦିଲ ଜାନକୀ ପାଇଁ ଦୈତ୍ୟ ଦଶାନନ ।
ବାରବରଷେ ତାଡ଼କାସୁରୀ ନିବାରିଲ
ବିଶ୍ୱାମିତ୍ର ଯାଗ କାର୍ଯ୍ୟ ହେଳେଣ ରଖିଲ ।
ଶିବଧନୁ ଭଗ୍ନକଲ ମିଥିଳା ନଗରେ
ଜାନକୀକୁ ବିଭା ହେଲ ଆନନ୍ଦ ମନରେ ।
ବାଟରେ ଭେଟନ୍ତେ ପର୍ଶୁରାମଙ୍କୁ ଜିଣିଲ
ତାଙ୍କଠୁ ବୈଷ୍ଣବାଧନୁ ଛଡ଼ାଇ ଆଣିଲ ।
ସୀତା ଘେନି ବନବାସେ ଗଲ ରଘୁନାଥ
ସୁଗ୍ରୀବର ସଙ୍ଗତରେ ହୋଇଲ ମଇତ୍ର ।
ମଇତ୍ର ନିମନ୍ତେ ତୁମ୍ଭେ ବାଳିକି ମାଇଲ
କିଷ୍କିନ୍ଧ୍ୟା ନଗ୍ରରେ ସୁଗ୍ରୀବକୁ ରଜା କଲ ।
ରାବଣକୁ ମାରି ବିଭୀଷଣ ରଜା କରି
ତେଣୁକରି ତୁମ୍ଭନାମ ହେଲା ରାବଣାରି ।
ରାମ ନାମ ଗୋଟିକ ଯେ ସାମବେଦ ସାର
ବୁଧଜନେ ଘୋଷୁଛନ୍ତି ରାମ ନିରନ୍ତର ।
ଶ୍ରୀରାମଙ୍କ ଚରଣକୁ ମୋର ନିତ୍ୟ ଆଶ
ଅଚ୍ୟୁତ ଦାସକୁ ରଖ ଆହେ ପୀତବାସ ।

—❋—

## ବଳରାମ ଉଗ୍ରସେନ ଆଦି ଯାଦବ-ମାନଙ୍କର ନନ୍ଦଙ୍କୁ ସଙ୍ଗୋଳିବାପାଇଁ ରହସ୍ୟ ଦ୍ୱାରକାକୁ ଗମନ

ଏଥୁ ଅନ୍ତରେ ପରୀକ୍ଷ ନାମେ ନୃପବର
ମୁନିଙ୍କର ଚରଣରେ କଲେ ନମସ୍କାର ।
ଗଙ୍ଗାନୀର ଘେନି ରଜା ଚରଣ ଧୋଇଲା
ବିନୟ ଭାବରେ କରଯୋଡ଼ି ରହିଲା ।
ରଜାର ବିନୟ ଭାବ ଯେଣୁ ସେ ଦେଖିଲେ
ପୁରାଣ ପୁସ୍ତକ ବ୍ୟାସ କୁମର ପଢ଼ିଲେ ।
ମୁନିବର ଉଚ୍ଚରନ୍ତି ଶୁଣ ନୃପବର
କି ପଚ୍ଚରୁଅଛ ପୁଚ୍ଛ ଆମ୍ଭର ଆଗର ।
ମୁନିବରଙ୍କୁ ପ୍ରସନ୍ନ ଦେଖି ନୃପରାୟେ
କହନ୍ତି ହେ ମୁନି ମୋତେ କହିବା କଥାଏ ।
ଗୋପ ନଗରକୁ କୃଷ୍ଣ ବିଜେ କରିଥିଲେ
ନନ୍ଦ ଯଶୋମତୀଙ୍କ ସେ ସଙ୍ଗରେ ଆଣିଲେ ।
ରହିଲେ ରହସ୍ୟ ଦ୍ୱାରକାରେ ଗୋପୀଗଣ
ଅନ୍ତର ଜାଣିଲେ କି ପ୍ରଭୁ ସଙ୍କର୍ଷଣ ।
ତାହା କି ଜାଣିଲେ ଉଗ୍ରସେନ ନରପତି
ସେହି କଥା ପଚାରଇ ଆହେ ମହାମତି ।
ମେନ୍ତ କଥା ଗୋଟିକ ମୁଁ ତୁମ୍ଭଙ୍କୁ ପୁଚ୍ଛଇ
ବିଶେଷ ଭାବରେ ମୋତେ କହିବା ଗୋସାଇଁ
ରଜା ପଚାରନ୍ତେ ମୁନି କଥା ଆରମ୍ଭିଲେ
ତାଙ୍କର ନିର୍ମଳ ଚିତ୍ତ ଜାଣି ସେ ପାରିଲେ ।
ଏକଦିନକରେ ଉଗ୍ରସେନ ନୃପବର
ସଭା ମଣ୍ଡାଇଣ ବସିଅଛି ଆସ୍ଥାନର ।
ଉଦ୍ଧବ ଅକ୍ରୂର ଅନାଧୃଷ୍ଟ ଏ ଅଛନ୍ତି ।
ସପତକୋଟି ଯାଦବେ ସଭାରେ ଶୋଭନ୍ତି ।
ସୁଦେବର ନନ୍ଦନ ଯେ ବସୁଦେବ ବୀର
ସେହି ବସିଛନ୍ତି ଉଗ୍ରସେନ ସମୀପର ।
ପଞ୍ଚୁଆରି କରିଛନ୍ତି ଚତୁରଙ୍ଗ ବଳ
ଏସନକ ସମୟରେ ପ୍ରଭୁ କାମପାଳ ।
କୃଷ୍ଣ କୁମରଙ୍କୁ ସଙ୍ଗେ ଘେନିଣ ଅଇଲେ
ଉଗ୍ରସେନଙ୍କୁ ପ୍ରଣମି ସଭାରେ ବସିଲେ ।
ସକଳ ଯାଦବ ସଭା ମଣ୍ଡି ବସିଛନ୍ତି
ନାନା ଦେଶର ବାରତା କୁହାକୁହି ହୋନ୍ତି ।
ଅକ୍ରୂର ମୁଖକୁ ଚାହିଁ ରଜା ଉଗ୍ରସେନ
ବୋଇଲେ ଜାଣ କି ତୁମ୍ଭେ ଏଥିର କାରଣ ।
ଏତେ ଦିନ ହେଲା କୃଷ୍ଣ କାହିଁ ରହିଥିଲେ
ଆମ୍ଭମାନଙ୍କୁ ଏ କଥା ଜଣାନାହିଁ ଭଲେ ।
ତହୁଁ ଅକ୍ରୂର ବୋଇଲେ ଶୁଣ ମହାରାଣ
ଅପାର ଦିନ ହେଲା ନ ଥିଲେ ନାରାୟଣ ।
ଗୋପନଗରକୁ ଯାଇଥିଲେ ନରହରି
ଆମ୍ଭଙ୍କୁ ସଙ୍ଗରେ ନେଇଥିଲେ ଦଇତାରି ।
ବୈନତେୟର ପିଠିରେ ନନ୍ଦଙ୍କୁ ବସାଇ
ଆପଣେ ତହିଁରେ ବସି ଆଣିଲେ ଗୋସାଇଁ ।
ଷୋଳ ସହସ୍ର ଗୋପୀଙ୍କି ଘେନି ଆସିଛନ୍ତି
ଅପୂର୍ବ ଚରିତ ତୁମ୍ଭେ ଶୁଣ ନରପତି ।
ଉଗ୍ରସେନ ବୋଲେ ତାଙ୍କୁ କାହିଁ ରୁହାଇଲେ
କେତେଦିନ ହେଲା ତାଙ୍କୁ ଘେନାଇ ଅଇଲେ ।
ତହୁଁ ଅକ୍ରୂର ବୋଲଇ କରଯୋଡ଼ି ପୁଣି
ବହୁଦିନୁ ଅଇଲେଣି ନନ୍ଦ ନୃପମଣି ।
ବଳରାମ ବୋଇଲେ ନ ଜାଣୁ ଆମ୍ଭେ ତାହା
ଆମ୍ଭ ଆଗେ ନ କହଇ ଶ୍ରୀକୃଷ୍ଣ ତ ଏହା ।

ସଙ୍ଗରେ ବସି କହନ୍ତେ ଏମନ୍ତ ବଚନ
ତହିଁ ଆସି ବିଜେ କଲେ ଶ୍ୟାମ ନଟବର ।
ଉଗ୍ରସେନ ନୃପଙ୍କ ନମସ୍କାର କଲେ
ବଳରାମଙ୍କୁ ଦେଖିଣ ଶିରେ କର ଦେଲେ ।
କୃଷ୍ଣ ପୁତ୍ରମାନେ ପିତା ପାଦେ ଓଳଗିଲେ
ଉଦ୍ଧବ ଅକ୍ରୂର ଦୁହେଁ ଚରଣେ ନମିଲେ ।
ସାତବଂଶ ଯାଦବଙ୍କୁ ଯଥାମାନ୍ୟ କରି
ଆସ୍ଥାନ ଉପରେ ବିଜେ କଲେ ନରହରି ।
ଉଗ୍ରସେନ ପଚାରିଲେ ଶ୍ରୀକୃଷ୍ଣଙ୍କୁ ଚାହିଁ
ଅପାର ବନ ହୋଇଲା ଥିଲ ତୁମ୍ଭେ କାହିଁ ।
ଗୋବିନ୍ଦ ବୋଇଲେ ଆମ୍ଭେ ନ ଥିଲୁ ଏଠାରେ
ନନ୍ଦଙ୍କୁ ସନ୍ତୋଳି ଯାଇଥିଲୁ ଗୋପପୁରେ ।
ଗୋପୀଙ୍କର ବିକଳ ମୁଁ ସହି ନ ପାରିଲି
ଗରୁଡ଼ ପୃଷ୍ଠେ ବସାଇ ତାହାଙ୍କୁ ଆଣିଲି ।
ଦ୍ୱାରକାରେ ଠାବ ଯହୁଁ ନ ପାଇଲି କାହିଁ
ବରୁଣଙ୍କୁ ଖଣ୍ଡିଏ ମୁଁ ଯାଗା ମାଗିଲଇଁ ।
ବିଶ୍ୱକର୍ମାଙ୍କୁ ସୁମରୁଁ ସ୍ୱର୍ଗରୁ ଆଇଲା
ପୁର ଗୋଟାଏକ ନିରମାଣ କରିଦେଲା ।
ସଙ୍ଗରେ ଅଇଲେ ଷୋଳସହସ୍ର ଗୋପାଙ୍ଗଣୀ
ଚନ୍ଦ୍ରସେଣା ସଙ୍ଗରେ ନନ୍ଦ ନୃପମଣି ।
ଶ୍ରୀକୃଷ୍ଣ କହନ୍ତେ ଉଗ୍ରସେନ ତା ଶୁଣିଲେ
ସଭାର ଲୋକେ ଶୁଣିଣ ଆନନ୍ଦ ଲଭିଲେ ।
ବଳରାମ ବୋଲନ୍ତି ତୁ ଶୁଣରେ କହ୍ନାଇ
ଆମ୍ଭର ଘୁମୁରେ ଏବେ କହିଲୁ ତ ନାହିଁ ।
ଛୋଡ଼ର ମାୟା ମୋତେ ତ ଗୋଚରନୋହିଲା
କହୁଁ କହୁଁ ଫୁଟି ହେଲେ ରୋହିଣୀର ବଳା
ଶ୍ରୀକୃଷ୍ଣ ବୋଇଲେ କୋପକର କାହିଁପାଇଁ
ଚାଲ ନନ୍ଦଙ୍କୁ ସନ୍ତୋଳି ଯିବା ହେ ଗୋସାଇଁ
ଉଗ୍ରସେନ ବୋଇଲେ ତ ଆମ୍ଭେ ଥରେ ଯିବୁ
ସେ ନନ୍ଦ ମହାଶୂରଙ୍କୁ ଥରେ ସନ୍ତୋଳିବୁ ।
ଏତେକ ବଚନ କହୁ ସଭା ମଙ୍ଗଳିଲା
ଉଗ୍ରସେନ ରଜା ତହୁଁ ଭିତରକୁ ଗଲା ।
ରାମକୃଷ୍ଣ ଦୁଇଭାଇ ଅଇଲେ ନଗ୍ରକୁ
ସମସ୍ତ ଯାଦବ ଗଲେ ଯେ ଯାହା ପୁରକୁ ।
କୃଷ୍ଣର କୁମରମାନେ ଅଇଲେ ନଗର
ଶୁଣ ପରୀକ୍ଷିତ ରଜା ଉତ୍ତରାକୁମର ।

ଏମନ୍ତ ପ୍ରକାରେ ସେହି ଦିନ ବହିଗଲା
ଆରଦିନ ଉଗ୍ରସେନ ଆଣ ସଜକଲା ।
ଯାଦବଙ୍କୁ ଘେନି ରଜା ବାହାର ହୋଇଲେ
ଉଦ୍ଧବ ଅକ୍ରୂର ସଙ୍ଗତରେ ଘେନିଥିଲେ ।
ବାହାର ହୋଇଲେ ତହୁଁ ବସୁଦେବ ବୀର
ଏଥୁଅନ୍ତେ ଶୁଣ ତୁମ୍ଭେ ଆନ ସମାଚାର ।
ସଜ ହୋଇଲେ ରୋହିଣୀ ଆଉ କାମପାଳ
ଦ୍ୱାରକା ବାସୀଏ ସଙ୍ଗ ହୋଇ ଏକମେଳ
ଶ୍ରୀକୃଷ୍ଣଙ୍କର କୁମର ଶାମ୍ବ ଗଦ ମୂଳେ
ଆପଣେ ସଜ ହୋଇଲେ ଦେବ ଚକ୍ରଧରେ
ସମସ୍ତେହିଁ ଏକମେଳ ହୋଇଣ ଚଳିଲେ
ଉଦ୍ଧବ ଅକ୍ରୂରଙ୍କୁ ସେ ଆଗେ ଚଳାଇଲେ ।
ଘଣ୍ଟା ଆବର ମହୁରି ବାଜେ ଘନ ଘନ
ଢୋଲ କାହାଳୀ ବାଜଇ ବିଜେଘୋଷମାନ ।
କୃଷ୍ଣର କୁମରମାନେ ରଥରେ ଚଢ଼ିଲେ
ତାଳଧ୍ୱଜ ରଥେ କାମପାଳ ଆରୋହିଲେ ।
ଗରୁଡ଼ଙ୍କୁ ସୁମରଣା କଲେ ମଧୁହାସ
ବିନତାର ନନ୍ଦନ ଯେ ଆଗେ ଆସି ମିଳି ।
ଗରୁଡ଼ ପିଠିରେ ବିଜେ କଲେ ଭଗବାନ
ରହସ୍ୟ ଦ୍ୱାରକାପୁରେ ଯାନ୍ତି ଜନାର୍ଦ୍ଦନ ।
ତତକ୍ଷଣେ ତହିଁ ଯାଇ ହୋଇଲେ ପ୍ରବେଶ
ତକ୍ଷଣେ ବାର୍ତ୍ତା ପାଇଲେ ସୁନନ୍ଦର ଶିଷ୍ୟ ।
ଉଗ୍ରସେନ ନୃପତିଙ୍କୁ ଦେଖି ନନ୍ଦରାୟେ
ଆପଣାର ଶିରପରେ ନଜେ କର ଥୋଏ ।
ଶ୍ରୀରାମ କୃଷ୍ଣ ନନ୍ଦଙ୍କୁ କଲେ ନମସ୍କାର
କୃଷ୍ଣର କୁମରମାନେ ନମନ୍ତି ପଯୁର ।
ଉଦ୍ଧବ ଅକ୍ରୂର ଦୁହେଁ ଓଳଗି ହୋଇଲେ
ସାତବଂଶ ଯଦୁଗଣେ ନନ୍ଦ ମାନ୍ୟ କଲେ ।
ଯେ ନନ୍ଦଙ୍କୁ ରାମକୃଷ୍ଣ କରୁଛନ୍ତି ମାନ୍ୟ
ଯାଦବ ବଂଶରେ କିଏ ଅଛଇ ଅମାନ୍ୟ ।
ମାନ୍ୟ ଗଉରବ ଆଦି ସମସ୍ତ ସାରିଲେ
ଏହିବେଳେ ବସୁଦେବ ଯାଇଁ ପ୍ରବେଶିଲେ ।
ଦୁହେଁ ଯାଇ ଏକାବେଳେ କୋଳ କରିଦ୍ୟନ୍ତି
ପରସ୍ପର କୋଳାଗ୍ରତେ ହରଷ ଲଭନ୍ତି ।
ନନ୍ଦ ବୋଇଲେ ସ୍ନେହେ ମିତ୍ର ଶୁଣ ମୋ ବଚନ
ପଞ୍ଚଭୂତ ଆତ୍ମାରେ ମୁଁ ଲଭିଲି କାରଣ ।

ତୁମ୍ଭର ପ୍ରସାଦେ ଆଜ ପ୍ରଜା ମୁଁ ପାଳିଲି
ଏତେକ ସମ୍ପତ୍ତି ମୁହିଁ ପୂର୍ବେ ଅର୍ଜିଥିଲି ।
ସାତ ବଂଶ ଯାଦବଙ୍କୁ ଘେନି ଉଗ୍ରସେନ
ଆପଣେ ଆସି ଅଛନ୍ତି ମୋହର ଭୁବନ ।
କୃଷ୍ଣ ବାମପାଳ ଛନ୍ତି ତାହାଙ୍କ ସଙ୍ଗର
ଆବର ଅଛନ୍ତି ରାମକୃଷ୍ଣଙ୍କ କୁମର ।
ନନ୍ଦରାଜା ଏସନକ ବଚନ ବୋଇଲା
ଅଶ୍ରୁଜଳ ତାହାଙ୍କର ନୟନୁ ଝରିଲା ।
ଉଗ୍ରସେନ ହସ୍ତେ ଧରି ନନ୍ଦ ନୃପବର
ଆପଣା ଭୁବନେ ଘେନି ଗଲେ ଧାଡିକାର ।
ସୁଦିବ୍ୟ ଆସନେ ତାଙ୍କୁ ବସାଇଲେ ନେଇ
ଯେଉଁ ଆସନ ସୁଧର୍ମା ସଭା ମନ ମୋହି ।
ଆପେ ବିଶ୍ୱକର୍ମା ଯାହା କରିଛି ଗଠନ
ଯେଉଁଠାରେ ବିଜେ କରିଛନ୍ତି ନାରାୟଣ ।
ପଟାନ୍ତର ଦେବାପାଇଁ ତ୍ରିଭୁବନେ ନାହିଁ
ପୁର ଦେଖି ଉଗ୍ରସେନ ପ୍ରଶଂସା କରଇ ।
ନଗରଯାକ ନୃପତି ବୁଲାଣ ଦେଖିଲା
ସେ ପୁରକୁ ଦେଖି ରାଜା ମୋହମାନ ହେଲା
ଭିତରକୁ ବିଜେ କଲେ ଦେବ ଶିବପତି
ସଙ୍ଗତରେ ପୁତ୍ରମାନେ ଗୋଡ଼ାଇ ଅଛନ୍ତି ।
ଯଶୋମତୀଙ୍କି ଦେଖିଣ ରାମ ଦାମୋଦର
ବେଗେ ନମସ୍କାର କଲେ ମାତାଙ୍କ ପୟର ।
ରାମକୃଷ୍ଣ ପୁଅମାନେ ତାହାଙ୍କୁ ଦେଖିଣ
ସମସ୍ତେ ପ୍ରଣାମ କଲେ ତାହାଙ୍କ ଚରଣ ।
ତାଙ୍କର କଲ୍ୟାଣ ବାଞ୍ଛା କଲେ ନନ୍ଦରାଣୀ ।
ନାତିଙ୍କୁ ଦେଖି ଆନନ୍ଦ ଲଭିଲା ତରୁଣୀ ।
ଆନନ୍ଦରେ ଅଶ୍ରୁଜଳ ନୟନୁ ଗଳଇ
ମନମଧ୍ୟେ ଅତିଶୟ ଆନନ୍ଦ ଲଭଇ ।
କାଖରେ ବସାଇ ତାଙ୍କୁ ଘରେ ଘେନଗଲେ
ଅମୃତ ପଦାର୍ଥମାନ ନେଇ ଭୁଞ୍ଜାଇଲେ ।
ନନ୍ଦ ବସୁଦେବ ଉଗ୍ରସେନର ସହିତେ
ଆସ୍ଥାନରେ ବସିଛନ୍ତି ଯାଦବ ସମସ୍ତେ ।
ରାମ କୃଷ୍ଣେ ବୃଦ୍ଧି ବୋଲୁଛନ୍ତି ଯଶୋଦାଏ
ଏତେ ନବଶ ବାବୁରେ କଲ ଆଜଯାଏ ।
ଯେ ଦିନୁ ଅକ୍ରୂର ତୋତେ ମଥୁରାକୁ ନେଲା
ସେହିଦିନୁ ଦେଖିବାକୁ ଅପୂର୍ବ ହୋଇଲା ।

ଏହି ରାମ ଗୋପପୁରେ ଯାଇଥିଲେ ଯେବେ
ବୃନ୍ଦାବନ ମାଝ ରହି ଅଇଲେ ବହନେ ।
ଏତେଦିନେ ମୁଖଗୋଟି ଦେଖିଲି ଏଥର
ଏତେବଡ଼ କଷ୍ଟ ମୋତେ ଦେଲୁ ହଳଧର ।
ଏବେ ସିନା କଳାକାହ୍ନୁ ମୋର ଦୟାକଲା
ଉଦ୍ଧବ ଅକ୍ରୂରସହ ଗୋପେ ଯାଇଥିଲା ।
ମୋହର ଦୁଃଖ ଦେଖିଣ ସହି ନ ପାରିଲେ
ଗରୁଡ଼ ପୃଷ୍ଠେ ବସାଇ ଘେନିଣ ଅଇଲେ ।
ତୁମ୍ଭର ମୁଖ ଦେଖିଣ ଗଲା ମୋର ଦୁଃଖ
ଏବେ ସୁଖ ଭୋଗ ମୁହିଁ କରିବି ଅନେକ ।
ଏତେକ ଶୁଣି ଶ୍ରୀକୃଷ୍ଣ ଭିତରକୁ ଗଲେ
ସାତ୍ୟକିଙ୍କୁ ସଂଗେ ଘେନି ଭରତ ଅଇଲେ ।
ତାଙ୍କୁ ରାମଙ୍କ ଗୋଚରେ ଦେଲେ ତହୁଁ ନେଇ
ରାଇ ବଦେହୀଙ୍କ ଦେନଲେକ ହଳସାଇଁ ।
ଦେଖିକରି ବଳରାମ ସନ୍ତୋଷ ମନରେ
ସାତ୍ୟକିର ଦକ୍ଷହସ୍ତ ଧରିଣ ଶ୍ରୀକରେ ।
ନନ୍ଦର ସଭାକୁ ବିଜେ କଲେ ବଳରାମ
ଯାଇଣ ବସିଲେ ନନ୍ଦଙ୍କର ସନ୍ନିଧାନ ।
ସୁଭଦ୍ରାକୁ ଘେନି କୃଷ୍ଣ ଭରତ ଅଇଲେ
ସେହି ନନ୍ଦଙ୍କର ବାମ ପାର୍ଶ୍ୱରେ ବସିଲେ ।
ଉଗ୍ରସେନ ରାଜା ବସିଛନ୍ତି ଖଣ୍ଡେ ଦୂରେ
ନନ୍ଦ ବସୁଦେବ ବସିଅଛନ୍ତି ସେଠାରେ ।
ତାଙ୍କ ବାମପାର୍ଶ୍ୱେ ବସିଛନ୍ତି ହଳଧର
ରାଜା ବୋଲେ ବସିଛି ସେ କାହାର କୁମର ।
ବଳରାମ ବୋଇଲେ ଯା ପଗ୍ରରିଲ ରାଇଏ
ଏହି କୁମର ଅଟଇ ନନ୍ଦର ତନୟେ ।
କୃଷ୍ଣ ପାଶେ ବସିଅଛି ଯେବଣ ଦୁହିତା
ଭାଗ୍ୟ ବଶରୁ ଏହାକୁ ଦେଲେକ ବିଧାତା ।
ଦେଖିକରି ଉଗ୍ରସେନ ସନ୍ତୋଷ ଲଭିଲେ
ସେ ପୁତ୍ର କନ୍ୟାକୁ ବହୁ ଆଶୀର୍ବାଦ କଲେ
ଏସନ ବେଳେ ଆସ୍ଥାନ ଗୋଟି ମଉଳିଲା
ଉଗ୍ରସେନ ନରପତି ମେଲାଣି ମାଗିଲା ।
ଉଦ୍ଧବ ଅକ୍ରୂର ମୂଳେ ଉଠିଲେ ସମସ୍ତେ
ବସୁଦେବ ଉଠିଲେ ଯେ ତାହାଙ୍କ ସଙ୍ଗତେ
ଖଣ୍ଡେ ଦୂର ନନ୍ଦରାଜା ଅଇଲେ ଗୋଡ଼ାଇ
ବାହୁଡ଼ ସିବା ନମନ୍ତେ ତାଙ୍କୁ ଆଜ୍ଞା ଦେଇ ।

ଅଶେ ଥାଟ ଘେନ ସେହୁ ବାହୁଡ ଆସନ୍ତ
ଆପଣାର ମନ୍ଦିରରେ ଯାଇଣ ମିଳନ୍ତ ।
ଉଦ୍ଧବ ଅକ୍ରୂର ଆଜ୍ଞା ମାଗି ତହୁଁ ଗଲେ
ବସୁଦେବ ମନ୍ଦିରକୁ ବସୁଦେବ ଗଲେ ।
ସାତବଂଶର ଯେତେକ ଯଦୁପୁତ୍ର ମାନେ
ସମସ୍ତେହିଁ ଚଳିଗଲେ ଯେ ଯାହା ଭବନେ ।
ରାମକୃଷ୍ଣ ରହିଲେ ଯେ ନନ୍ଦର ମନ୍ଦିର
ସ୍ନାହାନ ଭୋଜନ ତହିଁ କଲେ ଦାମୋଦର ।
ଥୋକାଏ ଦିନ ପର୍ଯ୍ୟନ୍ତ ରହିଲେକ ତହିଁ
ବହୁତ ଆଦର କଲେ ନନ୍ଦ ନୃପସାଇଁ ।
ଶୁଣ ପରୀକ୍ଷିତ ରାଜା ଉତ୍ତରା କୁମର
ସାବଧାନ ହୋଇ ଶୁଣ ହରିବଂଶ ଗିର ।
ବସୁଦେବ ଯାଇ ନିଜପୁରେ ବିଜେ କଲେ
ଦେବକୀ ଆଗେ ସକଳ ଚରିତ କହିଲେ ।
ବୋଲନ୍ତ ଆଗୋ ସଖି ତୁ ସାବଧାନେ ଶୁଣ
ଅପୂର୍ବ କଥା ଦେଖିଲୁଁ ଆମ୍ଭେ ଏହିକ୍ଷଣ ।
ଗୋପ ବୃନ୍ଦାବନେ କୃଷ୍ଣଚନ୍ଦ୍ର ଯାଇଥିଲ
ଗରୁଡ଼େ ବସାଇ ନନ୍ଦ ଯଶୋଦା ଆଣିଲ ।
ଆବର ଆଣିଲ ଷୋଳ ସହସ୍ର ଗୋପୀଙ୍କି
ଚନ୍ଦ୍ରସେଣା ଗରୁଡ଼କୁ ଆଣିଅଛୁ ହାକି ।
ବରୁଣକୁ କୃଷ୍ଣ ଯାଗା ଖଣ୍ଡିଏ ମାଗିଲ
ବିଶ୍ୱକର୍ମାକୁ ହକାରି ନଗ୍ର ତୋଳାଇଲ ।
ଗୋପ ନଗରେ ଯେପରି ଥିଲାକ ଆବାସ
ତହୁଁ ଶତଗୁଣେ ଗଢ଼ାଇଛୁ ତୋର ଶିଷ୍ୟ ।
ଗୋପୀଙ୍କ ନିମନ୍ତେ ଭିନ୍ନ ଭିନ୍ନ ଗଢ଼ାଇଛୁ
ଦେବଙ୍କୁ ଦୁର୍ଲ୍ଲଭ ପୁର ଶୋଭା ପାଉଅଛୁ ।
ଦ୍ୱାରକାଠୁଁ ଶତେ ଗୁଣେ ହୋଇଛୁ ସୁନ୍ଦର
ପଟାନ୍ତର ଦେବାପାଇଁ ନାହିଁ କବିପୁର ।
ଦେଖି ମନ ବଡ଼ ମୋର ସନ୍ତୋଷ ହୋଇଲା
ଆସିବା ପାଇଁ ସେଠାରୁ ମନ ନ ବଳିଲା ।
ଅବସରରେ ବସନ୍ତ ବହୁଛି ସେ ପୁରେ
ଅମର ବାରସ୍ତ୍ରୀ ତ ନୁହେଁ ତା ସଙ୍ଗରେ ।
ପୁରୁଷ ମାନେ ଦିଶନ୍ତି କାମଦେବ ପ୍ରାୟେ
ସ୍ତ୍ରୀମାନଙ୍କର ରୂପ ସାମାନ୍ୟ ଯେ ନୋହେ ।
ଆଦ୍ଭୁତ କଥା ଗୋଟିଏ ଦେଖିଲଇଁ ସତ୍ୟ
ନନ୍ଦର ପୁତ୍ର ଦୁହିତା ଦୁଇ ହୋଇଛନ୍ତି ।
ବାଳକ ବାଳିକା ବୃଦ୍ଧକାଳେ ଜନ୍ମି ଛନ୍ତି
ଦେଖିକରି ଆଶ୍ଚର୍ଯ୍ୟ ମୁଁ ମଣିଲି ସୁଦନ୍ତି ।
ଶୁଣି ଟହ ଟହ ହୋଇ ଦେବକୀ ହସିଲେ
ଅପୂର୍ବ ଚରିତ ଯହୁଁ ସ୍ୱାମୀଠୁଁ ଶୁଣିଲେ ।
ଶୁକମୁନି ବୋଇଲେ ହେ ପରୀକ୍ଷ ନୃସାଇଁ
ଶ୍ରୀହରି ବଂଶ ପୁରାଣ ଶୁଣ ମନଦେଇ ।
ନନ୍ଦରାଜା ପୁରେ ରାମକୃଷ୍ଣ ରହିଥିଲେ
ନନ୍ଦଙ୍କୁ ମେଲାଣି ମାଗି ବାହାର ହୋଇଲେ ।
ଯଶୋଦା ବୋଇଲେ ତୁମ୍ଭେ ଶୁଣ ହଳଧର
ସାତ୍ୟକକୁ ନିଅ ବାପ ତୁମ୍ଭ ସଙ୍ଗତର ।
ବିଦ୍ୟା ଶିଖାଅ ଏହାକୁ ତୁମ୍ଭେ ସଙ୍ଗେ ନେଇ
ଏହାର ସହାୟ ହେବ ତୁମ୍ଭେ ଦୁଇଭାଇ ।
ଗୋପାଳ କୁଳରେ ଏହୁ ଲଭିଛୁ ଜନମ
ଗୌଡ଼ ବାଉତ ହାଉତ ବୋଲି ତିନି ନାମ ।
ଏହାକୁ ସଙ୍ଗରେ ଘେନିଥିବ ଦାମୋଦର
ଶସ୍ତ୍ର ଶାସ୍ତ୍ର ବିଦ୍ୟା ଯାକୁ ପଢ଼ପଢ଼ କର ।
ଯଶୋଦାଙ୍କର ମୁଖରୁ ଏସନକ ଶୁଣି
ସନ୍ତୋଷ ଚିତ୍ତେ କହନ୍ତି ଦେବ ହଳପାଣି ।
ହଳୀ ବୋଲନ୍ତିମାତା ଗୋପାହା ଆଜ୍ଞାଦେଲେ
ସାତ୍ୟକକୁ ଘେନି ଯାଉଅଛୁ ସଙ୍ଗତରେ ।
ସାତ୍ୟକର ହସ୍ତ ଧରି ରଥେ ବସାଇଲେ
ଆପେ ହଳପାଣି ତାଳଧ୍ୱଜ ଚଳାଇଲେ ।
ଗରୁଡ଼ ପିଠରେ ବିଜେ କଲେ ନାରାୟଣ
ଶ୍ରୀକୃଷ୍ଣ କ୍ରମରେ ରଥ ଚଢ଼ିଲେ ବହନ ।
ନନ୍ଦ ରାଜାକୁ ଓଳଗି ହେଲେ ରାମ ହରି
ଆପଣାର ନଗରକୁ ତହୁଁ ବିଜେ କରି ।
ସାତ୍ୟକକୁ ଶସ୍ତ୍ର ଶାସ୍ତ୍ର ବିଦ୍ୟା ଶିଖାଇଲେ
ଦ୍ୱାରକା ପୁରେ ସାତ୍ୟକି ନିଷ୍ଠିନ୍ତେ ରହିଲେ
ନନ୍ଦ ରହିଲେ ରହସ୍ୟ ଦ୍ୱାରକା ପୁରରେ
ଦିନେ ବସୁଦେବ ପାଶେ ଦେବକୀ କହିଲେ
କଥା ଗୋଟିଏ ତୁମ୍ଭରେ ଜଣାଉଛି ମୁହିଁ
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ ।
ନନ୍ଦ ଯଶୋଦା ଦେଖିବା ପାଇଁ ମୋର ମନ
ଏଣୁ ତୁମ୍ଭରେ ଜଣାଉଅଛୁ ମୁଁ ବଚନ ।
ବାଳକାଳେ ପୁତ୍ର ମୋର ତାଙ୍କ ପାଶେ ଥିଲେ
ଆଜ୍ଞା ଦେଲେ ମୁହିଁ ନାଥ ଯିବଇଁ ତତ୍କାଳେ ।

ବାଳକାଳେ ଯଶୋଦା ସଙ୍ଗତେ ମୋର ପୁଣି
ଯମୁନାକୂଳରେ ହୋଇଥିଲୁଁ ସଙ୍ଗୀଭୁଣୀ ।
ଅପାର କାଳରୁ ଦେଖି ନାହିଁ ସଙ୍ଗାତଙ୍କୁ
ସେଥିଯୋଗେ ମୁହିଁ କହୁଅଛଇ ତୁମ୍ଭଙ୍କୁ ।
ଦଇବ ଯୋଗେ ଆମ୍ଭର ସନ୍ନିଧେ ଅଇଲେ
ଥରେ ଯାଇଣ ସମ୍ଭୋଳି ଆସିବଇଁ ଭଲେ ।
ସେ କଥାରେ ବସୁଦେବ ହୋଇଲେ ସମ୍ମତ
କାଲି ଯିବାର ନିମନ୍ତେ କହିଲେ ତ୍ୱରିତ ।
ଏମନ୍ତ ପ୍ରକାରେ ହେଉଁ ରଜନୀ ପାହାନ୍ତ
ନିତ୍ୟକର୍ମ ସମସ୍ତହିଁ ସାରିଲେ ତୁରନ୍ତ ।
ବେଶ ଭୂଷା କର୍ମମାନ ସାରିଲେ ଯୁକତ
ଯିବାକୁ ସଜ ହୋଇଲେ ଶ୍ରୀକୃଷ୍ଣଙ୍କ ମାତ ।
ଏସନକ ବାରତାକୁ ପାଇ ଇନ୍ଦୁମତୀ
ଉଗ୍ରସେନ ନୃପତିଙ୍କି ଯାଇ ଜଣାବନ୍ତି ।
ମୋହର ମନ ବଳଇ ଯିବାକୁ ତହିଁକି
ଉଗ୍ରସେନ ବୋଲେ ତୁ ଗୋ ଯାଅ ପ୍ରିୟସଖି
ମାଆଝିଅ ଦୁଇଜଣ ଗଲେ ହାନ୍ଦୋଳାର
ଦାସୀ ପରିବାରି ସଙ୍ଗେ ଅଛନ୍ତି ଅପାର ।
ରହସ୍ୟ ଦ୍ୱାରକାପୁରେ ଚଳାଇଣ ଗଲେ
ଭୃଙ୍ଗୁଙ୍ଗିପୁ ପାଇକ ଯେ ବାଟ କଢ଼ାଇଲେ ।
ଶୁଣ ପରୀକ୍ଷିତ ରାଜା ଅର୍ଜୁନର ନାତି
ମଥୁରା ମଙ୍ଗଳ ଶୁଣି ହୁଅସି ମୁକତି ।
ଇନ୍ଦୁମତୀ ଦେବକୀ ଏ ତ୍ୱରିତ ଚଳିଲେ
ରହସ୍ୟ ଦ୍ୱାରକାପୁରେ ପ୍ରବେଶ ହୋଇଲେ ।
ବାରତା ପାଇଣ ନନ୍ଦ ରାଜାଙ୍କର ରାଣୀ
ନେବା ନିମନ୍ତେ ବାଟକୁ ଅଇଲେ ତରୁଣୀ ।
ଗଉରବେ ସେ ଦୁହିଁଙ୍କି ମାନ୍ୟ ଧର୍ମ କଲେ
ଦୁଃଖ ସୁଖ କଥା ବର୍ତ୍ତା ସେଠାରେ ହୋଇଲେ
କେତେ କଷ୍ଟ ଦେଲା ଗ୍ରଇ କଂସ ନୃପମଣି
ଛଅଗୋଟି ପୁତ୍ର ମୋର କରିଛିଲା ପୁଣି ।
ଗର୍ଭର ମଧ୍ୟରୁ ମୋର ସଂକର୍ଷଣ ଗଲା
ଦଇବ ପୁରୁଷ ସିନା ଏହା ମୋତେ ଦେଲା
ଏମନ୍ତେଣ ସାତଗର୍ଭ ହେଲା ମୋର ନାଶ
ବିକଳ ହୋଇ ସ୍ୱେରାଇ ନେଲେ ଏକଶିଷ୍ୟ
ସ୍ୱୈରକର ବସୁଦେବ ତୋ ପୁରେ ଥୋଇଲେ
ପାଲଟାଇଣ ଦୁହିତା ଗୋଟିଏ ଆଣିଲା

ସେ କନ୍ୟାକୁ ଉପରୋଧ ନ କଲା ପାପିଷ୍ଠ
ଦର୍ପଣ ଶିଳାରେ ନେଇ କରିଛିଲା ଦୁଷ୍ଟ ।
ଏମନ୍ତ ପ୍ରକାରେ ଅଷ୍ଟବର୍ଷ ଗଲା ବହି
ବାର୍ତ୍ତା ପାଇଣ ସେ କଂସ ଆଣେ ହକରାଇ ।
ଦଇବ ବଳରେ ପୁଣି ସେହୁ ନାଶ ଗଲା
କର୍ମର ଲିଖନ କେହ୍ନେ ଅନ୍ୟଥା ନୋହିଲା ।
ଦେବକୀର ତହୁଁ ଏସନକ କଥା ଶୁଣି
ମନ ମଧ୍ୟରେ ବିଚାର କରଇ ତରୁଣୀ ।
ଦେବକୀ ଦେବୀର ଗର୍ଭୁ କୃଷ୍ଣ ଜନମିଲା
ରୋହିଣୀ ଗର୍ଭରୁ ବଳରାମ ଜାତ ହେଲା ।
ରାମ କୃଷ୍ଣଙ୍କର ମାତା ହୋଇଲେ ଏ ଦୁହେଁ
ରାମ କୃଷ୍ଣ କେଉଁପରି ହେଲେ ମୋର ପୁଏ
ଅଷ୍ଟ ବରଷ ପର୍ଯ୍ୟନ୍ତ ଧର୍ମରେ ପାଳିଲି
କାହାର ପୁତ୍ର ବୋଲିଣ ବିଚାର ନ କଲି ।
ଦଇବ ପୁରୁଷ ମୋତେ ଦେଖାଇ ଭଣ୍ଡିଲା
ସୁନାପରି ଫୁଲ ପୁଣ ଅଗାଢ଼ ହୋଇଲା ।
ମୋର ପୁତ୍ର ବୋଲି ଜାଣିଥିଲି ନନ୍ଦରାଣୀ
ଦେବକୀର ପୁତ୍ର ବୋଲି ଜାଣିଲା ତରୁଣୀ ।
ଗୋପନୀୟ କଥା ଏହା କେହି ନ ଜାଣଇ
ଏବେ ବାରତା ପାଇଲା ଦେବକୀର ଠାଇଁ ।
ଫିଟାଇ ନ କହି ମନେ ବିକଳ ହୋଇଲା
ପ୍ରକାଶ ନ କରି କଥା ଗୋପନେ ରଖିଲା ।
ସେମାନେ କଥାବାରତା ହୋଇବାର ବେଳେ
ଗୋଟିଏ ଗୋଟିଏ ହୋଇ ମିଳିଲେ ସକଳେ ।
ରାଧିକା ସୁନ୍ଦରୀ ତହିଁ ପାଇଣ ବାରତା
ତତକ୍ଷଣେ ତାଙ୍କପାଶେ ମିଳିଲେ ବନିତା
ଚହଳ ଗହଳ ହେଲା ତାହାଙ୍କ ଗୃହର
ଭକ୍ତିଭରେ ରାଧା ତାଙ୍କୁ କଲେ ନମସ୍କାର ।
ଗୋପୀମାନଙ୍କ ଚହଳ ଗହଳକୁ ଦେଖି
ବିଚାରନ୍ତି ମନମଧ୍ୟେ ଦେବକୀ ସୁମୁଖୀ ।
ବସୁଦେବ କହିଥିଲେ ମୋହର ଆଗର
ତହୁଁ ଶତଗୁଣ ବେଶ ଏହାଙ୍କ ଶରୀର
ଦେବ ସ୍ତ୍ରୀଙ୍କ ପରିପ୍ରେ ଦିଶୁଅଛୁ ଦେହି
ସ୍ୱର୍ଗର ଦେବତା ସ୍ତ୍ରୀଙ୍କୁ ପଟାନ୍ତର ନୋହି ।
ଏରୂପେ କୃଷ୍ଣଙ୍କୁ ବାଳକାଳରେ ମୋହିଲେ
ଏହାଙ୍କ ରୂପକୁ କୃଷ୍ଣ ଭୁଲିବେ କି ଭଲେ ।

ଏହାଙ୍କ ମହିମା ଦେବତାଙ୍କୁ ଅଗୋଚର
ଇନ୍ଦ୍ର ମନ୍ତ୍ରୀ ଦେବଙ୍କ ଯେ କରନ୍ତି ବିଚାର ।
ରାଧା ରୂପକୁ କମଳା ନୋହେ କେବେ ସରି
ରୂପେ ସମ ନୋହେ ଶଙ୍କର ଭଗିନୀ କୁମାରୀ ।
ଗୋପୀଙ୍କର ରୂପ ଦେଖି ସନ୍ତୋଷ ଲଭିଲେ
ଯଶୋମତୀଙ୍କ ମେଲାଣି ତତ୍କ୍ଷଣେ ମାଗିଲେ ।
ଦୁଃଖ ସୁଖ କଥା କହି ହୋଇଲେ ବାହାର
ଯଶୋଦା ତାହାଙ୍କୁ ଦେଲେ ବହୁ ଉପହାର ।
ହାଣ୍ଡୋଳାରେ ବସି ମାଏ ଝିଅ ଚଳିଗଲେ
ଆପଣା ନଗରେ ଯାଇ ପ୍ରବେଶ ହୋଇଲେ ।
ଖଣ୍ଡେ ଦୂର ଯାଇ ଯଶୋବନ୍ତୀ ବାହୁଡ଼ନ୍ତି
ଏସନ ଚରିତମାନ ନନ୍ଦକୁ କହନ୍ତି ।
ନନ୍ଦରାଜା ଶୁଣି ମନେ ହରଷ ଲଭିଲେ
ଶ୍ରୀକୃଷ୍ଣଙ୍କୁ ମନମଧ୍ୟେ ଚିନ୍ତି ସୁମରିଲେ ।
ତାହାଙ୍କ ପ୍ରସାଦେ ମୋର ଏତେକ ସମ୍ପତ୍ତି
ଦୟାନିଧିନାଥ ଅଟେ କରୁଣା ବାରିଧି ।
ଗୋବିନ୍ଦ ସ୍ମରଣେ ମନେ ଦୁଃଖ ଜନମିଲା
ନେତ୍ରରୁ ଲୋତକ ଧାର ଗଳିଣ ପଡ଼ିଲା ।
ଏକମନେ ଶୁଣ ଭୂ ହେ ପରୀକ୍ଷିତ ନୃନାଥ
ନିଶ୍ଚିନ୍ତେ ରାଜ୍ୟ କରନ୍ତି ଜଗତ୍ ପଞ୍ଚଭୂତ ।
ସେ ପ୍ରଭୁଙ୍କ ପାଦପଦ୍ମେ ସଦା ମୋର ସେବା
ଅଚ୍ୟୁତ ଦାସ କବିଙ୍କ ଗତି ମୁକ୍ତି ଦେବା ।

———

## କୃଷ୍ଣଙ୍କର ଅର୍ଜ୍ଜୁନଙ୍କୁ ଦ୍ୱାରକାନୟନ

ଏଥୁଅନନ୍ତରେ କେତେଦିନ ବହିଗଲା
ବହୁ ପୁଷ ପୌଷୀ ରଙ୍ଗ ଅବଚାରେ ହେଲା ।
ପୁଷ ନାନ୍ତ ଦେଖି କୃଷ୍ଣ ମନେ ବିଚାରନ୍ତି
ନିରାକାରଙ୍କର କଥା ମନରେ ସ୍ମରନ୍ତି ।
ମକର ଶୁକଳ ପକ୍ଷ ତ୍ରୟୋଦଶୀର ଦିନ
ମନେ ମନେ ବିଚାର କରନ୍ତି ନାରାୟଣ ।
ଏତେକାଳେ ଯୁଗଶେଷ ହୋଇଲାକ ଆସି
ନିରାକାର କଥା ମନମଧ୍ୟେ ଆସି ପଶି ।
ଆଜ୍ଞା ଦେଇଅଛନ୍ତି ଯେ ଆସିବ ସତ୍ୱର
ନ ଗଲେ କୋପିବେ ନିରଞ୍ଜନ ନିରାକାର ।
ଅର୍ଜ୍ଜୁନ ଆସିବା ପାଇଁ କହିଥିଲେ ମୋତେ
ସେହି କଥା ଗୋଟି ମନେ ନାହିଁ ମୋ କହୁଁତେ
ଏସନକ ପରକାରେ ଭାଳି ନାରାୟଣ
ପକ୍ଷୀରାଜ ଗରୁଡ଼ଙ୍କୁ କରନ୍ତି ସ୍ମରଣ ।
ରମ୍ୟକେ ଥାଇ ଜାଣିଲେ ତାହା ଖଗେଶ୍ୱର
ନାରାୟଣ ସୁମରନ୍ତେ ହୋଇଲା ବାହାର ।
କୁଶସ୍ଥଳୀ ଦ୍ୱାରକାରେ ପ୍ରବେଶ ହୋଇଲା
ବେଗେ ଯାଇ ଶ୍ରୀକୃଷ୍ଣଙ୍କୁ ଦରଶନ କଲା ।
ଶିରେ କର ଦେଇଣ ସେ ବୋଲନ୍ତି ବଚନ
କିମର୍ଥେ ମୋତେ ସ୍ମରଣ କଲ ଭଗବାନ ।
ଗୋବିନ୍ଦ ବୋଲନ୍ତି ଶୁଣ ବିନତାର ସୁତ
ତୋହର ଆଗେ କହିବା ଗୁପତ ବୃତ୍ତାନ୍ତ ।
ହସ୍ତିନା ନଗରେ ଯେଉଁ ପାଣ୍ଡବେ ଅଛନ୍ତି
ଆମ୍ଭର ପ୍ରାଣର ସଖା ସେମାନେ ଅଟନ୍ତି ।
ଅପାରଦିନ ହୋଇଲା ମୁହିଁ ଛାଡ଼ିଲି ବାବା
ଚାଲ ଯିବା ସେମାନଙ୍କୁ ସଙ୍ଗେ ଘେନି ଆଣିବା ।
ମକର ଶୁକଳପକ୍ଷ ଏକାଦଶୀ ଦିନ
ହସ୍ତିନା ଯିବାକୁ ସଜ ହେଲେ ଜନାର୍ଦ୍ଦନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ
ଗରୁଡ଼ ପିଠିରେ ବିଜେ କଲେ ନନ୍ଦପୋଇ ।
ସେ ଦିନ ହୋଇଅଛଇ ବ୍ରତ ଏକାଦଶୀ
ବାରୁଣାବନ୍ତ ପୁରକୁ ଯାନ୍ତି ବ୍ରହ୍ମରାଶି ।
ଖଗବରେ ବୃହିଁ ବୋଲୁଛନ୍ତି ଯୋଗେଶ୍ୱର
ନିମିଷକେ ପ୍ରବେଶିବୁ ବାରୁଣାବନ୍ତର ।
ଏତେକ କହିଣ ଦେବ ବାହାର ହୋଇଲେ
ନିମିଷ ମାତ୍ରକେ ଯାଇ ତହିଁ ପ୍ରବେଶିଲେ ।
ଗରୁଡ଼ ପିଠିରୁ ଓହ୍ଲାଇଣ ଦାମୋଦର
ଯୁଧିଷ୍ଠିରଙ୍କ ନଗରେ ଯାନ୍ତି ଧୀରି ଧୀର ।
ବାରତା ପାଇଲେ ଯୁଧିଷ୍ଠିର ମହାରାଣ
ଭିତରପୁରୁ ବାହାର ହୋଇଲେ ଆପଣ ।
ଖଣ୍ଡେ ଦୂରରୁ ଦେଖିଲେ ଜଗତଗୋସାଇଁ
ଯୁଧିଷ୍ଠିରଙ୍କ ଚରଣେ ଓଳଗନ୍ତି ଯାଇ ।
କଲ୍ୟାଣ କରନ୍ତି ତାଙ୍କୁ ଧର୍ମର ତନୟ
ଆମ୍ଭର କଲ୍ୟାଣେ ସୁସ୍ଥ ହେଉ ତୋର କାୟ
ବହୁ ଧନ ଧାନ୍ୟ ତୋତେ ହେଉ ସରପତ
କଲ୍ୟାଣ ବାଞ୍ଛନ୍ତି ଏହିରୂପେ ଧର୍ମ ସୁତ ।
ସମାର୍ଜ୍ଜୁନ ନକୁଳ ଯେ ଆଉ ସହଦେବ
ବାରତା ପାଇଲେ ଆସିଛନ୍ତି ପଦ୍ମନାଭ ।

ସେହି ସ୍ୱର ଶୁଣି ଧାଇଁ ଆଇଲେ ନନ୍ଦନ
ଦେଖିଲେ ବିଜୟ କରିଛନ୍ତି ଜନାର୍ଦ୍ଦନ ।
ଶଙ୍ଖ ଚକ୍ର ଗଦାପଦ୍ମ ଚତୁର୍ଭୁଜ ହୋଇ
ଉଭା ହୋଇଣ ଅଛନ୍ତି କମଳାର ସାଇଁ ।
ଭାରତ ଆସିଣ ତାଙ୍କ ଚରଣେ ନମିଲେ
ନାରଦପୁଣ ତାହାଙ୍କର କଲ୍ୟାଣ ବାଞ୍ଛିଲେ ।
ଯୁଧିଷ୍ଠିର ଆଜ୍ଞା ଦେଲେ ଶୁଣ ସହଦେବ
ଆମ୍ଭର ପୁରକୁ ବିଜେ କଲେ ପଦ୍ମନାଭ ।
ଗଙ୍ଗାମାର ଝରରେ ତୁ ବେଗେ ଆସ ଘେନି
ଗୋବିନ୍ଦ ଚରଣ ଧୋଇଦିଅ ଶୁଣି ତନ ।
ଆଜ୍ଞା ପାଇ ସହଦେବ ତ୍ୱରା ହୋଇଗଲା
ଗଙ୍ଗାମାର ଘେନିଣ ସେ ନନ୍ଦନ ଆଇଲା ।
ସହଦେବ ବାରି ବେଗେ ପାଣି ଢାଳି ଦେଇ
ଅର୍ଜ୍ଜୁନ କୃଷ୍ଣ ଚରଣ ଧଉତ କରଇ ।
ଝୀନ ବାସ ଘେନି ପାର୍ଥ ପୋଛଇ ପୟର
ଚରଣ ଉଦକ ନେଇ କ୍ଷେପନ୍ତି ଉଦର ।
ଶ୍ରୀପଦ୍ମରେ ବିଜେ କଲେ ପ୍ରଭୁ ଦାମୋଦର
ହସ୍ତ ଧରି ବସାଇଲେ ସୁବର୍ଣ୍ଣ ଖଟର ।
ଯୁଧିଷ୍ଠିର ଆଜ୍ଞା ଦେଲେ ସହଦେବେ ଚାହିଁ
ମାତାଙ୍କ ଅଗ୍ରେ ଜଣାଇ ଆସ ତୁମ୍ଭେ ଯାଇ ।
ବୋଲିବ ଆମ୍ଭ ପୁରକୁ ବିଜେ ଜନାର୍ଦ୍ଦନ
ମଣୋହି ସାମଗ୍ରୀ ଯେହ୍ନେ କରନ୍ତୁ ବହନ ।
ଏହା ଶୁଣିଣ ନକୁଳ ଶୀଘ୍ରେ ଚଳିଗଲା
ଭିତର ପୁରେ ମାତାଙ୍କୁ ନମସ୍କାର କଲା ।
ଶିରେ କର ଦେଇଣ ସେ ବୋଲନ୍ତି ବଚନ
ଆମ୍ଭ ପୁରେ ବିଜେ କଲେ ଦେବ ଜନାର୍ଦ୍ଦନ
ମଣୋହି ସାମଗ୍ରୀମାନ ଭିଆଅ ସତ୍ୱର
ମୋତେ ହକାରିଣ ଆଜ୍ଞା ଦେଲେ ନୃପବର ।
ଏହା ଶୁଣିଣ ଉସତ ହୋଇଲେ କୁଇନ୍ତା
ସଙ୍ଗୁଳ ଅଇଲେ ଏତେକାଳେ ଜଗଜ୍ଜିତା ।
ଦ୍ରୌପଦୀକି ଆଜ୍ଞା ଦେଲେ ଭୋଜର ନନ୍ଦନୀ
ବେଗେ ତୁମ୍ଭେ ରନ୍ଧନ ଗୋ କର ଯୋଷାମଣି
ଗୋବିନ୍ଦ ଆସି ଅଛନ୍ତି ଆମ୍ଭଭବନକୁ
ଉତ୍ସୁର ହେଉ ଅଛଇ ମଣୋହି ବେଳକୁ ।
ଶୁଣିଣ ଦ୍ରୌପଦୀ ଦେବୀ ବଡ଼ ହରଷରେ
ସ୍ନାନ କରିଣ ପଶିଲେ ରନ୍ଧଣା ମନ୍ଦିରେ ।

ଷଡ଼ରସ ବ୍ୟଞ୍ଜନାଦି ରନ୍ଧି ଯୋଷାମଣି
କୁଇନ୍ତାଙ୍କର ସମ୍ମୁଖରେ ମିଳି ତତକ୍ଷଣି ।
ଏହା ଶୁଣି କୁନ୍ତୀଦେବୀ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଆସ୍ଥାନ ପାଶର ।
କୁଇନ୍ତାଙ୍କୁ ଦେଖିକରି ଉଠି ଚକ୍ରପାଣି
ତାଙ୍କ ଚରଣେ ନମନ୍ତି ଭକତିରେ ପୁଣି ।
କଲ୍ୟାଣ କରିଣ ତାଙ୍କୁ ବୋଲନ୍ତି କୁଇନ୍ତା
ଅଇଲୁ ସଙ୍ଗୁଳ ଏତେକାଳେ ଜଗଜ୍ଜିତା ।
ପଞ୍ଚ ପାଣ୍ଡବ ତୋହର ଚରଣ ଆଶ୍ରିତ
ଯାଙ୍କୁ ନିରାଶ କରିବା ନୁହଇ ଉଚିତ ।
ସର୍ବେ କହନ୍ତି ପାଣ୍ଡବେ ଜଗନ୍ନାଥ ଭୃତ୍ୟ
ଦୁର୍ଯ୍ୟୋଧନେ ରାଜ୍ୟଦେଇ ହୋଇଲେ ନିଶ୍ଚିନ୍ତ
କୁଇନ୍ତାଙ୍କର ମୁଖରୁ ଏସନକ ଶୁଣି
ପଦ୍ମ ମୁଖେ ହସି ବଦନ୍ତି ଚକ୍ରପାଣି ।
କିଛି ଚିନ୍ତା ତୁମ୍ଭେ ଗୋ ନକର ଏଥିପାଇଁ
ଅଧର୍ମରେ ନାଶ ଯିବେ ଗାନ୍ଧାରୀ ତନୟି ।
ଦୁଷ୍ଟଜନ ପାଇଁ ମୋର ଲୀଳା ଅବତାର
ସଭିଙ୍କର ଏହି ଚକ୍ରେ ଛେଦିବଇଁ ଶିର ।
ଅର୍ଜ୍ଜୁନର ହସ୍ତେ ମୁହିଁ ଯଶ ଦିଆଇବି
ନିଶ୍ଚୟ ତା ଯୋଗେ ବଂଶ ନାଶ କରାଇବି ।
ସେ ମଲେ ପୃଥିବୀଭାର ଉଶ୍ୱାସ ହୋଇବ
ମହାଭାରତ ସମର ନିକଟରେ ହେବ ।
ପଞ୍ଚକଟକେ ତୋ ପୁତ୍ର ହେବେ ଅଧିପତି
ନ ମାଇଲେ ଉଶ୍ୱାସ ତ ନୋହେ ବସୁମତୀ ।
ମାନଗୋବିନ୍ଦର ବଂଶ ହୋଇବ ବିନାଶ
ମାତାଙ୍କୁ ପ୍ରବୋଧ ଦେଲେ ନନ୍ଦଙ୍କର ଶିଷ୍ୟ ।
ମଣୋହି କରିବା ପାଇଁ ରୁଚିଲ ଭଗବାନ
ଉତ୍ସୁର ହେଉ ଅଛଇ ଉଠ ଜନାର୍ଦ୍ଦନ ।
ପାଞ୍ଚଭାଇଙ୍କୁ ଘେନିଣ ପ୍ରଭୁ ବ୍ରହ୍ମଋଷି
ମଣୋହି ସ୍ଥାନରେ ବେଗେ ବିଜେକଲେଆସି ।
ଖଗବର ଅଛଇ ଯେ ଗୋବିନ୍ଦ ସମ୍ମୁଖର
ମଣୋହିକି ବିଜେକଲେ ଦେବ ଦାମୋଦର
ସୁବର୍ଣ୍ଣ ଥାଳୀରେ ମାତା ଓରସ୍ନା ପୂରାଇ
ସୁବାସିତ ଗବ୍ୟଘୃତ ତହିଁରେ ପକାଇ ।
ଚଉରାଶୀ ବିଅଣ ଯେ ପରଷନ୍ତି ମାୟେ
ନାନାବିଧ ଫଳ ଆଉ ସୁଧା ପାଣି ଦିଏ ।

ସନ୍ତୋଷରେ ଭୋଜନକୁ କରି ଚକ୍ରପାଣି
ଯାହା ରନ୍ଧନ କରିଛନ୍ତି ଦ୍ରୁପଦ ନନ୍ଦନୀ ।
ଭୋଜନ ସମ୍ପୂର୍ଣ୍ଣ ହନ୍ତେ ଉଠିଲେ ମାଧୋଇ
ବାସ ପାଣିରେ ଶ୍ରୀମୁଖ ଧୋଇଲେକ ଯାଇ ।
ଝୀନ ବସନ ଘେନିଣ ଶ୍ରୀମୁଖ ପୋଛିଲେ
କର୍ପୂର ବଡ଼ଆ ପାନ ଆନନ୍ଦେ ଭୁଞ୍ଜିଲେ ।
ଗଉରବ ପାଇ ରହିଲେକ ଦିନା ତିନ
ଅର୍ଜୁନେ ବୁଦ୍ଧିଁ ବୋଲନ୍ତି ଦେବ ଚକ୍ରପାଣି ।
ପୂର୍ବର କଥା ଗୋଟିକ ପାସୋରିଲୁ କିମ୍ବା
ପାତାଳପୁର ବାରତା ତୋର ମନେ ନାହିଁ ।
ଗୁପତ କଥା କହିଲେ ଯହୁଁ ଦାମୋଦର
ପାସୋରିଥିଲି ବୋଲି ସେ ଯୋଡ଼ି ବେନିକର
ଯୁଧିଷ୍ଠିରଙ୍କ ମୁଖକୁ ଗୋବିନ୍ଦ ଚାହିଁଲେ
କରପଦ୍ମ ଯୋଡ଼ି ଅଗ୍ରତରେ ଜଣାଇଲେ ।
ଦ୍ୱାରକା ପୁରକୁ ଯିବି ନ ପାରିବି ରହି
ତେଣେ ମୋତେ ଲୋଡ଼ିବେଣି ରେବତୀର ସାଇଁ
ତହୁଁ ଯୁଧିଷ୍ଠି ବୋଇଲେ ବିଳମ୍ବ ନକର
ମୋତେ ତୁ ନ ପାସୋରିବୁ ଦେବ ଦାମୋଦର
ଗୋବିନ୍ଦ ବୋଇଲେ ତୁମ୍ଭେ ମୋର ପଞ୍ଚଭୂତ
ପିଣ୍ଡ ଥାଏ ଦ୍ୱାରକାରେ ପ୍ରାଣ ତବାଶ୍ରିତ ।
ଏହା ଶୁଣି ଯୁଧିଷ୍ଠିର ଆନନ୍ଦିତ ହେଲେ
ଯାଅ ବୋଲିଣ ତାହାଙ୍କୁ ହସ୍ତ ଠାରିଦେଲେ ।
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ଯିବେ ମୋର ସଙ୍ଗେ
ଆଜ୍ଞା ହୋଇଲେ ଅର୍ଜୁନ ଯିବେ ଏଥୁଁ ବେଗେ
ଯାଉ ବୋଲି ଆଜ୍ଞା ଦେଲେ ଯୁଧିଷ୍ଠିର ଗୁଣି
ହରି ଅର୍ଜୁନ ନମିଲେ ତାଙ୍କର ଚରଣ ।
ମାତାଙ୍କୁ ଓଳଗି ହୋଇ ବାହାରି ହୋଇଲେ
ଶୁଭେ ଯାଅ ବୋଲି କୁନ୍ତୀ ଆଜ୍ଞା ତହୁଁ ଦେଲେ
ଭୀମ ଯେ ନକୁଳ ସହଦେବ ତିନ ଭାଇ
ଗୋବିନ୍ଦ ଚରଣ ତଳେ ପଡ଼ିଲେକ ଶୋଇ ।
ଉଠ ଉଠ ବୋଲି ଆଜ୍ଞା ଦେଲେ ଚକ୍ରଧାରୀ
ଗରୁଡ଼ ପିଠିରେ ବିଜେ ପାର୍ଥ ହାତ ଧରି ।
ତିନ ନିଶ୍ୱାସେ ଅଇଲା ତହୁଁ ଖଗେଶ୍ୱର
ଶ୍ରୀକୃଷ୍ଣ ପ୍ରବେଶ ହେଲେ ଦ୍ୱାରକା ନଗର ।
ଗରୁଡ଼ ପୃଷ୍ଠୁ ଓହ୍ଲାଇ ହରି ପାର୍ଥ ବେନି
ଭିତରକୁ ବିଜେ କଲେ ଦେବ ଚକ୍ରପାଣି ।

ବାରତା ପାଇ ରୁକ୍ମିଣୀ ଆଉ ସତ୍ୟଭାମା
ଶ୍ରୀକୃଷ୍ଣଙ୍କ ଚରଣରେ ନମି ବେନି ବାମା ।
ଆଜ୍ଞା ଦେଲେ ଠାକୁର ଯେ ଶୁଣ ବେନି ସହି
ଆମ୍ଭର ପୁରକୁ ବିଜେ ଅର୍ଜୁନ ସାରଥିଁ ।
ମଣୋହର ବିଧି ଯେତେ ହୁଅଇ ବେଭାର
ଅତି ଭକ୍ତି ହୋଇ ତୁମ୍ଭେ ସବୁ ନିର୍ବାକର ।
ସତ୍ୟଭାମା ରୁକ୍ମିଣୀଙ୍କୁ ଦେଖିଣ ଅର୍ଜୁନ
ତ୍ୱରିତ ଯାଇ ତାଙ୍କର ବନ୍ଦିଲେ ଚରଣ ।
ଆଶୀର୍ବାଦ କଲେ ଶତ୍ରାଜିତର ତନୟି
ଅର୍ଜୁନଙ୍କୁ ଦେଖି ବାମା ହରଷ ହୁଅଇ ।
ତ୍ୱରିତ ରନ୍ଧନ କାର୍ଯ୍ୟକଲେ ସମ୍ପାଦନ
ଅର୍ଜୁନ ସଙ୍ଗେ ଭୋଜନ କଲେ ଜନାର୍ଦ୍ଦନ ।
ଏମନ୍ତ ପ୍ରକାରେ ତହିଁ କତୁ ଦିନ ଗଲା
ଦ୍ୱାରକାପୁରେ ଅର୍ଜୁନ ନିଶ୍ଚିନ୍ତେ ରହିଲା ।
ନମୋ ନମୋ ବାକ୍ୟଦେବୀ ବ୍ରହ୍ମାର ନନ୍ଦିନୀ
ବିଦ୍ୟାର ବଳେ ମୋହିଲୁ ଦେବ ଚକ୍ରପାଣି ।
ସମସ୍ତଙ୍କ କଣ୍ଠରେ ତୁ ବିଜେ କରିଥାଉ
ତେଣୁକରି ବାକ୍ୟଦେବୀ ନାମ ତୁ ବୋଲାଉ ।
ଯାହାକୁ ତୁ ଦୟା କରୁ ଆଗୋ ଯୋଷାମଣି
ତିନିଲୋକ ମଧ୍ୟରେ ସେ ହୁଅଇ ଅଗ୍ରଣୀ ।
ନିରତେ ବାକ୍ୟ ଦେବୀଙ୍କୁ କରଇ ସ୍ମରଣ
ଅଚ୍ୟୁତ ଦାସ ଭଣଇ କୃଷ୍ଣକୀର୍ତ୍ତିମାନ ।

— —

## ସୁଭଦ୍ରା ପରିଣୟ

ଏଥୁ ଅନ୍ତରେ ପରୀକ୍ଷ ନାମେ ନୃପବର
ଶୁକମୁନିଙ୍କ ଚରଣେ ନମି ଶତବାର ।
କୃତ୍ୟ କୃତ୍ୟ ହୋଇକରି ବୋଲେ ନୃପସାଇଁ
ଦୀପାବଳୀ ଘେନି ରଜା ମୁନିଙ୍କି ବନ୍ଦଇ ।
ରାଜାର ଭକତି ଭାବ ଦେଖି ମୁନିବର
ବୋଲନ୍ତି ଆବର କିସ ପୁଚ୍ଛ ନୃପବର ।
ମୁନିଙ୍କର ଦୟାଭାବ ଦେଖିଲେକ ଯହୁଁ
କରପଦ୍ମ ଯୋଡ଼ିକରି ପୁଚ୍ଛେ ନୃପରାହୁ ।
ଅପୂର୍ବ କଥା ଗୋଟିଏ ପଚାରିବି ମୁହିଁ
ସାବଧାନ ଚିତ୍ତେ ମୋତେ କହିବା ଗୋସାଇଁ
ଗୋପନୀୟ ଭାବେ ରହିଲା ତ କଥାମାନ
ନ ପଚାରିଲେ ନ ଯିବ ମୋ ସଂଶୟମାନ ।

ନନ୍ଦ ରାଜାଙ୍କର ଯେଉଁ କନ୍ୟାଗୋଟି ଥିଲା
କେବଣ ନୃପତିକି ସେ ବିବାହ ହୋଇଲା ।
ଏହା ମୋତେ ବୁଝାଇଣ କହ ମୁନିବର
ତେବେ ସଂଶୟ ଛେଦନ ହୋଇବ ମୋହର
ରାଜାର ବଚନେ ମୁନି ଅଳପ ହସିଲେ
ନରପତିଙ୍କି ବହୁତ ପ୍ରଶଂସା କରିଲେ ।
ବୋଇଲେ ନୃପତି ତୁମ୍ଭ ଅଟ ବୁଦ୍ଧିମନ୍ତ
ତେଣୁକରି ପଚାରୁଛ କଥାର ଉଦନ୍ତ ।
ଏକମନ ହୋଇ ତୁମ୍ଭେ ଶୁଣ ନରନାଥ
ସୁଭଦ୍ରାକୁ ବିବାହ ଯେ ହେଲେ ବୀର ପାର୍ଥ
ତୋହର ପିତାମହ ସେ ଅଟନ୍ତି ଯୁଗତେ
ଆଜଯାଏ ଏହା ତୁ ନ ଜାଣୁ ନରନାଥେ ।
ବିବାହ ଅନ୍ତେ ପାଣ୍ଡବେ ହୋଇଲେ ଅନ୍ୟୋନ୍ୟ
ସଂଗ୍ରାମରେ କୁରୁବଳ ମାଇଲେ ଫାଲ୍ଗୁନ ।
ପାଣ୍ଡବଙ୍କ ହସ୍ତେ କୁରୁବଳ ନାଶ ଗଲେ
ଏହା ଯେବେ ଶୁଣିବାକୁ ଇଚ୍ଛା ନୃପବରେ
ଏକମନ ହୋଇ ତେବେ ଶୁଣ ନୃପସାଇଁ
ଦିନେ ନନ୍ଦକୁ ସଙ୍ଗଳି ଅଇଲେ ମାଧୋଇ ।
ନନ୍ଦର ମନ୍ଦିରେ ଯାଇ ମିଳି ଦାମୋଦର
ନମସ୍କାର କଲେ ବେଗେ ନନ୍ଦର ପୟର ।
ଶ୍ରୀକୃଷ୍ଣଙ୍କୁ ଦେଖି ନନ୍ଦ ସନ୍ତୋଷ ଲଭିଲେ
ଏସନକ ସମୟରେ ଯଶୋଦା ଅଇଲେ ।
ମାତାକୁ ଦେଖିଣ କୃଷ୍ଣ ଉଠିଲେ ତୁରିତ
ଭକ୍ତିଭାବେ ମାତାଙ୍କର ଚରଣେ ନମନ୍ତ ।
ସ୍ନାହାନ ଭୋଜନ ତହିଁ କଲେ ନାରାୟଣ
ଆଚମନ ଶେଷ କରି ବସିଲେ ତକ୍ଷଣ ।
ମୁଖବାସ ଯୋଗାଇବା ବେଳେ ନନ୍ଦରାୟେ
ବୋଲନ୍ତି ଶୁଣ ହେ ତୁମ୍ଭେ ଦେବାଧିଙ୍କରାୟେ
ଆଜଯାଏ ଅବିବାହି ସୁଭଦ୍ରା ରହିଲା
ତାହାର ସଦୃଶ ବର କାହିଁ ନ ମିଳିଲା ।
ଏଥିକୁ କିସ ଉପାୟ କରିବ କହ୍ନାଇ
ତୋହର ବ୍ୟତିତ ମୋର ଅନ୍ୟ ଗତି ନାହିଁ ।
ସକଳ ବନ୍ଧୁ କୁଟୁମ୍ବ ପୁଣ ଅଟ ତୁମ୍ଭେ
ତୁମ୍ଭର ବ୍ୟତିତ ଆନ ନାହିଁ ବାସୁଦେବେ
ନନ୍ଦର ମୁଖକୁ ଶୁଣି ବୋଲନ୍ତି କହ୍ନାଇ
ଥୋକେ ଦିନ ଛୁଡ଼ ବର ଖୋଜିବାକ ଯାଇଁ

ନନ୍ଦ ବୋଇଲେ ଯୁବତୀ ହୋଇଲା ଦୁହିତା
ଦେଖିକରି ମୋର ମନେ ଲାଗେ ବଡ଼ ଚିନ୍ତା
ଗୋବିନ୍ଦ ବୋଇଲେ ଚିନ୍ତା ନକର ହେ କଛୁ
ବଳରାମଙ୍କୁ ଆମ୍ଭର ପୁଚ୍ଛିବାର ଅଛୁ ।
ତାହାଙ୍କୁ ନ ପୁଚ୍ଛି ଆମ୍ଭେ କେମନ୍ତେ ଖୋଜିବା
ନ ପୁଚ୍ଛିଲେ କୁପିତ ଯେ ହେବେ ବଳଦେବା
ଏତେ କହି କୃଷ୍ଣ ତହୁଁ ବାହାର ହୋଇଲେ
ଦ୍ୱାରକା ପୁରରେ ଯାଇ ଭିତରେ ମିଳିଲେ ।
ସତ୍ୟଭାମା ରୁକ୍ମଣୀଏ ମିଳିଲେକ ଆସି
ତାଙ୍କୁ ଗୋବିନ୍ଦ ବୋଇଲେ ଶୁଣ ଶୁଭ୍ରକେଶୀ ।
ନନ୍ଦଙ୍କ କନ୍ୟା ସୁଭଦ୍ରା ନାମେ ଅଛି ନାରୀ
ଯୁବତୀ ହୋଇଣ ସେହୁ ଅଛି ତାଙ୍କ ପୁରୀ ।
ତାର ସମାନ ଆମ୍ଭଙ୍କୁ ନ ମିଳିଲା ବର
ତେଣୁ ଚିନ୍ତା ଜନ୍ମିଅଛି ଆମ୍ଭର ମନର ।
ଶ୍ରୀକୃଷ୍ଣଙ୍କର ମୁଖରୁ ଏସନକ ଶୁଣି
କଥାଏ କହିବି ମୁହିଁ ବୋଇଲେ ରୁକ୍ମଣୀ ।
ବର ଗୋଟିଏ ମୁହିଁ ତ ସ୍ଥିର କରି ଅଛି
କୋପ ଯେବେ ନ କରିବ କହିବି ଶ୍ରୀବତ୍ସି
ତହୁଁ ଗୋବିନ୍ଦ ବୋଇଲେ କହ କନକାମୋତେ
ରୁକ୍ମଣୀ ବୋଲେ ଏ ପୁରେ ଅଛି ବୀର ପାର୍ଥେ
ନାରାୟଣ ବୋଇଲେ ଗୋ ଶୁଣ ପ୍ରାଣସଖି
ପାଣ୍ଡବ ନାମେ ଚଳନ୍ତି ଦେବ ହଳସାଇଁ ।
ଆମ୍ଭ ମନକୁ ରୁଚିଲା ତୁମ୍ଭେ କହିବାରୁ
ତୁମ୍ଭେ ନ କହୁଣୁ ଆମ୍ଭେ ଜାଣିଛୁ ଆଗରୁ ।
ବଳରାମ ଭୟରେ ନ ପାରୁ ଆମ୍ଭେ କହି
ଗୋପନେ ସେ କଥା ରଖ ନ କହ ମିଠାଇ ।
ତାହାଙ୍କୁ ନିବୃତ୍ତ କରି ପ୍ରଭୁ ଭଗବାନ
ବଳରାମଙ୍କ ପୁରକୁ ଚଳିଲେ ବହନ ।
ରାମଙ୍କୁ ଦେଖିଣ କୃଷ୍ଣ ନମସ୍କାର କଲେ
ଦୁଇ ଭାଇ ଆସ୍ଥାନର ଉପରେ ବସିଲେ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ହଳଧର
କଥାଏ ପଚାରିବାକୁ ଅଛଇ ତୁମ୍ଭର ।
ବଳୀ ବୋଇଲେ କହ ତୁ କେବଣ ଚରିତ
ଶ୍ରୀକୃଷ୍ଣ ବୋଇଲେ ଶୁଣ ରେବତୀର କାନ୍ତ
ନନ୍ଦଙ୍କ ଝିଅ ଅଟଇ ସୁଭଦ୍ରା ସୁନ୍ଦରୀ
ଯୁବତୀ ହୋଇ ରହିଛି ନନ୍ଦଙ୍କର ପୁରୀ ।

ବର ଖୋଜ ତାହାକୁ ନ ଦେଲ ତୁମ୍ଭେ ହରି
ଏଥିର ଉପାୟ ତୁମ୍ଭେ ଆମ୍ଭଙ୍କୁ କହିବା ।
କ୍ଷଣେମାତ୍ର ତୁନ ହୋଇ ବଚନ ବୋଲନ୍ତି
ହସ୍ତିନାରେ ଅଛି ଦୁର୍ଯ୍ୟୋଧନ ନରପତି ।
ତାହାକୁ ଆଣି ଭଦ୍ରାକୁ ବିଭା କରାଇବା
ସୁନ୍ଦର ପଣରେ କସ ପଟାନ୍ତର ଦେବା ।
ପଲ୍ଲଗ ନାଗପୁଣ ସେ ପ୍ରତ୍ୟକ୍ଷ ଅଟଇ
ଶଙ୍ଖନିଧି ପଦ୍ମନିଧି ତା ହସ୍ତେ ଅଛଇ ।
ଶ୍ରୀହରି ଘରଣୀ ତାର କଣ୍ଠେ ସଦା ଥାଇ
କ୍ଷଣମାତ୍ରକ ତାହାର କଣ୍ଠରୁ ନ ଯାଇ ।
ଅନୁକ୍ଷଣେ ବରବେଶ ହୋଇଥାଏ ରାଯ୍ୟେ
ଆଠଦିନେ ରାନୁମଣ୍ଡି ପୁଣ ବିଭା ହୁଏ ।
ତାକୁ ଆଣି ସୁଭଦ୍ରାକୁ ନିଶ୍ଚେ ବିଭାଦେବା
ଏ କଥାରେ ଚିନ୍ତା ତୁ ନ କର ବାସୁଦେବା
ବିଭା ଆମ୍ଭେ କରାଇବା ଫାଲ୍‌ଗୁନ ମାସର
ହରି ବଳରାମ ଦୁହେଁ କଲେକ ବିଚାର ।
ବସୁଦେବ ଉଗ୍ରସେନ କହିଲେକ ଦୁହେଁ
ସବୁରି ବିଚାରେ ହେଲା ଦୁର୍ଯ୍ୟୋଧନ ରାଯ୍ୟେ ।
ଏମନ୍ତ ପ୍ରକାରେ କାଟିଦିନ ଗଲା ବହି
ବିବାହର ଉଦଯୋଗ କଲେ ଯାଦବଗ୍ରାହି ।
ଫାଲଗୁନ ମାସର ଯେ ଶ୍ରୀପଞ୍ଚମୀ ଦିନ
ସେ ଦିନ ବିବାହ ସ୍ଥିର କଲେ ଭଗବାନ ।
ବଳରାମ ପ୍ରଭୁ ଅନାଧୃଷ୍ଟକୁ ବୋଇଲେ
ଦୁର୍ଯ୍ୟୋଧନକୁ ବରଣ କରି ଆଣ ଭଲେ ।
ଆଜ୍ଞା ପାଇ ଅନାଧୃଷ୍ଟ ବେଗେ ଚଳିଗଲା
ଦୁର୍ଯ୍ୟୋଧନେ ବଳରାମ ଆଜ୍ଞା ଜଣାଇଲା ।
ବରବେଶ ହୋଇ ତୁମ୍ଭେ ଆସିବ ଏକ୍ଷଣ
ସୁଭଦ୍ରାକୁ ବିଭାଦେବେ ପ୍ରଭୁ ବଳରାମ ।
ବଳଦେବଙ୍କର ଆଜ୍ଞା ପାଇ ଦୁର୍ଯ୍ୟୋଧନ
ଦଳ ବଳ ସଜ ହୋଇ ବାହାରେ ବହନ ।
ଏଣେ ଉପାୟ କଲେକ ଦେବ ଦାମୋଦର
ପାର୍ଥେ ସୁଭଦ୍ରା ପ୍ରଦାନ କରିଲେ ସତ୍ୱର ।
ଏଣେ କନ୍ୟାକୁ ଘେନଣ ଅଇଲା ଅର୍ଜ୍ଜୁନ
ତେଣେ ବିଭା ହେବାପାଇଁ ଆସେ ଦୁର୍ଯ୍ୟୋଧନ
ତାହା ଦେଖି ଦୁର୍ଯ୍ୟୋଧନ ଲଜ୍ଜା ପାପ୍ତ ହେଲା
ଅଠର କ୍ଷୌହଣୀ ବଳ ଘେନ ବାହୁଡ଼ିଲା ।

ବଳରାମ ଶୁଣି ମନେ ବହୁକୋପ କଲେ
ସେହି ଦିନୁ ଅର୍ଜ୍ଜୁନକୁ ନ ଦେଖନ୍ତି ଭଲେ ।
ପାଣ୍ଡବଠାରେ ଅହନ୍ତା ବହି ଦୁର୍ଯ୍ୟୋଧନ
ତାହାଙ୍କୁ ଅନେକ କଷ୍ଟ ଦେଲା କୁରୁରାଣ ।
ବାର ବରଷ ସେମାନେ ବନରେ ରହିଲେ
ବର୍ଷେ ତେର ଦିନ କାଳ ଅଜ୍ଞାତେ ବଞ୍ଚିଲେ
ସୁଭଦ୍ରା ଗର୍ଭରୁ ତୋର ପିତା ଉପୁଜିଲା
ଅଭିମନ୍ୟୁ ନାମ ସେହି ତେଣୁ ହୋଇଲା ।
ଅଜ୍ଞାତ ବାସ କରିଣ ପାଣ୍ଡବେ ଅଇଲେ
ବାରୁଣାବନ୍ତରେ ଆସି ଉପଗତ ହେଲେ ।
ଆପଣେ ଯାଇ ଶ୍ରୀହରି ମାଗିଲେକ ପଡ଼ା
କେବେହେଁ ବୋଲି ନ କଲା ଦୁର୍ଯ୍ୟୋଧନମୂଢ଼ା
ଦୁର୍ଯ୍ୟୋଧନ ରାଜା ଯୁଦ୍ଧ ଆରମ୍ଭ ପାଞ୍ଚିଲା
ଅଠର କ୍ଷୌହଣୀ ବଳ ଘେନିଣ ସାଜିଲା ।
ସାତ ଅକ୍ଷୌହିଣୀ ବଳ ଘେନ ପଣ୍ଡୁସୁତେ
ସମର ଆରମ୍ଭ କଲେ କୌରବ ସହିତେ ।
ବରଯାତ୍ରୀ ହୋଇ ଯାଇଥିଲେ ଯେତେ ରାଜା
ଯୁଦ୍ଧ ନିମନ୍ତେ ତାହାଙ୍କୁ କରାଇଲା ସଜା ।
ଦଶଦିନ ଭୀଷ୍ମଦେବ ଯୁଦ୍ଧ ଆରମ୍ଭିଲେ
ଦିଶଦିନ ଅନ୍ତେ ସେହୁ ଶର ଶଯ୍ୟା କଲେ ।
ଦ୍ରୋଣାଚାର୍ଯ୍ୟ ପାଞ୍ଚଦିନ ହେଲେ ମହାରଥୀ
ଶକଟ ବୋଲିଣ ବ୍ୟୂହ କଲେ ମହାକ୍ଷତ୍ରୀ ।
ଜଳନ୍ଧର ବ୍ୟୂହେ ଗଲେ ହରି ପାର୍ଥ ବେନି
ତୋହର ପିତା ଶକଟେ ପଶିଲେକ ପୁଣି ।
କପଟରେ ଦୁଃଶା ତୋର ପିତାକୁ ମାଇଲା
ନବଦ୍ୱାରେ ତୋର ପିତା ପ୍ରାଣ ବିସର୍ଜିଲା ।
ପାଞ୍ଚଦିନ ଯୁଦ୍ଧକରି ଦ୍ରୋଣ ନାଶଗଲା
ଦୁଇ ଦିନର ଯୁଦ୍ଧରେ କର୍ଣ୍ଣ ପ୍ରାଣ ଦେଲା ।
ଭୀମ ଗଦାଘାତେ ଦୁର୍ଯ୍ୟୋଧନ ଶତେ ଭାଇ
ଲକ୍ଷ୍ମଣ କୁମର ଗଦାଘାତେ ଛେଦ ହୋଇ ।
ଅର୍ଦ୍ଧ ଦିବସ ଯୁଦ୍ଧରେ ଶଲ୍ୟ ନାଶ ଗଲା
ଗଦାଯୁଦ୍ଧ କରିଣ ସେ ଦୁର୍ଯ୍ୟୋଧନ ମଲା ।
ଏରୂପେ ଅଠର ଦିନ ହୋଇଲା ସଂଗ୍ରାମ
ଦୁଷ୍ଟ ରାଜାମାନେ ଯୁଦ୍ଧେ ହରାଇଲେ ପ୍ରାଣ ।
ଅଶ୍ୱତ୍ଥାମା ତୋ ମାତାକୁ ଶର ନିକ୍ଷେପିଲେ
ତାହାର ନିକ୍ଷିପ୍ତ ଶର ପଶିଲା ଗର୍ଭରେ ।

ଗର୍ଭରେ ପଶନ୍ତେ ବ୍ରହ୍ମ ହରାଇଲ ଜ୍ଞାନ
ସେତେବେଳେ ତାହାକୁ ରକ୍ଷାକଲେ ନାରାୟଣ
ତେଣୁ କରି ତୋର ପରୀକ୍ଷିତ ନାମ ହେବେ
ଚକ୍ର ଘୋଡ଼ାଇଣ ନାରାୟଣ ରକ୍ଷାକଲେ ।
ଦୁର୍ଯ୍ୟୋଧନ ରାଜବଂଶ ନିଃଶେଷ କରିଣ
ପାଣ୍ଡବ ରାଜତ୍ୱ କଲେ ହସ୍ତିନା ପୁରେଣ ।
ଶୁଣିଲୁ ଟିକ ହୋ ପରୀକ୍ଷିତ ନୃପବର
ପୃଥ୍ୱୀଭାର ଉଶ୍ୱାସିଲେ ଦେବ ଦାମୋଦର ।
ଯୁଧିଷ୍ଠିରଙ୍କୁ କଟକେ କଲେ ଅଧିପତି
ନିଷ୍କଣ୍ଟେ ରାଜତ୍ୱ କଲେ ଯୁଧିଷ୍ଠି ନୃପତି ।
କୋପ କରିଣ ଗାନ୍ଧାରୀ କୃଷ୍ଣେ ଶାପଦେଲ
ତୋହ ଯୋଗେ ପୁତ୍ରଙ୍କର ପ୍ରାଣନାଶ ହେଲ ।
ତେଣୁ କରି ତୋତେ ମୁହିଁ ଶାପ ଦେଉଅଛି
ହରପାଳେ ସାକ୍ଷୀ ରଖି ଏହା ମୁଁ କହୁଛି ।
ତୋହର ବଂଶ ତୋହର ଆଗେ ଯାନ୍ତୁ ନାଶ
ଶ୍ରୀକୃଷ୍ଣଙ୍କୁ ଶାପ ଦେଲ କରି ଅମର୍ଷ ।
ସେହି ଦିନୁ କୃଷ୍ଣ ମନେ ଚିନ୍ତିତ ହୋଇଲେ
କାହାରି ଆଗରେ ସେହି କଥା ନ କହିଲେ ।
ଯାହା ତୁ ପଚାରିଥିଲୁ ଶୁଣିଲୁ କି ରାଜେନ୍ଦ୍ର
ସୁଭଦ୍ରା ବିବାହ ଶୁଣି ପାପ କର ଛେଦ୍ର ।
କରପଦ୍ମ ଯୋଡ଼ି ରାଜା କରିଲ ବିନତି
ଏଥିର ଉତ୍ତରେ କହ ଜଳେ ଲକ୍ଷ୍ମୀପତି ।
ମୁନି ବୋଇଲେକ ଶୁଣ ଏବେ ହେ ରାଜନ
ହସ୍ତିନାପୁରୁ ଅର୍ଜୁନେ ଆଣିଲେ ମୋହନ ।
ଥୋକେ ଦିନ ପାର୍ଥ ଦ୍ୱାରକାରେ ଛନ୍ତି ରହି
ଗୋବିନ୍ଦ ତାଙ୍କୁ ଆଣିଲେ ସନ୍ନିଧିକୁ ରାଇ ।
ଚାଲ ପାତାଳ ପୁରକୁ ବେଗେ ଦୁହେଁ ଯିବା
ସେ ନାରାୟଣ ବିଷ୍ଣୁଙ୍କୁ ଦର୍ଶନ କରିବା ।
ଆଜ୍ଞା ଦେଇଥିଲେ ସେହୁ ଆମ୍ଭେ ଯିବାପାଇଁ
ଦରଶନ କରି ଆସିବାକ ବେଗ ହୋଇ ।
ଶ୍ରୀକୃଷ୍ଣଙ୍କର ମୁଖରୁ ଏସନକ ଶୁଣି
କରପଦ୍ମ ଯୋଡ଼ି ବଦୟନ୍ତି ଫାଲ୍‌ଗୁନି ।
ମୋହର ଯେ କିସ ଇଚ୍ଛା ପଚାରୁଛ ମୋତେ
ତୁମ୍ଭର ଇଚ୍ଛା ଅନ୍ୟଥା ନୁହେଁ କଦାଚିତେ ।
ଅର୍ଜୁନର ବାକ୍ୟ ଶୁଣି ଗୋବିନ୍ଦ ଉଠିଲେ
ହରି ଅର୍ଜୁନ ସେଠାରୁ ବେଗେ ଚଳିଗଲେ ।

ପାତାଳ ପୁରେ ମିଳିଲେ ଅତି ତ୍ୱରା ହୋଇ
ରଥରୁ ଓହ୍ଲାଇ ପଶିଲେକ ଚକ୍ରଗ୍ରାହୀ ।
ନିରାକାର ବିଷ୍ଣୁଙ୍କର ନମିଲେ ପଦରେ
ନମସ୍କାର କଲେ ଯାଇ ବିଷ୍ଣୁ ସନ୍ନିଧିରେ ।
ତାହାଙ୍କୁ କଲ୍ୟାଣ କଲେ ନିରଞ୍ଜନ ଦେଖି
ବୋଇଲେ ଏତେ ବିଳମ୍ବ କଲ କାହିଁପାଇଁ ।
ପୃଥିବୀର ମହାଭାର ହୋଇଲା ଉଶ୍ୱାସ
ଦ୍ୱାପର ଯୁଗ ଆସି ହୋଇଲାକ ଶେଷ ।
ମର୍ତ୍ତ୍ୟରେ ଥିବା ତୁମ୍ଭର ଉଚିତ ନୁହଇ
ହରି ପାର୍ଥ ବଳରାମ ଆସ ବେଗ ହୋଇ ।
ଯେତେବେଳେ ଦ୍ୱାରକାରୁ ହୋଇବୁ ବାହାର
ଦ୍ୱାରକା ପୁର ବୁଡ଼ାଇ ଦେବୁ ତୁ ଜଳର ।
ବଳଦେବ ଆସିବେ ଯେ ଅତି ତ୍ୱରା ହୋଇ
ତୋହର ଆସନ୍ତେ ତୁଷ୍ଟ ହୋଇବ ସେ ମହୀ
ମାନବେ ଯାଇଣ ବାସ କରିବେ ତହିଁରେ
ଏଣୁ କରି ସେ ପୁର ତୁ ବୁଡ଼ାଅ ଜଳରେ ।
କୁଶସ୍ଥଳୀ ଦ୍ୱାରକା ଯେ ଅଟେ ନାମ ତାର
ଅବତାର ପାଇଁ କରିଅଛୁ ବେଦବର ।
କୃଷ୍ଣ ଅବତାରେ ଲୀଳା କର ଭଗବାନ
ତେଣୁ କରିଣ ଦ୍ୱାରକା ଅଟେ ଗୁପ୍ତ ସ୍ଥାନ ।
ସେହି ପୁରକୁ ଅବଶ୍ୟ ଜଳେ ଭସାଇବ
ଏହି ପାତାଳପୁରକୁ ତ୍ୱରିତେ ଆସିବ ।
ନିରାକାର ବିଷ୍ଣୁ ମୁଖୁ ଏସନକ ଶୁଣି
କରପଦ୍ମ ଯୋଡ଼ି ବଦୟନ୍ତି ବେଣୁପାଣି ।
ତୁମ୍ଭର ଆଜ୍ଞା ପ୍ରମାଣେ ଏତେକ କରିବୁ
କୁଶସ୍ଥଳ ଦ୍ୱାରକାକୁ ଜଳେ ବୁଡ଼ାଇବୁ ।
ପୃଥିବୀରେ ଯେତେକ ବା ଦୁଷ୍ଟ ଜୀବ ଥିଲେ
ତୋହରହିଁ କୃପାରେ ସେ ସର୍ବେ ନାଶଗଲେ
ଆଜ ତ ପୃଥୀରେ ଦୁଷ୍ଟ ଜୀବ କେହି ନାହିଁ ।
ତୁହି ରହି ମହାସୁଖ ଭୋଗକଲୁ ତହିଁ
ତୋହର ପୁତ୍ର ନାତିଏ ଅଛନ୍ତି କି ଭଲେ
ସାତବଂଶ ଯାଦବ କି ଅଛନ୍ତି କୁଶଳେ ।
ଯଦୁବଂଶ ଯେବେ ଥିବେ ପୃଥିବୀ ମଣ୍ଡଳେ
ପୃଥିବୀଦେବୀ ଉଶ୍ୱାସ ନୁହେଁ କେତେବେଳେ
ତୋହର ସେ ପୁତ୍ର ନାତି ଯେତେକ ଅଛଇ
ତାଙ୍କୁ ଜିଣିବାକୁ ପୃଥ୍ୱୀ ମଧ୍ୟେ କେହି ନାହିଁ ।

ସେମାନେ ଥିଲେ ପୃଥିବୀ ନୋହିବ ଉଶ୍ୱାସ
ସେମାନଙ୍କୁ ନିବାରଣ କର ପୀତବାସ ।
ପୂର୍ବେ ଗାନ୍ଧାରୀ ଦେବୀର ଶାପ ତୋତେ ଅଛି
ଯୋଗବଳରେ ଆମ୍ଭଙ୍କ ଦୃଶ୍ୟ ହେଉଅଛି ।
ଆହୁରି କଥା ଗୋଟିଏ ଶୁଣ ନରହରି
ଶାପ ଦେଇଛି ଦୁର୍ବାସା ନାମେ ତପସ୍ୱୀ ।
ଏବେ ତୋତେ ସେହିକଥା ମେଣ୍ଟଣ ନୋହିବ
ତୋହର ବଂଶ ତୋହର ଆଗେ କ୍ଷୟଯିବ ।
ପଛରେ ଜରାଶବର ବିନ୍ଧିବଟି ବାଣ
ସେ ବାଣେ ଦେହ ତେଜିବୁ ଦେବ ନାରାୟଣ
ନାରଦ ଋଷିଙ୍କ ମୁଖରୁ ଏସନକ ଶୁଣି
ବିସ୍ମୟରେ ମନ ମଧ୍ୟେ ଭାଳେ ଚକ୍ରପାଣି ।
ଯଦୁବନ ପରସ୍ପେକ ବଢ଼ିଲେ ମୋ ବଂଶ
ତଳିବ ବଳେ ସେମାନେ ସର୍ବେ ଯିବେ ନାଶ
ଏଣେ ବିଚାର କରନ୍ତି ଦେବ ଚକ୍ରଧର
ଯାଅ ଯାଅ ବୋଲି ଆଜ୍ଞାଦେଲେ ନରକାର ।
ତାହାଙ୍କ ବଚନେ ହରି ଅର୍ଜ୍ଜୁନ ଉଠିଲେ
ପ୍ରଭୁଙ୍କର ଚରଣରେ ନମସ୍କାର କଲେ ।
ପାତାଳପୁରୁ ଅଇଲେ ଅତି ବେଗ ହୋଇ
ବିବରଦ୍ୱାରେ ରଥରେ ବସି ଭାବଗ୍ରାହୀ ।
ତତକ୍ଷଣେ ଦ୍ୱାରକାରେ ହୋଇଲେ ପ୍ରବେଶ
ରଥ ଉପରୁ ଓହ୍ଲାଇ ଗଲେ ପୀତବାସ ।
ଅର୍ଜ୍ଜୁନ ବୀରର ହସ୍ତ ଧରି ଭାବଗ୍ରାହୀ
ଚନ୍ଦ୍ରଶାଳାପୁରେ ବିଜେ କଲେ ବେଗେ ଯାଇ
ବାର୍ତ୍ତା ପାଇଣ ଅଇଲେ ଯାଦବ କୁମରେ
ତହିଁ କୃଷ୍ଣର କୁମରେ ଆସିଣ ମିଳିଲେ ।
ଲକ୍ଷେ ଷାଠିଏ ଅଟନ୍ତି କୃଷ୍ଣର ନନ୍ଦନ
ସମସ୍ତେ ନମିଲେ ହରି ଅର୍ଜ୍ଜୁନ ଚରଣ ।
ହରି ଅର୍ଜ୍ଜୁନ ତାଙ୍କର କଲ୍ୟାଣ ବାଞ୍ଛିଲେ
ପୁତ୍ରଙ୍କୁ ଦେଖିଣ କୃଷ୍ଣ ବିସ୍ମୟ ହୋଇଲେ ।
ଯଦୁବନର ପରସ୍ପେ ବଢ଼ିଲେ ମୋ ବଂଶ
ଏକାବେଳକେ ହୋଇବ କରିବ ବିନାଶ ।
ଏତେ ବିଚାରି ବିକଳ ହୁଅନ୍ତି ଭାବଗ୍ରାହୀ
ହୃଦୟର ବେଦନା ସେ ନ ପାରନ୍ତି କହି ।
କୁମରଙ୍କୁ ବୋଇଲେକ ଯାଅ ବେଗେ ଚଳି
ଗାଣ୍ଡିବଧାରୀ ଅର୍ଜ୍ଜୁନ ଅଇଲେ ମୋ ପୁରୀ ।

ଅର୍ଜ୍ଜୁନଙ୍କୁ ଘେନି ସ୍ନାନ କଲେ ନାରାୟଣ
ଷଟ ପ୍ରକାର ରସରେ କରନ୍ତି ଭୋଜନ ।
ଭୋଜନ ଶେଷେ ସେମାନେ ଆଚମନ କଲେ
ଝୀନବସନ ଘେନିଣ ଶ୍ରୀମୁଖ ପୋଛିଲେ ।
ଦ୍ୱାରକାରେ ସ୍ୱଚ୍ଛନ୍ଦେ ରହିଲେ ଅର୍ଜ୍ଜୁନ
ଏଣେ ପାର୍ଥଙ୍କୁ ସ୍ମରିଲେ ଧର୍ମର ନନ୍ଦନ ।
ଅର୍ଜ୍ଜୁନଙ୍କୁ ସୁମରନ୍ତେ ଉଚାଟ ଲଗିଲା
ଗୋବିନ୍ଦଙ୍କର ଛାମୁରେ ସବୁ ଜଣାଇଲା ।
ହସ୍ତିନାପୁରକୁ ଯିବି ଆଜ୍ଞା ଦିଅ ମୋତେ
ଅର୍ଜ୍ଜୁନଙ୍କୁ ଚାହିଁ ବଦନ୍ତି ପଦ୍ମନେତ୍ରେ ।
ନରକାର ମହାପ୍ରଭୁ ଯେଉଁ ଆଜ୍ଞା ଦେଲେ
ସେହି କଥା ଅର୍ଜ୍ଜୁନ ତୁ ଶୁଣିଅଛୁ ଭଲେ ।
ସେ କଥା ଗୋଟିକ ବାବୁ ହୃଦେ ଧରିଥିବୁ
କାହାର ଆଗରେ ପରକାଶ ନ କରିବୁ ।
ଯେତେବେଳେ ମୋର ବଂଶ କରିବ ମୁଁ ନାଶ
ତହିଁକି ତୁ ଲକ୍ଷ୍ୟେ କରିଥିବୁ ପଣ୍ଡୁ ଶିଷ୍ୟ ।
ଯେବେ ଶବର ବାଣରେ ନାଶଯିବ ମୁହିଁ
ସେ କଥା ଗୋଟିକ ଲକ୍ଷ୍ୟେ କରିଥିବୁ ତୁହି ।
ମୋହର ପିଣ୍ଡରୁ ପ୍ରାଣ ଯେତେବେଳେ ଯିବ
ସମୁଦ୍ର କୂଳେ ମୋ ପିଣ୍ଡ ଦହନ କରିବ ।
ଆପେ ଧନୁ ଧରି ତୁହି ଦ୍ୱାରକା ଆସିବୁ
ମୋ କୁଟୁମ୍ବ ସମ୍ଭାଳିଣ ହସ୍ତିନାକୁ ନେବୁ ।
ଏହା ଶୁଣିଣ ଅର୍ଜ୍ଜୁନ କମ୍ପେ ଥରହର
ବେନି ନୟନୁ ଲୋତକ ଗଡ଼ଇ ଝର ଝର ।
ହେ ଦୈବ ପୁରୁଷ ଏହା ବିଚାରିଲୁ ତୁହି
ଶ୍ରୀକୃଷ୍ଣ ଗଲେ କି ମୁହିଁ ଦେହ ଧରିବଇଁ ।
ଶ୍ରୀକୃଷ୍ଣ ବିହୀନେ ମୁହିଁ ହୋଇବି ଅନାଥ
ଜଗତେ ଶୁଭେ ପାଣ୍ଡବ ଜଗନ୍ନାଥ ଭୃତ୍ୟ ।
ଅରଜୁନର ବଚନ ଜାଣି ଚକ୍ରପାଣି
ବୋଇଲେ ସେ କାହିଁ ପାଇଁ ଭାଳୁ ବୀରମଣି ।
ତୁହି ମୋର ପଞ୍ଚଭୂତ ଆତ୍ମାର କାରଣୀ
ପିଣ୍ଡ ଗଲେ ପ୍ରାଣ କାହିଁ ସମ୍ଭାଳିବ ପୁଣି ।
ମୁହିଁ ପିଣ୍ଡ ଅଟଇ ତୁ ମୋର ପଞ୍ଚପ୍ରାଣ
ଏହି କଥା ଅର୍ଜ୍ଜୁନ ତୁ ଦୃଢ଼କରି ଜାଣ ।
ତୋତେ ଛାଡ଼ି ନ ପାରଇ ମୁହିଁ କଦାଚିତେ
ପ୍ରତି ଅବତାରେ ଥାଉ ମୋହର ସଙ୍ଗତେ ।

ଏତେ କହି ଅର୍ଜୁନଙ୍କୁ ପ୍ରବୋଧ ସେ କଲେ
ଦିବ୍ୟ ରଥ ଗୋଟିଏକ ସଜାଡ଼ି ଦେଲେ ।
ଓଳଗି ମେଲାଇ ପାର୍ଥ ବାହାର ହୋଇଲେ
ରଥରେ ଚଢ଼ିଣ ହସ୍ତିନାକୁ ଚଳିଗଲେ ।
ନିଜପୁରରେ ପରବେଶ ହୋଇଲେକ ଯାଇ
ଯୁଧିଷ୍ଠିର ପାଦେ ନମସ୍କାର ସେ କରଇ ।
ଶ୍ରୀକୃଷ୍ଣଙ୍କର ଚରିତ ସମସ୍ତ କହିଲେ
ବିଶ୍ରାନ୍ତ ହୋଇଣ ତହିଁ ଅର୍ଜୁନ ରହିଲେ ।
ଶୁଣ ହୋ ପରୀକ୍ଷ ରାଜା ଶୁକମୁନି ଭଣି
ପବିତ୍ର ଗଙ୍ଗାଜଳ ଏ ଭାଗବତ ବାଣୀ ।
କର୍ଣ୍ଣରେ ଶୁଣିଲେ ସର୍ବ ପାପ ହୁଏ ଧ୍ୱଂସ
ଅଚ୍ୟୁତ ଦାସକୁ ଶାନ୍ତ କର ପୀତବାସ ।

—

## କୃଷ୍ଣ ପୁତ୍ରମାନଙ୍କୁ ଦୁର୍ବାସା ଋଷିଙ୍କର ଅଭିଶାପ ଓ ଦ୍ୱାରକାଭୁବନରେ ଉତ୍ପାତ ଦର୍ଶନ

ଏଥୁ ଅନନ୍ତରେ ପୁଣି ଶୁକପାଦେ ପୂଜା
କରିଣ ବିନୟେ ପୁଚ୍ଛେ ପରୀକ୍ଷିତ ରାଜା ।
ଅର୍ଜୁନ ହସ୍ତିନାପୁରେ ହୁଅନ୍ତେ ପ୍ରବେଶ
ଦ୍ୱାରକା ଭୁବନେ କିସ କଲେ ହୃଷୀକେଶ ।
ଏ କଥା ବିସ୍ତାରି ମୋତେ କହ ମୁନିବର
ଶ୍ରୀହରି ଚରିତ ଶୁଣି ଭବୁଁ ହେବି ପାର ।
ରାଜାର ବିନୟ ଦେଖି ବୋଲନ୍ତି ସେ ଋଷି
ସ୍ୱର୍ଗ ସଭା ମଣ୍ଡାଇଣ ସୁରପତି ବସି ।
ବୃହସ୍ପତିଙ୍କ ମୁଖକୁ ଚାହିଁଣ ପୁଚ୍ଛଇ
ଶ୍ରୀକୃଷ୍ଣ ଆସିବେ କେବେ ସ୍ୱର୍ଗପୁରକୁହିଁ ।
ବୃହସ୍ପତି ବୋଇଲେକ ଆସିବେ ସତ୍ୱର
ଦୁର୍ବାସା ଋଷି ଯାଆନ୍ତୁ ବେଗେ ମର୍ତ୍ତ୍ୟପୁର ।
ସଙ୍କୁଳିବାକୁ କୃଷ୍ଣଙ୍କୁ ମର୍ତ୍ତ୍ୟପୁରେ ଯିବେ
ତାହାଙ୍କ କୁମରମାନେ ବାଟରେ ଭେଟିବେ ।
ବାଳୁତ କୁମରମାନେ ଖେଳୁଥିବେ ରଙ୍ଗେ
କୌପୀନ ପିନ୍ଧି ବିଭୂତି ଲେପି ହୋଇ ଅଙ୍ଗେ
କୃଷ୍ଣ ନାମ ଗାଇ ଯାଉଥିବେ ଧୀରେ ଧୀରେ
ବାଳୁତ ମନୁଷ୍ୟ ଯାଇ ଯେମନ୍ତ ପ୍ରକାରେ ।
ସେହି ପରକାରେ ଯାଉଥିବେ ମହାଋଷି
ତାହାଙ୍କୁ ଦେଖିବେ ସେହି ଶ୍ରୀକୃଷ୍ଣର ଶିଶି ।
ହସିବାର ଦେଖି ଋଷି କୁପିତ ହୋଇବେ
ସେହିକ୍ଷଣି ସେ ପୁତ୍ରଙ୍କୁ ଅଭିଶାପ ଦେବେ ।
ବୃହସ୍ପତି କହନ୍ତେଣ ଏସନେକ ବାଣୀ
ସ୍ୱର୍ଗୁଁ ଓହ୍ଲାଇ ଆଇଲେ ତହୁଁ ମୁନିମଣି ।
ଦେବଙ୍କର ବଚନରେ ଉଦବେଗେ ଗଲେ
ଦ୍ୱାରକାପୁରକୁ ସେହୁ ଭରିତେ ଚଳିଲେ ।
ନଗରଙ୍ଗେ ବେଶ ହୋଇ ଯାଉଛନ୍ତି ମୁନି
ଅଚ୍ୟୁତ ଗୋବିନ୍ଦ ନାମ ସ୍ମରି ଚକ୍ରପାଣି ।
ବାଇର ପରାୟେ ଦିଶୁଛନ୍ତି ମୁନିବର
ଖଣ୍ଡେ ଦୂରରୁ ଦେଖିଲେ କୃଷ୍ଣଙ୍କ କୁମର ।
ହଇକର ଭିଆଣ ବା କେ କରିବ ଆନ
ଆପଣେ ଭିଆଣ କରିଛନ୍ତି ନାରାୟଣ ।
ପ୍ରଦ୍ୟୁମ୍ନ ବୋଲନ୍ତି ଶୁଣ ଆରେ ଶାମ୍ବ ଗଦ
ଦେଖ ଦେଖ କେଉଁରୂପେ ଆସେ ମୁନିବୃଦ୍ଧ ।
ଉପହାସ କରି କଥା ଏକ ପଚାରିବା
ତୋତେ ଗର୍ଭବତୀ ସ୍ତ୍ରୀ ପରାୟେ କରିବା ।
ଏତେ କହିଣ ଶାମ୍ବକୁ ନାରୀବେଶ କଲେ
ସ୍ତ୍ରୀବେଶ କରାଇଣ ବସ୍ତ୍ର ପିନ୍ଧାଇଲେ ।
ଗୁପତ ଭାବରେ ଲଡ଼ା ଉଦରେ ରଖିଲେ
ତଦନ୍ତରେ ଯାଇ ମୁନି ପାଶରେ ମିଳିଲେ ।
ହରଷ ମନରେ ଯାଉଛନ୍ତି ମୁନିବର
ଆଗେ ଯାଇ ଓଗାଳିଲେ ପ୍ରଦ୍ୟୁମ୍ନ କୁମର ।
ନମସ୍କାର କରି ତାଙ୍କୁ ବିନୟରେ କହି
ବୋଲନ୍ତି ହେ ସାବଧାନେ ଶୁଣନ୍ତୁ ଗୋସାଇଁ ।
ଆମ୍ଭର ଏ ସ୍ତ୍ରୀଗୋଟି ଗର୍ଭବତୀ ହେଲା
କି କାରଣେ ଏତେ ଦିନେ ପ୍ରସବ ନୋହିଲା ।
ଅପାର କାଳରୁ ହୋଇଲାଣି ଅସକତ
ପୁତ୍ର କି ଦୁହିତା ହେବ ନ ପାଉଁ ତଦନ୍ତ ।
ମୁନି ବୋଇଲେ ଆଣ ହୋ ସେ ନାରୀକୁରତେ
ପୁତ୍ର କି ଦୁହିତା ହେବ ଦେଖିବାଟି ନେତେ ।
କୁମର ବୋଇଲେ ସେହୁ କେଭେ ନ ଆସଇ
ତୁମ୍ଭେ ସର୍ବଜ୍ଞ ପୁରୁଷ ଅଟ ପୂର୍ଣ୍ଣଦେହି ।
ପରିହାସ କଥା ବୋଲି ଜାଣି ମୁନିବର
ବୋଇଲେ ସ୍ତ୍ରୀର ଗର୍ଭେ ଅଛଇ କୁମର ।
ଆମ୍ଭେ ତ ସର୍ବଜ୍ଞ ତାହା ଜାଣିଲୁ ପ୍ରମାଣି
ଏହାର ଗର୍ଭରେ ଅଛି ଲୌହ ଶୂଳ ପୁଣି ।

ଏହିକ୍ଷଣି ସେହି ନାରୀ ପ୍ରସବ କରିବ
ସେ ଲୌହ ମୁଷଳେ ତୁମ୍ଭ ବଂଶ ନାଶ ଯିବ ।
ଯଦୁବଂଶଯାକ ତୁମ୍ଭେ ଲଭିବ ବିନାଶ
କୋପବନ୍ତ ଶାପ ତାଙ୍କୁ ଦେଲେ ବ୍ରହ୍ମଋଷି ।
ଅଭିଶାପ ଦେଇ ମୁନି ବେଗେ ଚଳିଗଲେ
ଦ୍ୱାରକା ଭୁବନେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ସେ ଉଗ୍ରସେନ ବସିଛୁ ଆସ୍ଥାନେ
ସାତବଂଶ ଅଛନ୍ତି ଯେ ତାଙ୍କ ସନ୍ନିଧାନେ ।
ଉଦ୍ଧବ ଅକ୍ରୂର ବସୁଦେବଙ୍କ ସହିତେ
ରାମକୃଷ୍ଣ ବସିଛନ୍ତି ତାହାଙ୍କ ସଙ୍ଗତେ ।
ନନ୍ଦରଜା ଆସିଅଛୁ ସଙ୍କୁଳିବା ପାଇଁ
ଏମନ୍ତ ବେଳେ ମିଳିଲେ ଯାଇଁ ମୁନିସାଇଁ ।
ମୁନିବରଙ୍କୁ ଦେଖିଣ ସମସ୍ତେ ଉଠିଲେ
ଏକାବେଳକେ ସମସ୍ତେ ନମସ୍କାର କଲେ ।
କଲ୍ୟାଣ କରିଣ ବସିଲେକ ମୁନିବର
ଉଗ୍ରସେନେ ପୁଚ୍ଛି ରାଜବିଧି ସମାଚାର ।
ସମସ୍ତ କୁଶଳ କହିଲେକ ନରସାଇଁ
କୃଷ୍ଣଙ୍କୁ ଦେଖି ପୁଚ୍ଛନ୍ତି ସେ ମୁନି ଗୋସାଇଁ ।
ତୋର ଶରୀର କୁଶଳେ ଅଛୁଟି କି ହରି
ସେ ବୋଇଲେ ତୁମ୍ଭ ହେତୁ କୁଶଳ ମୋହରି
ଶୁକ ବୋଇଲେକ ଶୁଣ ଆହେ ମହୀପାଳ
ଲୌହ ଦେଖି ଭୟ କଲେ ଶ୍ରୀକୃଷ୍ଣର ବାଳ ।
ଯେଉଁ ଲୌହେ ଯଦୁକୁଳ ବିନାଶ ଲଭିବ
ଯାହା ସେ ଭିଆଣ କରି ଅଛଇ ଦଇବ ।
ମୁନିଙ୍କର ଅଭିଶାପ ଅନ୍ୟଥା ନୁହଇ
ଆଗହୁଁ ଦଇବ ତାହା ଅଛଇ ଭିଆଇ ।
ଲୌହ ତେଜ ଦେଖିକରି ସର୍ବେ ଭୟ କଲେ
କୃଷ୍ଣଙ୍କୁ ଦେଖାଇବାକୁ ମନେ ବିଚାରିଲେ ।
ପ୍ରଦ୍ୟୁମ୍ନ ଶାମ୍ବର ମୁଖେ ସକଳ ନନ୍ଦନ
ଉଗ୍ରସେନର ସଭାରେ ମିଳିଲେ ବହନ ।
ରାମକୃଷ୍ଣଙ୍କୁ ଦେଖିଣ ଓଳଗି ହୋଇଲେ
ଖେଳର ଚରିତମାନ ସକଳ କହିଲେ ।
ପୁଣ୍ଡରୀକ ତୀର୍ଥେ ଖେଳୁଥିଲୁଁ ମହାହର୍ଷେ
ଶାମ୍ବେ ନାରୀବେଶ କରିଥିଲୁଁ ରଙ୍ଗରସେ ।
ଲୌହର ପାତ୍ର ଗୋଟିଏ ଗର୍ଭେ ଥିଲୁ ଦେଇ
ଗର୍ଭ ବସ୍ତ୍ର ଚିରି ପ୍ରାୟ ଦିଶିଲାକ ସେହି ।
ନଗରଙ୍ଗେ ଚାଲି ଆସୁଥିଲେ ମୁନିବର
କହିଲୁକେ ପୃଚ୍ଛା କଲୁଁ ତାହାଙ୍କ ଛାମୁର ।
ପୁତ୍ର ଦୁହିତା କି ଅଛି ଏହାର ଗର୍ଭରେ
ବିଚାରି କରିଣ ଏବେ କହ ମୁନିବରେ ।
ଉପହାସ ପ୍ରାୟ ତାହା ମଣିଲେକ ଋଷି
ଏହା ଗର୍ଭେ ପୁତ୍ର ଅଛି ଜାଣିଲୁ ବିଶେଷି ।
ଏହିକ୍ଷଣି ନାରୀକର ପ୍ରସବ କରିବ
ଜନମ ହୋଇଲେ ତୁମ୍ଭ ବଂଶ ନାଶ ଯିବ ।
ଏହି ଅଭିଶାପ ଦେଇ ମୁନି ଚଳିଗଲେ
ଶାମ୍ବର ବସନ ଫେଡ଼ି ପକାଇଲୁ ହେଳେ ।
ଲୌହର ଶୂଳ ଗୋଟିଏ ଭୂମିରେ ପଡ଼ିଲା
ପ୍ରଳୟ ଅଗ୍ନି ପରାୟେ ତେଜ ବିକାଶିଲା ।
ତାହା ଦେଖି ଆମ୍ଭେମାନେ ଚିତ୍ତେ ଭୟଙ୍କର
ତୁମ୍ଭର ଛାମୁରେ ଆସି କହିଲୁ ବିଚାର ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ମନେ ବିଚାରିଲେ
ଦଇବର ଘଟସୂତ୍ର ଘଟେ ଏତେକାଳେ ।
ମହାଋଷିଙ୍କ ବଚନ ଅନ୍ୟଥା ନୁହିଲା
ବ୍ରହ୍ମ-ଶାପ କିଏ ଅବା ମେଣ୍ଟେ ଦେହ ବହି ।
ଯୁଗ ଅବଶେଷ ଆସି ହୋଇଲାକ ଯହୁଁ
ଦଇବ ପୁରୁଷ ତାହା ବିଚାରିଲେ ତହୁଁ ।
ଆସ୍ଥାନ ଉପରେ ବସିଥିଲେ ମହାଋଷି
ଶିଷ୍ୟଙ୍କୁ ଘେନିଣ ତତକ୍ଷଣେ ଗଲେ ଖସି ।
ମୁନି କେଉଁଠାକୁ ଗଲେ କେହି ନ ଦେଖିଲେ
କାହାରିହିଁ ବଦନରୁ ତଥ୍ୟ ନ ପାଇଲେ ।
ଅନ୍ତର୍ଦ୍ଧାନ ହୋଇ ଯହୁଁ ଗଲେ ମୁନିବର
ମନେ ବିଚାର କରନ୍ତି ନନ୍ଦର କୁମର ।
ଉଗ୍ରସେନର ସଭାରୁ ଉଠି ଭଗବାନ
କୁମରମାନଙ୍କୁ ଘେନି ଚଳନ୍ତି ବହନ ।
ବଳରାମ ଶୁଣି ମନେ ମହାଭୟ କଲେ
ଯୁଗ ଶେଷ ହେଲା ବୋଲି ମନେ ବିଚାରିଲେ
ରାମକୃଷ୍ଣ ଦୁଇଜଣ କୁମାରଙ୍କୁ ଘେନି
ପୁଣ୍ଡରୀକ ତୀର୍ଥେ ଯାଇ ମିଳିଲେ ତକ୍ଷଣି ।
ସେମାନଙ୍କୁ ପଚାରିଲେ ଲୌହ ଅଛି କାହିଁ
ତୁମ୍ଭରେ ଦେଖାଇଦେଲେ ପଡ଼ିଅଛି ଯହିଁ ।
ଦେଖିକରି ଭୟ କଲେ ପ୍ରଭୁ ହଳଗ୍ରାହୀ
ବୋଇଲେ ମହା କର୍କଶ ବଳବନ୍ତ ଏହି ।

ପରଚଣ୍ଡ ଅଗ୍ନି ଜାଣି ଜନ୍ତୁଅଛି ଶୂଳ
ଗୋବିନ୍ଦ ତାହା ଦେଖିଣ ହୋଇଲେ ବ୍ୟାକୁଳ
ତାଙ୍କ ସଙ୍ଗତରେ ଥିଲେ ଯେଉଁ ଭୃତ୍ୟଗଣ
ସେମାନଙ୍କୁ ଆଜ୍ଞା ଦେଲେ ପ୍ରଭୁ ଭଗବାନ ।
ଏହି ଲୌହ ଘେନ ତୁମ୍ଭେ ଏଥୁଁ ଚଳିଯିବ
ନିଃଶେଷ କରିବା ପାଇଁ ଏହାକୁ ଘଷିବ ।
ଉତ୍ତର କୂଳରେ ଅଛି ଯେଉଁ ମାଳଗିରି
ବୃକ୍ଷ ଲତାମାନଙ୍କରେ ଅଛଇ ସେ ପୂରି ।
ତହିଁର ଉତ୍ତର ପାର୍ଶ୍ୱେ ଯମନକ ତୀର୍ଥ
ସହସ୍ରେକ ମନୁ ଯାଏ ତୀର୍ଥ ଉପଗତ ।
ସେହି ତୀର୍ଥମାନଙ୍କର ପଶ୍ଚିମ କଳର
ଚାରି କୋଶ ଚଉଡ଼ାରେ ଅଛି ଗିରିବର ।
ସେହି ଗିରି ଉପରକୁ ବେଗେ ଚଳିଯିବ
ସେଥିର ଉପରେ ଏହି ଶୂଳକୁ ଘଷିବ ।
ସେ ଗିରି ଅଧେ ପଡ଼ିଛି ସମୁଦ୍ର ଭିତରେ
ଲବଣ ପାଣିରେ ତାହା ଘଷିବ ଦୃଢ଼ରେ ।
ନିଃଶେଷ କରି ଘଷିବ ନ ରହିବ ଶେଷ
ଏହିପରି ଆଜ୍ଞା ଦେଲେ ପ୍ରଭୁ ନନ୍ଦଶିଷ୍ୟ ।
ଆଜ୍ଞା ପାଇ ଭୃତ୍ୟମାନେ ବେଗେ ଚଳଗଲେ
ଜମ୍ବୁଦ୍ୱୀପ ଯମନକ ତୀର୍ଥରେ ମିଳିଲେ ।
ମାଳଗିରିଠାରୁ ତ୍ରିଡ଼ ଚାରିକ୍ରୋଶ ଦୂର
ତହିଁ ଯାଇଁ ପରିବେଶ ହୋଇଲେ ସତ୍ୱର ।
ସେହି ସ୍ଥାନରେ ସତ୍ୱର ପ୍ରବେଶିଲେ ଯାଇ
ଯେଉଁରୂପେ କହିଥିଲେ ପ୍ରଭୁ ଭବଗ୍ରାହୀ ।
ଦେଖିକରି ପରଶଂସା କରି ଭୃତ୍ୟମାନେ
ସମୁଦ୍ରରେ ଅଧେ ପଡ଼ିଅଛି ଭଦ୍ୟମାନେ ।
ମହାପର୍ବତ ଉପରେ ଉଠିଲେକ ଯାଇ
ନାନାବିଧ ଫଳମାନ ସେଠାରେ ଅଛଇ ।
ପର୍ବତର ଉପରରେ ଶୂଳ ଠାବ କଲେ
ନିର୍ଭୟରେ ପର୍ବତର ଶିଖରେ ରହିଲେ ।
ସମୁଦ୍ର ପାଣି ପକାଇ ଘଷନ୍ତି ନିଠାଇ
ଘଷନ୍ତେଣ ତହୁଁ ବେଗେ ଫେନ ଉପୁଜଇ ।
ମହା ମହା ହୋଇ ଫେନ ସାଗରେ ଭାସିଲା
ସମୁଦ୍ରକୁ ଫିଙ୍ଗି ଦେଲେ ଯାହା ଶେଷ ଥିଲା
ମାଛ ତାହାକୁ ଭକ୍ଷିଲା ଆନନ୍ଦିତ ହୋଇ
କାହିଁ ନ ଯାଇ ସେ ମାଛ ତହିଁ ରହୁଥାଇ ।

ବିରୂପାକ୍ଷ ଶବର ଯେ କରେ ତହିଁ ବାସ
ପୁରୁଷାନୁକ୍ରମେ ସେହୁ କରଇ ନିବାସ
ସେହି ବନରେ ଅଟଇ ଶବରର ପଲ୍ଲୀ
ବସ୍ତୁ ନବର ଅଛଇ ତହିଁ ବାସ ତୋଳି ।
ବିରୂପାକ୍ଷର କୁମର କଣ୍ଟେଶ ହୋଇ
ସେହି ବନସ୍ତ ଗୋଟିକ ଆବୋରଣ ଥାଇ ।
ମୃଗ ହରିଣ ପ୍ରଭୃତି ମାରିଆଣେ ନିତ
ମାଂସ ଭକ୍ଷିଣ ଶବର ଗର୍ଭିକରେ ଶାନ୍ତ ।
କନ୍ଦମୂଳ ଫଳମାନ ବନରେ ଭକ୍ଷଇ
ଦେବ ମାନବ କାହାକୁ କେଭେ ନ ଡରଇ ।
ଫିରିଙ୍କ ନାଗଚ ସେହୁ ହସ୍ତେ ଘେନ କରି
ବନସ୍ତରେ ବୁଲୁଥାଇ ଶମ୍ବରାଦି ମାରି ।
ଦିନେ ମୃଗ ନ ପାଇଣ ଭ୍ରମିଣ ଫୁଟିଲା
କଇବର୍ତ୍ତର ଦୁଆରେ ଯାଇଣ ବସିଲା ।
ଦେଖିକରି କଇବର୍ତ୍ତ କରଇ ସମ୍ମାନ
ଖାଇବାକୁ ପଦାର୍ଥ ସେ ଦେଲାକ ବହନ ।
ଖାଇଣ ସେହି ଶବର ସନ୍ତୋଷ ଲଭିଲା
କୈବର୍ତ୍ତ ତାହା ସଙ୍ଗତେ ମଇତ୍ର ହୋଇଲା ।
ଶବର ଶୁଣିଣ ହେଲା ଆନନ୍ଦିତ ମନ
ସୁକୃତ ସେମାନେ କଲେ ସମୁଦ୍ର ମଧ୍ୟେଣ ।
ଦୁହେଁ ଏକମନ ହୋଇ ବନରେ ଥାଆନ୍ତି
ଅପୂର୍ବ ପଦାର୍ଥମାନ ପରସ୍ପରେ ଦ୍ୟନ୍ତି ।
ଏମନ୍ତେଣ କିଛି କାଳ ତହୁଁ ଗଲା ବହି
ଦିନେ କୈବର୍ତ୍ତ ସମୁଦ୍ର ମଧ୍ୟେ ଜାଲ ବାହି ।
ଯେବଣ ମୀନଗୋଟିକ ଲୌହ ଗିଳିଥିଲା
ଦଇବବଶରେ ସେହୁ ଜାଲେରେ ପଡ଼ିଲା ।
ତାହାକୁ ଘେନ କରିଣ ଅଇଲା କୈବର୍ତ୍ତ
ଭାର୍ଯ୍ୟାକୁ ବୋଇଲା ସେହୁ ଶୁଣ ଗୋ ସଙ୍ଗାତ
ବଡ଼ ମୀନ ଗୋଟିଏକ ପଡ଼ିଛି ଜାଲରେ
ଦେଇଆସ ବେଗେ ଯାଇ ମଇତ୍ରଙ୍କ ଘରେ ।
ଗୃହସ୍ଥ ବଚନ ଶୁଣି ଭାରିଯା ଉଠିଲା
ଗୁଙ୍ଗୁଡ଼ା ଭିତରେ ନେଇ ମୀନ ପୂରାଇଲା ।
ସେ ଶବରର ପଲ୍ଲୀକି ବେଗେ ଚଳିଯାଇ
ମଇତ୍ରର ଘରେ ମୀନ ପକାଇଲା ନେଇ ।
ଦେଖିଣ ସେହି ଶବର ସନ୍ତୋଷ ଲଭିଲା
ହରିଣ ଗୋଟିଏ ସେହୁ ମାରି ଆଣିଥିଲା ।

ଶ୍ରଦ୍ଧାକରି ମିତଣୀର ହାତରେ ଦିଅଇ
କନ୍ଦମୂଳ ଗୁଡ଼ାଏକ ତହିଁରେଣ ଥୋଇ ।
ମୃଗ ଘେନିଣ କୈବର୍ତ୍ତୀ ଆସେ ନିଜ ଘରେ
ମିତ୍ର ଘର ଚର୍ଚ୍ଚା କହି ଗୃହସ୍ଥ ଆଗରେ ।
ଶୁଣିଣ ସେହି କୈବର୍ତ୍ତ ସନ୍ତୋଷ ଲଭିଲା
ତଳବ ଭବିଷ୍ୟ ଶୁଣ ଅଭିମନ୍ୟୁ ବାଳା ।
ଶରଧା କରି ଶବର ସେ ମୀନ କାଟିଲା
ବେକ ପାଖରୁ ତାହାକୁ ବେନିଖଣ୍ଡ କଲା ।
ଦେଖିଲା ପେଟ ଭିତରୁ ଶୁକ୍ଳବର୍ଣ୍ଣ ହୋଇ
ଲୌହ ଖଣ୍ଡିଏ ତହିଁରେ ଯତନେ ଅଛଇ ।
ମାଛକୁ କାଟିଣ ସେହୁ ରାନ୍ଧିବାକୁ ଦେଲା
କମାର ଗୃହକୁ ବେଗ ହୋଇ ଚଳିଗଲା ।
ସେହି ଲୁହା ଖଣ୍ଡି ନେଇ କମାରକୁ ଦେଇ
ଦେଖିଣ କମାର ପୁଅ ସନ୍ତୋଷ ଲଭଇ ।
ଏ ଲୁହା ଖଣ୍ଡିକ କାହୁଁ ପାଇଲୁ ବୋଇଲା
କିଣି କେନା କରି ଶରେକ ତହୁଁ ଗଢ଼ି ଦେଲା ।
ଘେନିକରି ଶବର ତା ଆସେ ନିଜପୁର
ଏକମନେ ଶୁଣ କୁ ହୋ ପରୀକ୍ଷ ନୃବର ।
ଏମନ୍ତ ପ୍ରକାରେ କିଛୁ ଦିନର ଅନ୍ତରେ
ନାରାୟଣ ବିଜେ କଲେ ଦ୍ୱାରକା ସଭାରେ ।
ବ୍ରହ୍ମଶାପ କଥାକୁ ଶ୍ରୀକୃଷ୍ଣ ଭୟ କଲେ
ଦିନୁ ଦିନ ପ୍ରଭୁ ତେଣୁ ଦୁର୍ବଳ ହୋଇଲେ ।
ନିରନ୍ତର ଚିନ୍ତାକଲେ ଦେବ ନାରାୟଣ
କେମନ୍ତେ ନାଶ କରିବି ଏତେକ ନନ୍ଦନ ।
କୁମରମାନଙ୍କୁ ଗୃହେଁ ରଖୁଥାନ୍ତି ହରି
ଅଙ୍ଗର ଫୁଲ ଚନ୍ଦନ ଲାଗେ ବିଷପରି ।
ସବୁ ବେଳରେ ନବର ମଧ୍ୟେ ପଶିଥାନ୍ତି
ଗୋବିନ୍ଦଙ୍କୁ କେହି କେବେ ଭେଟ ନ ପାବନ୍ତି
ଏହିକାଳେ ଉତପାତ ହେଲା ଦ୍ୱାରକାରେ
କୁହୁଡ଼ି ମାଡ଼ିଲା ପ୍ରାୟ ଦିଶଇ ଦିନରେ ।
ଦଇବେ ବୈଶାଖ ମାସ ଗ୍ରୀଷମ ଅଟଇ
ସେ ଦିନରେ ବହୁତ କୁହୁଡ଼ି ପ୍ରକାଶଇ ।
ପ୍ରଚଣ୍ଡ ହୋଇଣ ବେଗେ ବହଇ ପବନ
କେତେବଡ଼ ନଗ୍ର ଗୋଟା ଦିଶେ ବିଲକ୍ଷଣ
ଭୂମିକମ୍ପ ହେଲେ ଯେହ୍ନେ ହୁଏ ବସୁନ୍ଧରା
ସେହି ପ୍ରକାରେ କମ୍ପଇ ଦ୍ୱାରକାନଗରୀ ।

ମେଳ ହୋଇ ସାତ ପାଞ୍ଚ ବସିଣ ଭାବନ୍ତି
ଶ୍ରୀକୃଷ୍ଣଙ୍କର ଦର୍ଶନ ଦିନେ ନ ପାବନ୍ତି ।
ଯେଉଁ ଦ୍ୱାରକାପୁରରେ ଯମ ଭୟ ନାହିଁ
ସୁଦର୍ଶନ ଚକ୍ର ଯହିଁ ନିରତେ ଭ୍ରମଇ ।
ମାଛି ପଡ଼ିଲେ ଯହିଁରେ ହୁଏ ନବଖଣ୍ଡ
ତହିଁର ପରଜାମାନେ ହେଲେ ଲଣ୍ଡଭଣ୍ଡ ।
ଦଇବର କୃତ୍ୟ ଯାହା ଶୁଣ ନରସାଇଁ
ଋଷିଙ୍କ ଶାପକୁ ଭୟ କଲେ ଯଦୁସାଇଁ ।
ଏସନକ ଦ୍ୱାରକାରେ ହୋଇଲା ଉତ୍ପନ୍ନ
ଉଗ୍ରସେନ ନରପତି କରେ ବିସ୍ମରଣ ।
ଉଦ୍ଧବ ଅକ୍ରୂରକୁ ସେ ବୁଝିଁ ନରସାଇଁ
କି ବୁଦ୍ଧି କରିବା ବୋଲି କଥାନ୍ତ ପୁଚ୍ଛଇ
ଘୋର ଅନ୍ଧକାର ପୂର୍ଣ୍ଣ ହେଲା ବସୁନ୍ଧରା
ବୈଶାଖ ମାସେ କୁହୁଡ଼ି ଦେଖ ମାଡ଼ ପଡ଼ି ।
ଦିବସରେ ଆକାଶରେ ଉଦେ ତାରାଗଣ
ଏସନ ଉତ୍ପାତ ହେଲା ଦ୍ୱାରକା ଭୁବନ ।
ନଗ୍ରେ ପଶିଣ ଶୃଗାଳ ବୁଲି ମାଳ ମାଳ
ପ୍ରଜା ଜନମାନେ ସର୍ବେ ହେଲେ ଖଳବଳ ।
ନଗର ଭିତରେ ପଶିଛନ୍ତି ଭାବଗ୍ରାହୀ
ରାମ ପୁଚ୍ଛନ୍ତି ଶ୍ରୀକୃଷ୍ଣ ରହିଛନ୍ତି କାହିଁ ।
ଉଗ୍ରସେନର ସଭାକୁ ଦିନେ ନ ଆସନ୍ତି
ଗୋବିନ୍ଦଙ୍କୁ ନ ଦେଖିଣ ବିକଳ ମୋ ମତି ।
ଏମନ୍ତ ପ୍ରକାରେ କେତେ କାଳ ବହିଗଲା
ତେଡ଼େବଡ଼ ନଗ୍ରଗୋଟା ଉଚ୍ଛନ୍ନ ହୋଇଲା ।
ଏକାନ୍ତରେ ଦିନକରେ ଉଦ୍ଧବ ଅଇଲେ
ଶ୍ରୀକୃଷ୍ଣଙ୍କ ଦରଶନ କରିବା ଭାଳିଲେ ।
ନିତ୍ୟକର୍ମମାନ ସବୁ ଉଦ୍ଧବ ସାରିଲେ
ଶ୍ରୀକୃଷ୍ଣଙ୍କର ନବର ଦ୍ୱାରରେ ମିଳିଲେ ।
ଉଦ୍ଧବର ଆସିବାର ଜାଣି ଦାମୋଦର
ତକ୍ଷଣେ ମିଳିଲେ ଯାଇ ତାଙ୍କ ନିକଟର ।
ବିନୟରେ ନମସ୍କାର କଲେକ ଚରଣେ
ବୋଇଲେ ସେ ଦୟା ମୋତେ କର ନାରାୟଣେ
ଉଠ ଉଠ ବୋଲି ତାଙ୍କୁ ପ୍ରଭୁ ଆଜ୍ଞା ଦେଲେ
ଶ୍ରୀହସ୍ତରେ ଉଦ୍ଧବକୁ ବଦନ ଛୋଇଲେ ।
ଆଶ୍ୱାସନା କରି ବସାଇଲେ ସନ୍ନିଧିର
କର ଯୋଡ଼ିଣ ଉଦ୍ଧବ ବୋଲଇ ଗମ୍ଭୀର ।

ନାରାୟଣଙ୍କ ସ୍ୱରୂପ ଦେଖିଣ ଉଦ୍ଧବ
ବୋଲେ ଏ ପୁର ତେଜିବ କିବା ବାସୁଦେବ
ଏ କଳେବର ତେଜି କି ଯିବ ନିଜପୁରୀ
ଏସନ ପ୍ରକାର ମୋତେ ଦିଶୁଛି ମୁରାରି ।
ଶଙ୍ଖ ଚକ୍ର ଗଦା ପଦ୍ମ ନ ଶୋଭେ ହସ୍ତର
ଚନ୍ଦ୍ରମୁଖ ଗୋଟିକି ତ ଦିଶେ ଅସୁନ୍ଦର ।
ଏହି ଚନ୍ଦ୍ରଶାଳାପୁରେ ଶୋଭା ପାଉନାହିଁ
ଅଲକ୍ଷଣ ପ୍ରାୟେ ମୋତେ ଦିଶେ ଭବଗ୍ରାହୀ ।
ରଙ୍ଗବତୀର ତେଜଲ ପ୍ରାୟେ ମଣୁଅଛି
ସ୍ୱକାରଣ ଆଜ୍ଞା ମୋତେ ଦିଅ ହେ ଶ୍ରୀହରି ।
ଗୋବିନ୍ଦ ବୋଇଲେ ଯାହା ପଚାରିଲୁ ମୋତେ
ଏକମନ ହୋଇ ଶୁଣ କହିବଇଁ ତୋତେ ।
ଏ ଦ୍ୱାପର ଯୁଗ ଶେଷ ହୋଇଲାକ ଆସି
ଜଳରେ ଏହି ଦ୍ୱାରକାପୁର ଯିବ ଭାସି ।
ନିଜର କଳେବରକୁ ତେଜିବଇଁ ମୁହିଁ
ତଦନ୍ତରେ ନିଜଧାମେ ଅବଶ୍ୟ ଯିବଇଁ ।
ବ୍ରହ୍ମଶାପ ଫଳେ ମୋର ବଂଶ ଯିବ ନାଶ
ତୋହର ଆଗରେ ମୁହିଁ କହିଲି ସନ୍ଦେଶ ।
ଯେଣୁ ତୁହି ଅଟୁ ମୋର ପରମ ଭକତ
ତେଣୁକରି ତୋତେ ମୁହିଁ କହିଲି ଗୁପତ ।
ତୁହି ପରମ ଭକତ ଏଥେଁ ଅଟୁଁ ରହି
ତୁହି ଥିବାରୁ ଏ ପୁର ଜଳେ ନ ବୁଡ଼ଇ ।
ଯେତେବେଳେ ସିନ୍ଧୁମାଡ଼ ଆସିବ ଏ ପୁରେ
ତେତେବେଳେ ମୁହିଁ ଛାଡ଼ିଯିବି କଳେବର ।
ଏଡ଼େ କଥା ନିଶ୍ଚେ କରି ଜାଣିଥାଅ ତୁହି
ଏଣୁକରି ଏହିପୁରେ ଥିବା ନ ଯୋଗାଇ ।
ଶ୍ରୀକୃଷ୍ଣଙ୍କର ମୁଖରୁ ଏସନକ ଶୁଣି
ସ୍ତମ୍ଭୀଭୂତ ହୋଇ ରହିଲାକ ଜ୍ଞାନମଣି ।
ବିକଳ ହୋଇଣ ସେହୁ କରଇ ରୋଦନ
ଅନାଥ କରିଣ ମୋତେ ଯିବୁ ଭଗବାନ ।
ତୋହର ଶ୍ରୀମୁଖ ମୁହିଁ ନିତ୍ୟ ଦେଖୁଥାଇ
ତୋହର ନିର୍ମାଲ୍ୟ ଗୋଟି ଗର୍ଭକୁ କ୍ଷେପଇ ।
ଗର୍ଭକୁ କ୍ଷେପି ଶରୀର କରଇ ନିର୍ମଳ
ଏହା ଛାଡ଼ି କାହିଁ ଯିବି କହ ଦାମୋଦର ।
ମୁହିଁ ସିନା ଅରକ୍ଷିତ ଅଟଇ ପାମର
ଶ୍ରୀଚରଣ ବ୍ୟତୀତ ମୁଁ ନ ଜାଣେ ଅପର ।
ଶ୍ରୀଚରଣ ବିନୁ ମୋର ଅନ୍ୟ ଆଶ୍ରେ ନାହିଁ
ଅନାଥର ନାଥ ମୋତେ ଛାଡ଼ କାହିଁପାଇଁ ।
ଭୋଜନେ ଶୟନେ କେଭେ ନ ଛାଡ଼ ସଙ୍ଗତେ
ତୁ ଯେ ନିର୍ଦ୍ଦୟ ବଚନ କହୁ କିମ୍ପା ମୋତେ
ମୁହିଁ ଯେ ବସୁରିଥିଲି ସୁଖେ ଯିବ ଦିନ
ଶ୍ରୀପଦ୍ମପାଦ ସେବଣ ବିସର୍ଜିବି ପ୍ରାଣ ।
ଏତେକ ବୋଲି ଉଦ୍ଧବ ରୋଦନ କରଇ
କଣ୍ଠରୁ ସ୍ୱର ତାହାର ଗଦ ଗଦ ହୋଇ ।
ଦେନି ନୟନରୁ ଗଳୁଅଛି ଅଶ୍ରୁଜଳ
ତାହା ଦେଖିଣ ଶ୍ରୀକୃଷ୍ଣ ହୁଅନ୍ତି ବିକଳ ।
ଭକତର ବିକଳରେ ଭଣି ଜଗନ୍ନେତା
ତୁହି କିପାଇଁ ମନରେ କରୁଅଛୁ ଚିନ୍ତା ।
ଏବେ ତୁହି ନିଶ୍ଚିନ୍ତରେ ଥାଅ ଦ୍ୱାରକାରେ
ଯେତେବେଳେ ଯିବୁ ଆମ୍ଭେ ନେବୁ ସଙ୍ଗତରେ
ଭକତବତ୍ସଳ ପ୍ରଭୁ ଭକ୍ତେ ଦୟାକଲେ
ଏହା କାହାକୁ ନ କହ ପ୍ରଭୁ ଆଜ୍ଞା ଦେଲେ ।
ଯାଅ ଯାଅ ବୋଲି ତାକୁ ଶ୍ରୀମୁଖେ କହିଲେ
ଗୋପମୟ କଥା ଏହୁ ଜାଣିଥାଅ ଭଲେ ।
ପୟରେ ନମି ଉଦ୍ଧବ ହୋଇଲା ବାହାର
ଦେଖେ ନଗରେ ଅନାର ଦ୍ୱାରବତୀ ପୁର ।
ଅଦଭୁତ ଭୟଙ୍କର ଦିଶୁଅଛି ମହୀ
ମନୁଷ୍ୟଙ୍କର ଅଙ୍ଗରେ ଲକ୍ଷ୍ମୀ ନ ଦିଶଇ ।
ଯହିଁ ନିତ୍ୟ ଚରଚଇ ସିନ୍ଧୁର ଦୁହିତା
ସେ ପୁର ଗୋଟି ଦିଶଇ ଏଡ଼େକ ଅବସ୍ଥା ।
ଯେଉଁ କଥା ଶ୍ରୀମୁଖରେ ଭଣିଲେ ମୋହନ
ଏ ପୁର ନିଶ୍ଚେ ତେଜିବେ ନନ୍ଦର ନନ୍ଦନ ।
ଆପଣାର ଗୃହେ ଯାଇ ପ୍ରବେଶ ହୋଇଲା
ଜଗନ୍ନାଥଙ୍କୁ ମନରେ ସୁମରଣା କଲା ।
ଗୋବିନ୍ଦ ଗୋବିନ୍ଦ ବୋଲି ସୁମରଇ ମନେ
ଶ୍ରୀକୃଷ୍ଣ ନାମ ଗୋଟିକି ସ୍ମରି ଅନୁକ୍ଷଣେ ।
ରାମନାମ ସୁମରି ସେ ପୁହାଇ ରଜନୀ
ଗୋବିନ୍ଦଙ୍କର ଚରଣେ ଲଗାଇ ମୂର୍ଦ୍ଧନୀ ।
ହୃଦୟର କଷ୍ଟରେ ଯେ ବଞ୍ଚିଥାଇ ଦିନ
ବିଷର ପ୍ରାୟେ ମଣିଲା ଭୋଜନ ଶୟନ ।
ଶୁଣ ଆହେ ପରୀକ୍ଷିତ ଶ୍ରୀକୃଷ୍ଣ ଚରିତ
ହରିବଂଶ ଶୁଣି ପାପ ନ ଥାଉ ତୋ ଗାତ ।

—❋—

## କୃଷ୍ଣଙ୍କର ଆଦେଶରେ ଅକ୍ରୁର ଉଦ୍ଧବର ବଦରିକାଶ୍ରମ ଗମନ ଓ ଦ୍ୱାରକାପୁରେ କୋଳୁଆ ଭୟ

ରାଜା ପଚାରଇ ବ୍ୟାସ ନନ୍ଦନଙ୍କୁ ଚାହିଁ
ଏଥୁ ଅନନ୍ତରେ କିସ କଲେ ଭାବଗ୍ରାହୀ ।
ସନ୍ତୋଷ ଚିତ୍ତରେ ମୋତେ କହ ମୁନିବର
ଶୁଣିଲେ କୃତାର୍ଥ ହେବ ମୋହର ଶରୀର ।
ଏକଥା ଶୁଣି ବୋଲନ୍ତି ବ୍ୟାସଙ୍କ ନନ୍ଦନ
ସାବଧାନ ହୋଇ ଶୁଣ ପରୀକ୍ଷ ରାଜନ ।
ଏକସ୍ଥାନେ ବସିଥାନ୍ତି କମଳାରମଣ
ଉଚ୍ଚାଟ ହୋଇଅଛଇ ପ୍ରଭୁଙ୍କର ମନ ।
ପୁତ୍ରମାନେ ଯେବେ ମାତ୍ର ଦର୍ଶନ ନ ପାନ୍ତି
ଅଷ୍ଟ ପାଟବଂଶୀମାନେ ଚରଣେ ଖଟନ୍ତି ।
ଯେବେ ଭକତ ଅକ୍ରୁରେ ସୁମରିଲେ ମନେ
ଶ୍ରୀକୃଷ୍ଣଙ୍କ ମନ ଜାଣି ଗଲା ସେ ତକ୍ଷଣେ ।
ଭିତରପୁରକୁ ସେହୁ ବେଗେ ପଶିଗଲା
ରହ ରହ ବୋଲିକରି କେହି ନ ବୋଇଲା ।
ଭୟ ନ କରି ଅକ୍ରୁର ଭିତରେ ପଶଇ
ରତ୍ନଖଟେ ବିଜେ କରିଅଛନ୍ତି ମାଧୋଇ ।
ଖଣ୍ଡେଦୂରୁ ପ୍ରଭୁଙ୍କର ଚରଣେ ନମିଲା
ସାଷ୍ଟାଙ୍ଗ ହୋଇ ଅକ୍ରୁର ପାଦରେ ଶୋଇଲା
ଉଠ ଉଠ ବୋଲି ତହୁଁ ମୁଖେ ଆଜ୍ଞା ଦେଲେ
ଉଠିଣ ଅକ୍ରୁର କର ଯୋଡ଼ିଣ ରହିଲେ ।
ଦେଖିଲା ପ୍ରଭୁଙ୍କ ଦେହ ଶୋଭା ନ ଦିଶଇ
ଯେ ଅଧରକୁ ସଂସାରେ ପଟାନ୍ତର ନାହିଁ ।
ସେହି ଅଧର ଏବେ ତ ଦିଶୁଛି ମଳିନ
ଦେଖିଲାକ ଅଲକ୍ଷଣ ଦିଶେ ପୁରମାନ ।
ଚନ୍ଦ୍ରଶାଳା ପୁର ଗୋଟି ଶୋଭା ପାଉନାହିଁ
ଦେଖିକରି ଅକ୍ରୁରର ବାକ୍ୟ ନ ସ୍ଫୁରଇ ।
କରପତ୍ର ଯୋଡ଼ି ଉଭା ହୋଇଛି ଅକ୍ରୁର
ହୃଦଗତରେ ଚିନ୍ତଇ ପ୍ରଭୁ ଚକ୍ରଧର ।
ଦେବକୀପୁତ୍ର ଅଟନ୍ତି କରୁଣାଜଳଧି
ସକଳ ବ୍ୟାଧିକି ଯାର ନାମ ମହୌଷଧି ।
ଦୁଃଖୀଜନଙ୍କର ବନ୍ଧୁ ଜଗତର ନାଥ
ସଂସାରର ଜନହିତେ ଶଙ୍ଖ ଚକ୍ର ହସ୍ତ ।

ମୁହିଁ ଯିବା ଅରକ୍ଷିତ ଅଟଇ ଗୋସାଇଁ
ଦୟାକର ମୋତେ ପ୍ରଭୁ କମଳାର ସାଇଁ ।
ଏତେକ ସ୍ତୁତି କରିଣ ଚରଣେ ନମଇଁ
ମସ୍ତକରେ କର ଦେଇ ଉଭା ହୋଇ ରହି ।
ଗୋବିନ୍ଦ ମୁଖକୁ ଚାହିଁ ବୋଲଇ ବଚନ
ମୋତେ କିପାଇଁ ସ୍ମରଣ କଲ ଜନାର୍ଦ୍ଦନ ।
ମୋହର କି ପାପ କର୍ମ ଦେଖି ଦାମୋଦର
ମାୟା କରିଣ ଦେଖାଇ ଏ ରୂପ ତୋହର ।
ମୁହିଁ ଅରକ୍ଷିତ ଅଟେ ନ ଜାଣଇ କିଛି
ତୋହର ଏ ରୂପ ଦେଖି ବିକଳ ହେଉଛି ।
ଶ୍ରୀହସ୍ତକୁ ଶଙ୍ଖ ଚକ୍ର ଶୋଭା ପାଉନାହିଁ
ନୀଳବର୍ଣ୍ଣ ଦେହ ଗୋଟା ଅଶୋଭା ଦିଶଇ ।
ହା କୃଷ୍ଣ ହା କୃଷ୍ଣ ବୋଲି କରଇ ରୋଦନ
ଦୁଇ ନୟନରୁ ବହେ ଅଶ୍ରୁ ଜଳମାନ ।
ଗୋବିନ୍ଦ ବୋଇଲେ ଦୁଃଖ ନ କର ଅକ୍ରୁର
ତାହାର ହସ୍ତ ଧରିଣ ବସାନ୍ତି ପାଶର ।
ତହୁଁ ଅକ୍ରୁର ବୋଇଲେ ଶୁଣ ଭାବଗ୍ରାହୀ
ତୋ ଗତି ଦେଖି ମୋହର ଦେହ ନ ରହଇ
ମାୟା କରି ଏ ରୂପକୁ ଦେଖାଉଛ ମୋତେ
ଏ ରୂପ ଛାଡ଼ିବା ପ୍ରାୟ ଦିଶେ ଜଗନ୍ନାଥେ ।
ଅକ୍ରୁର ବଚନ ଶୁଣି କହନ୍ତି ଶ୍ରୀହରି
ତୁହି ମୋହର ପ୍ରାଣର ଅଟୁ ସମସରି ।
ତୁମ୍ଭଙ୍କୁ ଛାଡ଼ିଣ ମୁହିଁ କାହିଁକି ଯିବଇଁ
କେବେହେଁ ତୁମ୍ଭଙ୍କୁ ଛାଡ଼ି ନ ଯିବଇଁ ମୁହିଁ ।
ଏହିରୂପ ଛାଡ଼ିଣ ମୁଁ ଯିବି ନିଜଧାମ
ତୁହି ଏବେ ଚାଲିଯାଅ ବଦରିକାଶ୍ରମ ।
ମୋହର ଏ ରୂପଗୋଟି ଆଗରେଣ ଥୋଇ
ତପସ୍ୟା ଆରମ୍ଭ କରି ବସିଥାଅ ତୁହି ।
ଏସନ କହନ୍ତେ ଭୟେ ଅକ୍ରୁର କହିଲା
ବିକଳ ହୋଇ ଗୋବିନ୍ଦ ଚରଣେ ନମିଲା ।
ଏତେ ନିର୍ଦ୍ଦୟ କିପାଇଁ ହେଉଛ ଗୋସାଇଁ
ତୋତେ ଛାଡ଼ି କିସ ତପ କରିବଇଁ ମୁହିଁ ।
ତୁହି ଏତେ କପଟ ନ କର ଜନାର୍ଦ୍ଦନ
ଶ୍ରୀଚରଣ ବିନୁ ମୁହିଁ ନ ଜାଣଇ ଆନ ।
ଶ୍ରୀଚରଣ ଉଦକ ମୁଁ ସର୍ବଦା ଭକ୍ଷଇ
ନୀଳ ବଦନ ଗୋଟିକି ନୟନେ ଦେଖଇ ।

ଏତେ ଲାଭ ଛାଡ଼ି ତପ ଆଚରିବ ପୁଣି
ଏତେ ନିର୍ଦ୍ଦୟ କିମ୍ପାଇ ହେଲ ଚକ୍ରପାଣି ।
ଏତେ କହିଣ ଅକ୍ରୂର କାନ୍ଦେ ପୁଣ ପୁଣ
ଅକ୍ରୂରର ବିକଳକୁ ଜାଣି ଭଗବାନ ।
ତାଙ୍କୁ ଆଶ୍ୱାସନା କରି କହନ୍ତି ଗୋବିନ୍ଦ
କାହିଁ ପାଇଁ ଅକ୍ରୂର ତୁ ହେଉଛୁ ଅବୋଧ ।
ତୋହର ବିକଳ ମୁହିଁ ନ ପାରଇ ସହି
ମୋହର ଦେହର ପଞ୍ଚଆତ୍ମା ଅଟୁ ତୁହି ।
ଇଙ୍ଗା ଅବତାର କେଳ ସମ୍ପୂର୍ଣ୍ଣ ହୋଇଲା
ଚିନ୍ତା ତୁହି ନ କର ହୋ ସଫଳାର ବଳା ।
ଯିବ ମୁହିଁ ନିଜ ଧାମ ନ ପାରଇ ରହି
ଦେବଦୂତ ଆସିଥିଲେ ମୋତେ ନେବା ପାଇଁ
ତୁମ୍ଭେ ଏଥୁ ଗଲେ ମୁହିଁ ଛାଡ଼ିବି ଏ ପୁର
ମୁହିଁ ଗଲେ ଜନ ପ୍ରଜା ହେବେ ଛାରଖାର ।
ତୁମ୍ଭେ ତ ଧର୍ମ ପୁରୁଷ ଅଟ ହୋ ଅକ୍ରୂର
ତୁମ୍ଭେ ଥିଲେ ଦ୍ୱାରକା ନ ବୁଡ଼ିବ ଜଳର ।
ବଦରିକା ଆଶ୍ରମକୁ ଚଳ ଏହିକ୍ଷଣ
ମୋହର ଏହି ବଚନ ଦୃଢ଼ କରି ଶୁଣ ।
ନ ଗଲେଣ ଅଭିଶାପ ପାଇବୁ ତୁ ଭଲେ
ନିଶ୍ଚିନ୍ତ ହୋଇଣ ରହ ବଦ୍ରିକାଶ୍ରମରେ ।
ଗୋବିନ୍ଦଙ୍କର ମୁଖରୁ ଏସନକ ଶୁଣି
ଆତ୍ମାର ମଧ୍ୟରେ ସେହୁ ଭାଳ ପୁଣି ପୁଣି ।
ଅକ୍ରୂରର ମନ କଥା ଜାଣିଲେ ଅଚ୍ୟୁତ
ନାରାୟଣ ଶାଳଗ୍ରାମ ଘେନିଲେ ଶ୍ରୀହସ୍ତ ।
ଅକ୍ରୂର ହସ୍ତରେ ତାହା ବେଗେ ଦେଲେ ତୋଳି
ଏ ପ୍ରତିମା ଘେନ ଏହିକ୍ଷଣି ଯାଅ ଚଳି ।
ଏହି ରୂପକୁ ସ୍ଥାପିଣ ତପ ସ୍ଥାନେ ବସ
ଏହାର ଉଦକ ତୁହି କରୁଥିବୁ ଗ୍ରାସ ।
ଏହାର ନିର୍ମାଲ୍ୟ ତୁହି ନିତ୍ୟରେ ଭକ୍ଷିବୁ
ତୁଳସୀର ଜଳ ଘେନ ଏରୂପେ ପୂଜିବୁ ।
ଅନ୍ତଃକାଳେ ଆମ୍ଭେ ପୁଣି ଆସିଣ ସତ୍ୱରେ
ତୁମ୍ଭଙ୍କୁ ଲୀନ କରିବା ଆମ୍ଭର ଶରୀରେ ।
ଆଜ୍ଞା ପାଇଣ ଅକ୍ରୂର ତ୍ୱରିତେ ଉଠିଲା
ଶ୍ରୀଗୋପୀନାଥ ଚରଣେ ନମସ୍କାର କଲା ।
ଆଜ୍ଞା ପାଇ ଭକ୍ତବର ହୋଇଲା ବାହାର
ଲକ୍ଷ୍ମୀ ନାରାୟଣ ମୂର୍ତ୍ତି ଘେନିଣ ଶିରର ।

ଦ୍ୱାରକାଭୁବନୁ ବୀର ବାହାର ହୋଇଲା
ବଦରିକା ଆଶ୍ରମରେ ଯାଇଣ ମିଳିଲା ।
ଚଡ କଂଚନ ପ୍ରାସାଦ ଗୋଟିଏ ତିଆରି
ଲକ୍ଷ୍ମୀ ନାରାୟଣ ମୂର୍ତ୍ତି ତହିଁରେ ସ୍ଥାପଇ ।
ଏହି ରୂପକୁ ସେ ଧ୍ୟାନ କରିଣ ବସିଲା
ଧନ ଜନ କୁଟୁମ୍ବାଦି ସବୁ ପାସୋରିଲା ।
ଶ୍ରୀକୃଷ୍ଣ ନରହରି ମୁକୁନ୍ଦ ମୁରାରି
ନିଶ୍ଚିନ୍ତେ ଜପିଲା ସେହୁ ସକଳ ପାସୋରି ।
ଯେତେବେଳରେ ଅକ୍ରୂର ନିବାରିଣ ଗଲା
ଗୋବିନ୍ଦଙ୍କ ମନ ତହୁଁ ଉଦାସ ହୋଇଲା ।
ପୁଣିହିଁ ସେ ଉଦ୍ଧବକୁ ସୁମରିଲେ ମନେ
ଉଦ୍ଧବ ଆସନ ଗୋଟି ଟଳେ ତତକ୍ଷଣେ ।
ଗୃହ ଭିତରୁ ଉଦ୍ଧବ ବାହାର ହୋଇଲା
ଗୋବିନ୍ଦଙ୍କ ଚରଣରେ ନମସ୍କାର କଲା ।
ନମସ୍କାର କରିଣ ସେ କହଇ ବଚନ
କି ନିମନ୍ତେ ସୁମରଣା କଲ ନାରାୟଣ ।
ଶ୍ରୀହରି ଆଜ୍ଞା ଦିଅନ୍ତି ଯାଅ ତପେ ତୁହି
ତୁ ଗଲେ ମୁହିଁ ଛାଡ଼ିବି ଏବେ ନିଜ ଦେହୀ ।
ଏକଥା ଶୁଣି ଉଦ୍ଧବ ଚରଣେ ନମଇଁ
ହେ ପ୍ରଭୁ କେବେହେଁ ତୋତେ ନ ଛାଡ଼ିବି ମୁହିଁ
ଉଦ୍ଧବ ଭକ୍ତର ମନ ଜାଣି ଚକ୍ରପାଣି
ମାୟାକରି ତାର ମନ ମୋହିଲେ ସେ ପୁଣି ।
ତହୁଁ ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ମହାବୀର
ତପସ୍ଥାନେ ବେଗେ ଯାଅ ବିଳମ୍ବ ନ କର ।
ଏତେ କହି ଚରଣର ପାଦୁକା ଘେନିଲେ
ଉଦ୍ଧବର ହସ୍ତକୁ ସେ ବଢ଼ାଇଣ ଦେଲେ ।
ଏହା ଘେନି ବଦରିକା ଯାଅ ବେଗେ ଚଳି
ହରଷ ହୋଇଣ ଆଜ୍ଞା ଦିଅନ୍ତି ବନମାଳୀ ।
ଉତ୍ତରାଙ୍କୁରେ ବସିଣ ତପ ଆରମ୍ଭିବୁ
ମୋହର ଏହି ରୂପକୁ ହୃଦରେ ଧରିବୁ ।
ଏହି ରୂପକୁ ମୋହର କରିଥିବୁ ଲକ୍ଷ୍ୟେ
ଅନ୍ତଃକାଳେ ଲୀନ ହେବୁ ମୋହର ଏ କାୟେ ।
ଏତେକ ଶୁଣି ଉଦ୍ଧବ ସତ୍ୱରେ ଉଠିଲା
ଶ୍ରୀଚରଣର ପାଦୁକା ହସ୍ତରେ ଘେନିଲା ।
ମଥାରେ ଲଗାଇଣ ସେ ଉଠିଲା ବହନ
ଯିବ ତପସ୍ଥାନେ ଆଜ୍ଞା ଦିଅ ଭଗବାନ ।

ଗୋବିନ୍ଦଙ୍କର ଚରଣେ ନମସ୍କାର କରି
ଶ୍ରୀଚରଣ ପାଦୁକାକୁ ମସ୍ତକରେ ଧରି ।
ଉତ୍ତରକୁ ମୁଖ କରି ବାହାର ହୋଇଲା
ଶ୍ରୀକୃଷ୍ଣଙ୍କ ନାମଟି ହୃଦରେ ସ୍ମରିଲା ।
ପୂର୍ବ ଦାରୁ ବୃକ୍ଷ ମୂଳ ଗ୍ଳାନି କରି ଆଶ
ଶ୍ରୀନାରାୟଣ ଚରଣେ ଲଗାଇ ମୁଁହ ।ସ ।
ପ୍ରଭାକର କ୍ଷେତ୍ରେ ସେହୁ ମିଳିଲା ବନ୍ଦନ
ପରମ ଗୁମ୍ଫା ମଧ୍ୟରେ ଲଗାଇ ଚୈତନ୍ୟ ।
ଶ୍ରୀକୃଷ୍ଣଙ୍କ ପାଦୁକାକୁ ହୃଦରେ ଲଗାଇ
ନିଷ୍ଠିକ୍ଲେଶ ଗୋବିନ୍ଦଙ୍କ ପାଦେ ତପଧ୍ୟାୟି ।
ଶୁଣ ତୁ ହେ ମହାରାଜା ପୁଣ୍ୟତମ ଧ୍ୱନି
ହରିବଂଶ ଶୁଣି ପାପ ଛଡ଼ାଅ ଏକ୍ଷଣି ।
ଯେତେବେଳରେ ଉଦ୍ଧବ ଦ୍ୱାରକାରୁ ଗଲା
କାଳପୁରୁଷ ସେ ପୁରେ ପ୍ରବେଶ ହୋଇଲା ।
ପ୍ରଭୁ ନାରାୟଣ ଏକ ଉପାୟ ରଚିଲେ
କଥା କହୁଁ କହୁଁ ଏକ ଜନ୍ତୁ ଉପୁଜାଇଲେ ।
ଷୋଡ଼ ଗୋଟି ପକ୍ଷ ତାର ନବ ଗୋଟି ଆଖି
ସପତ ବ୍ରହ୍ମାଣ୍ଡ ଗର୍ଭେ ଯିବେ ତାର ଲକ୍ଷି ।
କନ କନ ହୋଇଣ ଯେ ବୁଲେ ଏଣେତେଣେ
ଏ ଠାବରୁ ସେ ଠାବକୁ ପଳାଇ ତକ୍ଷଣେ ।
ମନୁଷ୍ୟ ଦେଖିଣ ସେହୁ ଭକ୍ଷଇ ଗୋଡ଼ାଇ
କୋକୁଆର ଭୟେ କେହୁ ରହି ନ ପାରଇ ।
କେ ବୋଲଇ ଆରେ ବାବୁ କେଣେ ଯାଉଅଛ
ଏ ବାଟେ କୋକୁଆ ଗଲା ଦେଖିଲି ପ୍ରତ୍ୟକ୍ଷ
ଷୋଡ଼ ଗୋଟି ପକ୍ଷ ତାର ନବ ଗୋଟି ଆକ୍ଷି
ମୋ ପୁତ୍ରକୁ ଏହିକ୍ଷଣି ଦେଉଥିଲା ଭକ୍ଷି ।
ଦଇବ ବଳେ ମୋହର ପୁଅ ପଳାଇଲା
ଏକ କହନ୍ତେ ଆରେକ ସେ କଥା ଶୁଣିଲା ।
ଯେଣିକି ଶୁଣିଲେ ତେଣେ ଧରଇ କୋକୁଆ
କେ ବୋଲଇ ସଖି ତୁ ଗୋ ପଳାଇଣ ଯାଅ
ଏକ୍ଷଣି ଆସି କୋକୁଆ ଭକ୍ଷିବ ଯେ ତୋତେ
ଘରକୁ ପଳାଅ ତୁ ନ ରହ କଦାଚିତେ ।
ଏମନ୍ତ ନଗରେ କରୁ ଶବଦ ଶୁଭିଲା
କୋକୁଆ କୋକୁଆ ହାଲହୁଲି ଯେ ପଡ଼ିଲା ।
ବେଳୁ ବେଳ ହାଲହୁଳି ହେଲା ଦ୍ୱାରେ ଦ୍ୱାରେ
ଭୟଙ୍କର କେହୁ ଜଣେ ନ ରହେ ଦାଣ୍ଡରେ ।

ବେଳ ପ୍ରହରରେ ପର୍ଯ୍ୟନ୍ତ ନୁହନ୍ତି ବାହାର
ବେଳ ପ୍ରହରକେ ଥାଉଁ ପଡଇ ଦୁଆର ।
କେବଣ ସୃଷ୍ଟି ବୋଲଇ ଏହିବାଟେ ଗଲା
ମୋହର ଗିରସ୍ତକୁ ସେ ଗିଳିଦେଉଥିଲା ।
ଦଇବ ବଳରୁ ସେହୁ ଅଇଲା ପଳାଇ
କି ବୁଦ୍ଧି କରିବା ଏବେ କହ ପ୍ରାଣସଖି ।
କୋକୁଆ ଭୟରେ ଆମ୍ଭେ ରହି ନ ପାରିବା
କେବଣ ସ୍ଥାନରେ ଯାଇଁ ପଳାଇ ପଶିବା
ସାତ ପାଞ୍ଚ ଲୁଣ୍ଠ ହୋଇ କରନ୍ତି ବିଚାର
କୋକୁଆ ଭୟେ ତେଜିବା ଏବେ ଘରଦ୍ୱାର
ଲୋକଙ୍କର ବଚନ ତ କହୁଁ ନ ସରଇ
ସାତପାଞ୍ଚ ମିଳିକରି ହୁଅନ୍ତି କୁହାକୁହି ।
ମହତ୍ତ୍ୱ ପୁର ଦ୍ୱାରକା ହେଲା ହାଲହୁଲି
କୋକୁଆ କୋକୁଆ ବୋଲି ପଡଇ କୋବାଳି
କୋକୁଆର ଭୟେ ଲୋକେ ନ ବୁଲିଲେ ବାଟ
କୋକୁଆ କୋକୁଆ ବୋଲି ହୁଅନ୍ତି ଉଚ୍ଚାଟ ।
ଘରୁ ବାହାରି ଏଣିକି ତେଣିକି ବୁହାନ୍ତି
ଯେଣିକି ବୁହାନ୍ତି ତେଣେ କୋକୁଆ ଦେଖନ୍ତି
ବିଚାରନ୍ତି କୋକୁଆ ଯେ ଆସୁଅଛି ଧାଇଁ
ଘରୁ ବାହାରି ପଳାନ୍ତି ଅତି ବ୍ୟଗ୍ର ହୋଇ ।
ଉଗ୍ରସେନ ମହାରାଜା ପାଇଲେ ବାରତା
କୋକୁଆର ଭୟ ଶୁଣି ମନେ କଲେ ଚିନ୍ତା ।
ଏତେକାଳ ହୋଇଲା ମୁଁ ରାଜତ୍ୱ କରିଲି
କୋକୁଆ କେବଣ ଜନ୍ତୁ ତାକୁ ନ ଦେଖିଲି ।
ଯେଉଁଠାରେ ସୁଦର୍ଶନ ଚକ୍ର ବୁଲୁଥାଇ
ମାତ୍ରପଣ୍ଡଲେହେଁ ନବ ଖଣ୍ଡେ ଛୁଟିପାଇ ।
ଶମନର କାଳଦଣ୍ଡ ନ ଲାଗେ ଯହିଁରେ
ମୃତ୍ୟୁ ବୋଲିଣ କେହୁ ନ ଜାଣନ୍ତି ଏ ପୁରେ
ଏବେ ସିନା ବିଧାତା ଯେ ଏତେ କୃତ୍ୟ କଲା
କୋକୁଆ ଭୟରେ କେହୁ ରହି ନ ପାରିଲା ।
ମନ୍ତ୍ରୀରେ କହିଣ ରାଜ୍ୟେ ବିଚାରନ୍ତି ଏହା
ଭୃତ୍ୟଜନେ ରାଜ ଆଜ୍ଞା ଦେଲେ ନରନାହା ।
କାଲି ପ୍ରଭାତରେ ଥାଟ ସୈନ୍ୟ ସଜକରି
ସିଂହଦୁଆରେ ଆସିଣ ଥିବାକ ଉଭରି ।
ଆଜ୍ଞା ଦେଇ ନୃପବର ଭିତରକୁ ଗଲା
ଇନ୍ଦୁମଣି ଆଗେ ସବୁ ବାରତା କହିଲା ।

ସାବଧାନ ହୋଇ ତୁମ୍ଭେ ଶୁଣ ଗୋ ସଙ୍ଗାତ
କୋକୁଆ ବୋଲି ଜନ୍ତୁଏ ହେଲା ଉପଗତ ।
ନଗର ଭିତରେ ପଶି କୋକୁଆ ଭକ୍ଷଇ
ଦିବସରେ ଏହି ପୁର ଅନ୍ଧାର ଦିଶଇ ।
ନିରନ୍ତର ହାଲହୁଲ ଚହଳ ହୋଇଲା
କୋକୁଆ ଖାଉଛି ବୋଲି ହାଟେଳି ପଡ଼ିଲା
କେହି ବୋଲଇ ମୋହର ଖାଇଲା ପୁଅକୁ
କେହୁ ବୋଲଇ ଖାଇଲା ମୋହର ସ୍ୱାମୀକୁ ।
କେହୁ ବୋଲଇ ମୋହର ଖାଇଲା ଶ୍ୱଶୁର
କେହୁ ବୋଇଲା ମୋହର ଖାଇଲା ଦିଅର ।
କେହୁ ବୋଲଇ ମୋହର ପିତାକୁ ଖାଇଲା
କେହୁ ବୋଲଇ ମୋହର ଘରେ ପଶୁଥିଲା ।
ଜବାଟ କଳଲ ବୋଲି ପଶି ନ ପାରଇ
ବାହାରେ ଥିଲା ଲୋକକୁ ଖାଇଲା ଗୋଡ଼ଇ ।
କେହୁ ବୋଲଇ କୁଣିଆ ମୋର ଆସୁଥିଲା
ବାଟରେ ଆସନ୍ତେ ତାକୁ ଗୋଡ଼ାଇ ଖାଇଲା
ଏହିରୂପେ ହାଲହୁଲ ପଡ଼ିଛି ନଗରେ
ବେଳ ପ୍ରହରେକ ଥାଉଁ ପଶନ୍ତି ଗୃହରେ ।
ହେଉ ବେଳ ପ୍ରହରେକ ଫେଡ଼ ଦ୍ୱାରମାନ
କୋକୁଆ ଭୟେ ଡରନ୍ତି ନର ନାରୀଗଣ ।
କି ବୁଦ୍ଧି କରିବା ଏବେ କହ ପ୍ରାଣସହି
ଇନ୍ଦୁମତୀ ବୋଲେ ରାମ କୃଷ୍ଣ ଛନ୍ତି କାହିଁ ।
ସଭାକୁ ସେ ନ ଆସନ୍ତି ବୋଲେ ଉଗ୍ରସେନ
ଦିନେ ମାତ୍ର ନ ଦେଖିଲି ଦେବ ଜନାର୍ଦ୍ଦନ ।
ଏକଦିନେ ବସୁଦେବେ ପଚାରିଲି ମୁହିଁ
ରାମ କୃଷ୍ଣ ସଭାକୁ ନ ଆସନ୍ତି କିପାଇଁ ।
ତହୁଁ ସେ ଉତ୍ତର ଦେଲେ ଅନ୍ତଃପୁରେ ଥାଇ
ନିତ୍ୟ କରମ କରନ୍ତି ଗୃହମଧ୍ୟେ ରହି ।
କେବଣ ଚରିତ ଏହା ନ ପାରିଲୁଁ ଜାଣି
ଦଇବ ପୁରୁଷ ଯାହା ଘଟାଇଛି ଆଣି ।
ଇନ୍ଦୁମତୀ ପୁଛେ ତାର କି ପ୍ରକାରେ ଗାତ୍ର
କେମନ୍ତ ବର୍ଣ୍ଣ ଅଟଇ କେଉଁଠାରେ ଜାତ ।
ଏହା ମୋତେ ବୁଝାଇଣ କହ ନରସାଇଁ
ଏସନକ ବୋଲି ରାଣୀ କରଯୋଡ଼ କହି ।
ରାଣୀର ବଚନ ଶୁଣି ରାଜା ବଖାଣନ୍ତି
ଯାହା ତୁହି ପଚାରିଲୁ ଶୁଣ ରୂପବତୀ ।

ଷଡ଼ଗୋଟି ପକ୍ଷ ତାର ନବଗୋଟି ନେତ୍ର
ଷଡ଼ଗୋଟି ଗୋଡ଼ ତାର ଭୟଙ୍କର ଗାତ୍ର ।
ଜନ ମନୁଷ୍ୟ ବାଟରେ କେହି ନ ରହଇ
ଗୃହର ମଧ୍ୟରେ ପଶି ଭକ୍ଷଣ କରଇ ।
ଆଠ ସଜ କରି ଆମ୍ଭେ କୋକୁଆ ମାରିବା
ତେବେ ସିନା ଲୋକଙ୍କର ଦୁଃଖ ପାସୋରିବା
ରାଣୀ ବୋଇଲେ ଏକଥା ବୋଲୁଛ କିପାଇଁ
ତୁମ୍ଭର ମାରନ୍ତେ କିବା କୋକୁଆ ମରଇ ।
ରାଣୀର ବଚନ ଶୁଣି ରାଜା ତୁନି ହେଲା
ଏସନକ ସମୟରେ ରଜନୀ ପାହିଲା ।
ଆଠ ସଜ ହୋଇ ମିଳିଗଲେ ସିଂହଦ୍ୱାରେ
କୋକୁଆ ମାରିବେ ବୋଲି ସଜ ହୋଇଗଲେ
ହାତୀ ରଥୀ ପଦାତିକ ସମସ୍ତେ ଅଇଲେ
ଅଶ୍ୱାରୋହୀମାନେ ଅଶ୍ୱ ବେଗେ ଧୁଆଁଇଲେ
ଆଗେ ଭୂଡ଼ୁଙ୍ଗିୟାମାନେ କଡ଼ାଇଲେ ବାଟ
କୋକୁଆକୁ ମାରିବାକୁ ଚଳାଇଲେ ଆଠ ।
ମାର ମାର ଧର ଧର ଶବଦ ଶୁଭଇ
ଅଦଭୁତେ ସେ କୋକୁଆ ବାହାର ହୁଅଇ ।
ଅଶ୍ୱାରୋହୀମାନେ ଦେଖି ଅଶ୍ୱ ଧୁଆଁଇଲେ
ସହସ୍ରେକ ଅଶ୍ୱାରୋହୀ କୋକୁଆ ବେଢ଼ିଲେ
କୁନ୍ତ ତୀକ୍ଷ୍ଣ ଶରମାନ ମାରନ୍ତି ନିଠାଇ ।
ଦୈବୀମାୟାରେ ତାହାର ଦେହେ ନ ବାଜଇ
ଯାହା ଜଗତର ନାଥ କରିଛି ଭିଆଣ
ତାହାକୁ କାହିଁ ଭେଟ ସେ ପାଇବ ରାଜନ ।
ମାୟାବୀ ପୁରୁଷ ସେହୁ ଅନ୍ତର୍ଦ୍ଧାନ ହେଲା
କୋକୁଆ ନ ଦେଖି ରାଜା ବାହୁଡ଼ି ଅଇଲା
ନଗର ମଧ୍ୟରେ ରାୟେ ହୋଇଲେ ପ୍ରବେଶ
କୋକୁଆର ଚରିତକୁ କହି ରାଣୀ ପାଶ ।
ସଇନ୍ୟମାନେ ଚଳିଲେ ଯେ ଯାହାର ପୁର
ଶୁଣ ପରୀକ୍ଷିତ ରାଜା ନୃପତି ଶେଖର
କୋକୁଆ ଭୟରେ ଲୋକେ ରହି ନ ପାରିଲେ
ବୃଦ୍ଧ ଲୋକମାନେ ମିଳି କଥାନ୍ତ ହାଟେଳେ
ବୟସ ଅଧିକ ଲୋକେ କରନ୍ତି ବିଚାର
କୋକୁଆ ବୋଲିଣ ଜନ୍ତୁ ନ ଦେଖୁ ନେତ୍ରର
ଏଡ଼େ ବିପରୀତ ଜନ୍ତୁ କାହୁଁ ପ୍ରବେଶିଲା
ଏଡ଼େ ବଡ଼ ନଗ୍ରଗୋଠା ନାଇଖାଇ କଲା ।

ସ୍ୱଳ ସର୍ବେ ପ୍ରବେଶିବା ଶ୍ରୀକୃଷ୍ଣ ସ୍ୱାମୀର
ଜଗତର କର୍ତ୍ତା ସେହୁ ସର୍ବଜ୍ଞ ଠାକୁର ।
ଦୀନବନ୍ଧୁ ଅନନ୍ତ ସେ ଆରତଭଞ୍ଜନ
ଆମ୍ଭର ଦୁଃଖ କରିବେ ଅବା ନିବାରଣ ।
କୋଳୁଆ ଭୟରୁ ଯେବେ କରିବେ ସେ ପାର
ତେବେ ଜନ ଜନ୍ତୁ ରକ୍ଷା ହେବେ ଏହି ପୁର ।
ଏମନ୍ତ ବିଚାରକୁ କରି ନଗ୍ରଜନ
ଆଗ ଯାଇ ଗୋବିନ୍ଦଙ୍କୁ କରିବା ଦର୍ଶନ ।
ଆମ୍ଭମାନଙ୍କୁ ଯଦ୍ୟପି କରିବେ ସେ ଦୟା
ତେବେ ରକ୍ଷା ହେବ ଆମ୍ଭମାନଙ୍କର କାୟା ।
ଏ ସମୟେ ଜଣେ ବୃଦ୍ଧ କଥାଏ ବୋଇଲା
କୁଳକ୍ଷୟ ହେବା ପ୍ରାୟେ ମୋତେ ଦୃଶ୍ୟ ହେଲା
ଯାହାଙ୍କ ଭୟରେ ଯମ ନ ପାରଇ ପଶି
ସେ ନଗ୍ରେ କୋଳୁଆ ଭୟ ହୋଇଲାକ ଆସି
ଯେ ଜଗନ୍ନାଥ ଅନନ୍ତ ତ୍ରିଭୁବନ ପତି
କୋଳୁଆକୁ ଭୟ କପାଁ କରିବେ ଶ୍ରୀପତି ।
ଏଥି ସକାଶରୁ ମୁହିଁ ବିଚାରୁଛି ଏହା
ଏ ପୁର ନଷ୍ଟପ୍ରାୟ ତେଜି ଯିବେ ଚକ୍ରବାହା ।
ଯାଦବଙ୍କ ପରମାୟୁ ହେଲା ଆସି କ୍ଷୟ
ବଞ୍ଚିବା ପାଇଁକି ନାହିଁ କାହାର ଉପାୟ ।
ଏମନ୍ତ ବିଚାରି ସର୍ବେ ହୁଅନ୍ତି ବିରସ
ଅଚ୍ୟୁତ କହଇ ନାଶଯିବ ଯଦୁବଂଶ ।



## ଯଦୁବଂଶ ଧ୍ୱଂସ ଓ କୃଷ୍ଣଙ୍କର ଦେହତ୍ୟାଗ

ଏଥୁ ଅନନ୍ତରେ ପୁଣ ଶୁଣ ନରସାଇଁ
ଉଗ୍ରସେନର ସଭାକୁ ଯାନ୍ତି ଭାବଗ୍ରାହୀ ।
ପ୍ରଜାମାନଙ୍କର ଯେତେ ବଚନ ଶୁଣିଲେ
ଭାଳନ୍ତି ନିଜ ଧାମକୁ ଯିବା ଆମ୍ଭେ ଭଲେ ।
ଗୁପତ କଥା ଆମ୍ଭର ହୋଇବ ପ୍ରକଟ
ଏହା ବିଚାରି ବାହାର ହେଲେ ନନ୍ଦ ସୁତ ।
ନରପତିର ସଭାରେ ମିଳିଲେ ସେ ଯାଇଁ
ଉଗ୍ରସେନେ ନମସ୍କାର କଲେ ଯଦୁସାଇଁ ।
ଶ୍ରୀକୃଷ୍ଣଙ୍କ ମୁଖ ଯେତେ ସମସ୍ତେ ଦେଖିଲେ
ବିରୂପ ଦେଖିଣ ଏହା ମନେ ବିଚାରିଲେ ।
ଆସ୍ଥାନର ଉପରରେ ବସିବା ବେଳରେ
ବଳରାମ ପ୍ରଭୁ ଯାଇ ମିଳିଲେ ସେଠାରେ ।
ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ଉଲଗି ହୋଇଲେ
ଭାଇଙ୍କି ଦେଖିଣ ଯେତୁ ବଚନ ଭାଷିଲେ ।
କୋଳୁଆ ଭୟ ଏ ପୁରେ ହୋଇଲା ଅପାର
କି ବୁଦ୍ଧି କରିବା ଏବେ କହ ହଳଧର ।
ବଳରାମ ଏହା ଶୁଣି ଅଳପ ହସିଲେ
କାଲି କୋଳୁଆ ମାରିବା ଝସ୍ତେ ପ୍ରଭାତରେ ।
ଉଗ୍ରସେନ ପୃଚ୍ଛି ବଦନ୍ତି ନାରାୟଣ
କେମନ୍ତ ପ୍ରକାରେ ତାକୁ ମାରିବା ରାଜନ ।
ନୃପତି ବୋଇଲେ ମୁହିଁ ଥାଟ ସଜ କରି
ମାରିବା ନିମନ୍ତେ ଗଲି କୋଳୁଆକୁ ହେରି ।
ଥାଟ ସଜ କରି ମୁହିଁ କୋଳୁଆ ବେଢ଼ିଲି
କୁନ୍ତ ଯଷ୍ଟି ନାରାଚ ମୁଁ ଅନେକ ମାଇଲି ।
ମାୟାବୀ ଅଟଇ ସେହୁ କେଉଁଣେ ପଳାଇଲା
ଦେଖୁ ଦେଖୁ ବେଗେ ଯାଇ କାହିଁ ଲୀନ ହେଲା ।
ଖୋଜି ଖୋଜି ମୁହିଁ ଆଉ ନ ପାଇଲି ଭେଟ
ବାହୁଡ଼ିଣ ଅଇଲି ମୁଁ ଘେନି ନିଜ ଥାଟ ।
ଶ୍ରୀକୃଷ୍ଣ ବୋଇଲେ ଚିନ୍ତା ନ କର ହେ ରାୟେ
ରାତ୍ର ପ୍ରଭାତ ହୋଇଲେ କରିବା ଉପାୟେ ।
ଥାଟ ଘେନି ତୁମ୍ଭେମାନେ ଯିବ ଏକ ଆଡ଼େ
ବଳରାମଙ୍କୁ ଘେନି ମୁଁ ଯିବି ଅନ୍ୟ ଆଡ଼େ ।
ଯେତେ ସଭାରେ ପ୍ରତିଜ୍ଞା କଲେ ଆନନ୍ଦକନ୍ଦ
ପ୍ରଜାମାନଙ୍କ ମନରେ ଜନ୍ମିଲା ଆନନ୍ଦ ।
ଏମନ୍ତ ବିଚାରକୁ କରି ହୃଷୀକେଶ
ଏକାନ୍ତେ ବଳରାମଙ୍କୁ ଡକାଇଲେ ପାଶ ।
କାଲି ପ୍ରଭାତରେ ତୁମ୍ଭେ ନନ୍ଦନଙ୍କୁ ଘେନି
ଆସେ ମଧ୍ୟ ବାହାର ଯେ ହେବ ତତକ୍ଷଣି ।
ଆମ୍ଭେ ପୁର ନାରୀ ଘେନି ହୋଇବୁ ବାହାର
ନଗ୍ର ଜନଙ୍କର ଭୟ ହେବ ତହିଁ ପାର ।
କୋଳୁଆକୁ ବେଢ଼ି ମାରିବାକି ତେତେବେଳେ
ସ୍ନାହାନ କରିବା ଯାଇ ପ୍ରଭାସ ତୀର୍ଥରେ ।
ଦୁର୍ବାସା ମହର୍ଷିଙ୍କର ଶାପ ଅଛି ମୋତେ
ଯଦୁବଂଶଯାକ ନାଶ ହୋଇବେ ସମସ୍ତେ ।
ବ୍ରହ୍ମ ଅଭିଶାପ କେବେ ଅନ୍ୟଥା ନୁହଇ
ଦାନ ଧ୍ୟାନ କଲେ ବ୍ରହ୍ମ କଳୁଷ ଖଣ୍ଡଇ ।

ମିଷ୍ଟାନ୍ନ ଦେଇଣ ବିପ୍ରମାନଙ୍କୁ ତୋଷିବା
ସ୍ତୁତି କରିଣ ତାହାଙ୍କୁ ବଚନ କହିବା ।
ଆମ୍ଭର ବଚନେ ବିପ୍ରେ ଆନନ୍ଦ ଲଭିଲେ
ବ୍ରାହ୍ମଣର ଅଭିଶାପୁଁ ପାର ହେବା ଭଲେ ।
ପ୍ରଭାସ ତୀର୍ଥର ଜଳେ ସ୍ନାନ କରନ୍ତେଣ
ବ୍ରହ୍ମ ଅଭିଶାପ ଅବା ହୋଇବ ଖଣ୍ଡନ ।
ମାୟାରେ ବଳରାମଙ୍କୁ ଶ୍ରୀକୃଷ୍ଣ ମୋହିଲେ
ଗୋବିନ୍ଦଙ୍କର ମାୟା ସେ ଜାଣି ନ ପାରିଲେ
ତାହାଙ୍କର ଦୈବୀ ମାୟା ଲାଗିଲା ସବୁଙ୍କୁ
ବଳରାମ ପ୍ରତେ ଗଲେ କୃଷ୍ଣ ବଚନକୁ ।
ସଙ୍କର୍ଷଣ ପ୍ରବେଶିଲେ ତାଙ୍କ ନିଜପୁର
ରେବତୀଙ୍କ ସଙ୍ଗେ ସେହୁ କରନ୍ତି ବିହାର ।
ଶ୍ରୀକୃଷ୍ଣ ମିଳିଲେ ଯାଇ ଆପଣା ମନ୍ଦିର
ଅଷ୍ଟ ପାଟବଂଶୀ ଆସି ମିଳିଲେ ସତ୍ୱର ।
ରୁକ୍ମିଣୀ ସତ୍ୟଭାମାଙ୍କୁ ନିକଟକୁ ନେଇ
ବୋଲନ୍ତି କୋକୁଆ କଥା ଶୁଣ ପ୍ରାଣସହି ।
ନଗର ଭିତରେ ପଶି ମନୁଷ୍ୟ ଭକ୍ଷଇ
ନଗର ଯାକରେ ହାଲହୁଲି ପଡ଼ିଛଇ ।
କାଲି ପ୍ରଭାତ ସମୟେ ପୁତ୍ର ନାତି ଘେନି
ଖୋଜିଣ ତାକୁ ମାରିବ ଶୁଣ ଗୋ ମିତଣି ।
ସତ୍ୟଭାମା ରୁକ୍ମିଣୀ ଯେ କୃଷ୍ଣଙ୍କୁ ପୁଚ୍ଛନ୍ତି
କୋକୁଆ ବୋଲିଣ ସେହୁ ଅଟେ କେଉଁ ଜାତି
ଗୋବିନ୍ଦ ବୋଇଲେ ତାର ଷଡ଼ଗୋଟି ପକ୍ଷି
ଛଅ ଗୋଟି ଗୋଡ଼ ତାର ନଅ ଗୋଟି ଆକ୍ଷି
ନଖ ମୁଖ ନାରାଚର ପରାୟେ ଦିଶଇ
ଦନ୍ତ ମୁଖ କୁନ୍ତମୁନ ପରାୟେ ଲାଗଇ ।
ଜନ ମନୁଷ୍ୟ ସକଳ ପଡ଼ିଲେ ଚଞ୍ଚୁରେ
ନିର୍ଭୟରେ ଭକ୍ଷଇ ସେ ନ ଡରି କାହାରେ
ଦ୍ୱାରକାପୁରର ଲୋକେ ରହିଲେ ଗୃପତେ
ଜନ ମନୁଷ୍ୟ କୋକୁଆ ଭକ୍ଷେ ଅପ୍ରମିତେ ।
ତାହାର ଭୟରେ କେହି ନ ଚଳନ୍ତି ବାଟ
ସହସ୍ରେ ପୁର ଦ୍ୱାରକା ହୋଇଲା ଉଚ୍ଚାଟ ।
ବିକଳରେ ପ୍ରଜାମାନେ ଗୁହାରି କରିଲେ
ମାରି ନ ପାରିଣ ରାଜା ବାହୁଡ଼ି ଅଇଲେ ।
କାଲି ପ୍ରଭାତରେ ବଳରାମଙ୍କୁ ଘେନିଣ
ପୁତ୍ର ନାତି ମିଳି ଆମ୍ଭେ ମାରିବୁ ବହନ ।

ସେମାନେ ଶୁଣି ମନରେ ହରଷ ହୋଇଲେ
ଗୋବିନ୍ଦ ଭୟରେ କେହି କଥା ନ କହିଲେ
ବୋଇଲେ ଦଇବ ଯାହା କରିଛି ଘଟନ
ଅନ୍ୟଥା କରିବ କଏ ତାହାର ଲିଖନ ।
ଏଥୁ ଅନନ୍ତରେ ପୁଣ ଦେବ ନାରାୟଣ
ପ୍ରଦ୍ୟୁମ୍ନ ଶାମ୍ବଙ୍କୁ ପାଶେ ହକାରି ବହନ ।
ତ୍ୱରିତେ ମିଳିଲେ ଆସି ସମସ୍ତ କୁମର
ନମସ୍କାର କଲେ ବେଗେ ପିତାଙ୍କ ପୟର ।
କରପଦ ଯୋଡ଼ି ଅଗ୍ରତରେ ଉଭା ହେଲେ
କି ନିମନ୍ତେ ହକାରିଲେ ବୋଲିଣ ବୋଇଲେ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ସକଳ କୁମରେ
ଅସ୍ତ୍ର ଘେନିଣ ମିଳିବ ସର୍ବେ ସିଂହଦ୍ୱାରେ
କୋକୁଆ ଜନ୍ତୁ ପଶିଣ ଦୁଷ୍ଟପଣ କଲା
ନଗରେ ପ୍ରବେଶ ହୋଇ ମନୁଷ୍ୟ ଖାଇଲା ।
ସମସ୍ତେ ବେଢ଼ି ତାହାକୁ କରିବା ବିନାଶ
ତେଣୁକରି ପୃଥ୍ୱୀଦେବୀ ଲଭିବେ ଉଶ୍ୱାସ ।
ଯାହାଙ୍କର ମାୟାବଳେ ଭୁଲିଲେ ଈଶ୍ୱର
ବ୍ରହ୍ମାଙ୍କୁ ଯା ମାୟାଗୋଟି ଅଟେ ଅଗୋଚର ।
ସେ ମାୟାକୁମରମାନେ ଜାଣିବେ କେମନ୍ତେ
ତାହାଙ୍କୁ ମାୟାରେ ଭୁଲାଇଲେ ଜଗନ୍ନାଥେ
କୁମରମାନେ ବୋଇଲେ ଆଜ୍ଞା ପରମାଣେ
ଶସ୍ତ୍ରମାନ ଘେନି ଆମ୍ଭେ ମିଳିବୁ ବହନେ ।
ପ୍ରତିଜ୍ଞା କଲେ ସେମାନେ ଶ୍ରୀକୃଷ୍ଣ ଆଗରେ
କୋକୁଆକୁ ମାରିବାଟି ପାଇବା ଯେଠାରେ ।
ସପତ ବ୍ରହ୍ମାଣ୍ଡେ ଯେବେ ପଶିବ ପାପିଷ୍ଠ
ଗୋଡ଼ାଇଣ ତାହାକୁହିଁ କରିଦେବୁ ନଷ୍ଟ ।
କୁମରଙ୍କର ପ୍ରତିଜ୍ଞା ଶୁଣି ଭାବଗ୍ରାହୀ
ବହୁତ ଚିନ୍ତା କରନ୍ତି କମଳାର ସାଇଁ ।
ଏହାଙ୍କ ପରାୟେ ପୁଷ୍ଟ ପ୍ରାତେ ଯିବେ ନାଶ
ଏତେକ କୁଟୁମ୍ବ ଅର୍ଜ ହୋଇଲା ବିନାଶ ।
ଷଠୀ ଲେଖିଅଛି ଯାହା ମୋହର କପାଳେ
ପୁଚ୍ଛିଲେ ହିଁ ନ କହିଲେ କିଛି ତେତେବେଳେ
ଗାନ୍ଧାରୀ ଦେବୀର ଶାପ ଫଳିଲା ଆସି
ଆବର ଶାପ ଦେଇଛି ଦୁର୍ବାସା ମହର୍ଷି ।
କାହାରହିଁ ବୋଲେ ତାହା ନୋହିବ ଅନ୍ୟଥା
ଏତେ ବୋଲିଣ ଚିନ୍ତିତ ହୁଅନ୍ତି ଜଗତ୍ପିତା ।

କୁମରଙ୍କୁ ବୋଇଲେ ସେ ଯାଅ ନିଜପୁର
ଘଣ୍ଟ ପ୍ରହରକେ ଥାଉଁ ହୋଇବ ବାହାର ।
ଓଳଗି ମେଲାଣି ମାଗି ସେମାନେ ଚଳିଲେ
ଯେ ଯାହାର ମନ୍ଦିରରେ ଯାଇଁ ପ୍ରବେଶିଲେ ।
ଶ୍ରୀକୃଷ୍ଣଙ୍କର ଅନନ୍ତ ବଧୂତ ନନ୍ଦନ
ଆପଣା ରଥ ସାଜନ୍ତି ହୋଇ ଉଦବଗ୍ନ ।
ସାରଥିଏ ରଥମାନ ମଣ୍ଡିଣ ଆଣିଲେ
ନାନାବିଧ ଅସ୍ତ୍ରମାନ ଚହୁଁରେ ଥୋଇଲେ ।
ଯୁଦ୍ଧବେଶ ହୋଇଣ ବସିଲେ ରଥର
ଦେବତାମାନଙ୍କୁ ତାହା ନୁହଇ ଗୋଚର ।
ଘଣ୍ଟ ପ୍ରହରେକ ଥାଉଁ ଆସିଣ ମିଳିଲେ
ସବୁ ନାତିମାନେ ଅଶ୍ୱ ଗଜରେ ଚଢ଼ିଲେ ।
ଘଣ୍ଟ ପ୍ରହରେକ ଥାଉଁ ମିଳି ସିଂହଦ୍ୱାର
ସମୁଦ୍ର ଗର୍ଜନ ପ୍ରାୟେ ଶୁଭଇ ଚହଳ ।
ଆସ ଆସ ଗୁଳ ଗୃଳ ଶୁଭଇ ଶବଦ
ଆଷାଢ଼ ମାସରେ ଯେହ୍ନେ ଶୁଭେ ମେଘନାଦ ।
ଦାରୁକକୁ ଗଇ ବୋଇଲେକ ଦାମୋଦର
ତୁରିତେ ସଜ କରିଣ ଆଣ ରଥବର ।
ଆଜ୍ଞା ପାଇଣ ଦାରୁକ ବେଗେ ଚଳିଗଲା
ଦେବ ଦୁର୍ଲ୍ଲଭ ରଥ ସେ ମଣ୍ଡାଇ ଆଣିଲା ।
ଗୋବିନ୍ଦଙ୍କର ସମ୍ମୁଖରେ ରଥ କଲା ଆଣି
ରଥ ଦେଖିଣ ପ୍ରଶଂସା କଲେ ଚକ୍ରପାଣି ।
ନାନାବିଧ ଶସ୍ତ୍ରମାନ ଥୋଇଲେ ରଥରେ
ଧନୁଶର ଯେତେ ଥିଲା ରଖିଲେ ଚହୁଁରେ ।
ଆପଣେ ଯୁଦ୍ଧବେଶ ହୋଇଲେ ମାଧୋଇ
ଶଙ୍ଖ ଚକ୍ର ଗଦାପଦ୍ମ ଚତୁର୍ଭୁଜ ହୋଇ
ଶୁଭ ଅନୁକୂଳେ ସେହୁ ହୋଇଲେ ବାହାର
ବେଗେ ଯାଇ ବିଜେକଲେ ରଥର ଉପର
ଜଗନ୍ନାଥେ ଗୁଣ୍ଡିଚାକୁ ଯିବାପ୍ରାୟ ହୋଇ
ତେସନେକ ପରକାରେ ଶୋଭାପାଏ ମହି ।
ଶୁଣ ପରୀକ୍ଷିତ ରଜା ଉତ୍ତରା ନନ୍ଦନ
ସବୁ ଉଆଇ ଅଛନ୍ତି ପ୍ରଭୁ ଭଗବାନ ।
ତେଣେ ବଳରାମ ସଜ ହୋଇଣ ରହିଲେ
ତାଳଧ୍ୱଜ ରଥ ବେଗେ ସାରଥି ସାଜିଲେ ।
ହଳ ମୁଷଳ ହସ୍ତରେ ଧରି ବଳରାମ
ରଥର ଉପରେ ଉଠି କଲେକ ବିଶ୍ରାମ ।

ଆନନ୍ଦାନନ୍ଦ ରଥର ଉପରେ ଚଢ଼ିଲେ
ନାନାବିଧ ଶସ୍ତ୍ରମାନ ଯତନେ ରଖିଲେ ।
ଯେଝା ଅନୁରୂପ ସଜ ହୋଇଣ ଯାଦବେ
ସିଂହଦ୍ୱାରେ ପରବେଶ ହୋଇଲେ ସରବେ
ନବରରୁ ଜଗନ୍ନାଥ ବାହାର ହୋଇଲେ
ଦକ୍ଷିଣ ମୁରତ ହୋଇ ରଥ ଚଳାଇଲେ ।
ମାର ମାର ଧରଧର ସମସ୍ତେ ବୋଲନ୍ତି
କୋକୁଆକୁ ମାର ବୋଲି ଆଗେ ଡାକଦିଅନ୍ତି
ଶବଦ ଶୁଣି କୋକୁଆ ହୋଇଲା ବାହାର
ଘୋର ନାଦ କରିଣ ସେ ପଳାଏ ସତ୍ୱର ।
ଦ୍ୱାରକାକୁ ଛାଡ଼ି ପଞ୍ଚବଂଶ ଯୁଣ ଗଲା
ସ୍ୱନେ ଦେଖନ୍ତି କୋକୁଆ ଜୀବ ପଳାଇଲା ।
ହଳି ବଳରାମ ତାହା ଦେଖି ନୟନରେ
ରଥ ଧୂଆଇଁଣ ଗଲେ ତାହାର ପଛରେ ।
ରାମକୃଷ୍ଣ ଧାଇଁବାର ଦେଖନ୍ତେ ନୟନେ
ସକଳ ଯାଦବମାନେ ଧାମନ୍ତି ବହନେ ।
ଏକା ନିଶ୍ୱାସକେ ପଞ୍ଚବଂଶ ଯୁଣଗଲେ
ଯମୁନା ନିକଟେ ଯାଇ ତକ୍ଷଣେ ମିଳିଲେ ।
ନଦୀର ରୋଧିକା ଘାଟ ପଶ୍ଚିମ ପାଖରେ
ମାୟାବୀ କୋକୁଆ ଭେଟ ପାଇଲେ ସେଠାରେ
ମାୟା କରିଣ କୋକୁଆ କୃଷ୍ଣ ଦେଖାଇଲେ
ଏହିଟି ବୋଲିଣ ରଥ ବେଗେ ଧୂଆଁଇଲେ ।
କୂଳମୂଳ ମାଇଲେକ ତାକୁ ନାହିଁ ପୂଣ
ଖସି ପଳାଇଲା ତହୁଁ ନ ବାଜିଲା ମୂନ ।
ବେଗେ କଦମ୍ବମୂଳକୁ ତହୁଁ ଖସିଗଲା
ଖଣ୍ଡେ ଦୂରୁ ବଳରାମ ଦୃଷ୍ଟିରେ ପଡ଼ିଲା ।
ଆପେ ବଳରାମ ପ୍ରଭୁ ରଥରୁ ଓହ୍ଲାଇ
ମୁଷଳେ ତାକୁ ପିଟିଲେ ଅତି ବେଗେ ଯାଇ ।
ସେ ମୁଷଳ ନ ବାଜିଣ କୋକୁଆ ଅଙ୍ଗରେ
ବିଷମ ଆଘାତ ହେଲା କଦମ୍ବ ବୃକ୍ଷରେ ।
ମାୟା କୋକୁଆ ସେଠାରୁ କେଣେ ପଳାଇଲା
ସେ ବୃକ୍ଷର କାଦମ୍ବରୀ ଫୁଟି ବାହାରିଲା ।
ପଥଶ୍ରମେ ବଳରାମ ଶ୍ରାନ୍ତ ହୋଇଥିଲେ
ତୃଷାରେ ସେ କାଦମ୍ବରୀ ମଦ୍ୟପାନ କଲେ ।
ତାହା ଦେଖି ରୁଣ୍ଡହୋଇ ସକଳ କୁମରେ
କାଦମ୍ବରୀ ପାନ କଲେ ଯେ ଯାହା ଇଚ୍ଛାରେ

କାଦମ୍ବରୀ ପାନେ ସର୍ବେ ଉନମତ୍ତ ହୋଇ
କିଏ ପର କେ ଆପଣା ନ ଜାଣିଲେ କେହି
ମାୟାପଟଳ ଭିଆଣ କରିଛନ୍ତି ହରି
ପୁଣି ସେ କୋକୁଆ ଜୀବ ସେଠାରୁ ବାହାରି
ବଳରାମ ଦୃଷ୍ଟିପଥେ ପଳାଇଲା ବେଗେ
ତା ଦେଖି ରୋହିଣୀ ସୁତ ଉଠି ଅତି ରାଗେ ।
ଏହିଟି କୋକୁଆ ବୋଲି ଆପଣେ ଧାଇଁଲେ
ପଞ୍ଚବିଂଶ ଯୋଜନ ପଥ ବାହିଗଲେ ।
ବିଶ୍ୱରୂପ ଧରିଛନ୍ତି ସ୍ୱାମୀ ହଳଧର
ଧାମନ୍ତେଣ ବସୁମତୀ କମ୍ପେ ଥରହର ।
ଶ୍ରୀ ମଙ୍ଗଳକନ୍ଦର ବନେ ଯାଇଣ ମିଳିଲେ
ସେଠାରେ କଳପବଟ ବୃକ୍ଷକୁ ଦେଖିଲେ ।
ସେ ବଟତଳେ କୋକୁଆ ଜୀବ ଗୋପ୍ୟହେଲା
ବଳରାମଙ୍କ ନଜର ତହିଁରେ ପଡ଼ିଲା ।
ମୂଷଳ ଉଞ୍ଚାଇ ପ୍ରଭୁ ଧାମନ୍ତେ କ୍ରୋଧରେ
ଆକାଶ ବଚନ ତାଙ୍କୁ ଶୁଭିଲା ସେଠାରେ ।
ଆସ ଆସ ବଳରାମ ବିଳମ୍ବ ନ କର
ଅନନ୍ତ ଶଯ୍ୟାରେ ନିଦ୍ରା କର ଯୋଗେଶ୍ୱର ।
ସର୍ପରୂପ ଧରି ପ୍ରଭୁ ଆଦି ଦେବ ହୋଇ
ଦେବଙ୍କ ବଚନ ଶୁଣି ରେବତୀର ସାଇଁ ।
ଶ୍ୱେତ ନାଗରୂପ ତହୁଁ ହେଲେ ହଳପାଣି
ମସ୍ତକରେ ଶୋଭାବନ ଫଣେ ସପ୍ତଫେଣୀ ।
ପାତାଳ ପୁରକୁ ପ୍ରଭୁ ବେଗେ ଗଲେ ଖସି
ବଟପୂଟର ଭିତରେ ଶୋଇଲେକ ଆସି ।
ସର୍ପରୂପ ଧରି ଯହୁଁ ବଳରାମ ଗଲେ
ତାହା ଦେଖି ନାରାୟଣ ସନ୍ତୋଷ ହୋଇଲେ
କୁମରଙ୍କୁ ସେହି କଥା ନୋହିଲା ଗୋଚର
ସର୍ବେ ଜାଣିଲେ ଉଷିଲା କୋକୁଆ ପାମର ।
ମାୟାରୀ କୋକୁଆ ତହୁଁ ହୋଇଲା ବାହାର
ପଶ୍ଚିମକୁ ମୁଖ କରି ଗଲା ଖରତର ।
ଖଣ୍ଡେଦୂରେ ଥାଇଁ ଜାଣିଲେକ ଚକ୍ରପାଣି
ଆପେ ଚକ୍ର ଘେନି ଧାଇଁଛନ୍ତି ଯଦୁମଣି ।
ସନ୍ତର ବନରେ ଯାଇ କୋକୁଆ ପଶଇ
କୁମରଙ୍କୁ ଘେନି ହରି ଗଲେ ତହୁଁ ଧାଇଁ ।
ସେହି ବନରେ ସମସ୍ତେ ଯାଇଁ ପ୍ରବେଶିଲେ
କଦମ୍ବ ମଦରେ ଅନ୍ଧ ସମସ୍ତେ ହୋଇଲେ ।

ସନ୍ତର ବନେ ଅଦ୍ଭୁତ ଚହଳ ଶୁଭିଲା
ଜଗତଯାକ ସମସ୍ତ ଅନ୍ଧାର ଦିଶିଲା ।
କୁମରମାନେ ଦିଶିଲେ କୋକୁଆ ପ୍ରକାର
ତାହାଙ୍କ ପଛେ ଧାଇଁଲେ ପ୍ରଦ୍ୟୁମ୍ନ କୁମର ।
ତୀକ୍ଷ୍ଣ ଧାର ଖଣ୍ଡା ଏକ ବେଗେ ସେ ଧଇଲା
ଶାମ୍ବ କୁମରର ପୁଅ ବେକରେ ହାଣିଲା ।
ବେନିଖଣ୍ଡ ହୋଇ ପଡ଼ିଗଲା ସେ କୁମର
ପଛେ ପଛେ ତାହାର ଯେ ଧାଏଁ ଗଦବୀର ।
ଖଣ୍ଡା ଏକ ଧରିଣ ସେ ଧାଇଁଲା ପ୍ରଦ୍ୟୁମ୍ନ
ନିଶିତ ଖଣ୍ଡାଏ ନେଇ ମାରଇ ବହନ ।
ଅନିରୁଦ୍ଧର ଉପରେ ନେଇ ପ୍ରହାରିଲା
ମୁଣ୍ଡ ଛିଡ଼ିଣ ତାହାର ଭୂମିରେ ପଡ଼ିଲା ।
ତାହାର ପଛରେ ଯେଉଁ ଗଦବୀର ଥିଲା
ଜାମ୍ବବତୀର ସୁତକୁ ଆକର୍ଷି ଧଇଲା ।
ଯେଉଁ ନିଶିତ ଖଣ୍ଡାକୁ ଧରିଥିଲା କର
ଗଦର ଉପରେ ସେହୁ କଲାକ ପ୍ରହାର ।
ଗଦର ମୁଣ୍ଡ ଛିଡ଼ିଣ ପଡ଼ିଲା ତଳର
ମୁଣ୍ଡଗୋଟି ତାହାର ଯେ କମ୍ପେ ଥରହର ।
ଆନନ୍ଦ କୁମରକୁ ଯେ ସାନନ୍ଦ ମାଇଲା
ତୀକ୍ଷ୍ଣ ନିଶିତରେ ତାହା ମୁଣ୍ଡ ଛିଡ଼ିଗଲା ।
ଦେଖିଣ ଶ୍ରୀକୃଷ୍ଣଚନ୍ଦ୍ର ବଡ଼ ଦୁଃଖ କଲେ
ପଞ୍ଚଭୂତ ଆତ୍ମାରେ ସେ ବିକଳ ହୋଇଲେ ।
ଦୁଇଯୋଜନ ଅଟଇ ସନ୍ତର କାନନ
ତିଳେ ଛଡ଼ା ନାହିଁ ଘଞ୍ଚ ଅତି ବଡପନ ।
ପରସ୍ପର ମଧ୍ୟରେ ସେ ହେଲେ ହଣାହଣି
ଆପଣା ପର ସେମାନେ ନ ପାରିଲେ ଜାଣି ।
ଯୋଡ଼ ଯୋଡ଼ ହୋଇ କରୁଛନ୍ତି ମହାରଣ
ଆପଣାର ଶସ୍ତ୍ରମାନ ପକାଇ ତଳେଣ ।
ତୀକ୍ଷ୍ଣ ପତ୍ର ଘେନି ପୁଣି ହାନ୍ତି ମରାମରି
ବ୍ରହ୍ମ ଅଭିଶାପେ ସେହି ବୃକ୍ଷ ଅବତରି ।
ସନ୍ତରବନେ ଯାଦବ ହୋଇଲେ ନିଧନ
ଆଗହୁଁ ବିଧାତା ତାହା କରିଛି ଭିଆଣ ।
ରାଜ ବଚନ ନ ମାନିଣ କଲେ ଘୋର ଯୁଦ୍ଧ
ଲକ୍ଷେ ଷାଠିଏସହସ୍ର ହେଲେ ଶିରଚ୍ଛେଦ ।
ସନ୍ତର ବନରେ ବହିଗଲା ରକ୍ତନଦୀ
ସକଳ ଯାଦବମାନେ ହେଲେ ଶିରଚ୍ଛେଦ ।

ଦେଖି କରଣ ବ୍ୟସ୍ତ ହେଲେ ଭବଗ୍ରାହୀ
ପଦ୍ମଲୋଚନରୁ ଅଶ୍ରୁ ଯାଉଅଛି ବହି ।
ବିଶ୍ୱନାଥ ଶିରରୁ କି ଗଙ୍ଗା ବହିଯାଏ
ତେସନ ଅଶ୍ରୁରେ ମଗ୍ନ କରଦମ ହୁଏ ।
ଏହି ପରକାରେ ଚକ୍ଷୁ ବହେ ଅଶ୍ରୁଧାର
ଚାରିଆଡ଼କୁ ଚାହିଁଲେ ଦିଶେ ଅନ୍ଧକାର ।
ମଣ୍ଡାର ଉପରେ ମଣ୍ଡା ପଡ଼ିଅଛି ମାଡ଼
ଦେଖିକରି ଗୋପୀନାଥ ମୁଣ୍ଡ ହସ୍ତ କୋଡ଼ ।
ଧାର ଧାର ହୋଇଣ ଯେ ବହଇ ଶୋଣିତ
ବରଷାକାଳରେ ଯେସନେ ବହେ ନଦୀ ସ୍ରୋତ
ଏମନ୍ତ ପ୍ରକାରେ କୃଷ୍ଣ ନିରେଖି ଚାହିଁଲେ
ପୃଥିବୀରାଜ ଉଶ୍ୱାସ ହେଲା ବିଚାରିଲେ ।
ବୃଦ୍ଧ ଅଭିଶାପ ମୋତେ ହୋଇଲା ପ୍ରାପତ
ଗାନ୍ଧାରୀର ବଚନ ତ ନୋହେ ଅନ୍ୟମତ ।
ଯେତେବେଳେ କୁରୁବଳ ଲଭିଲେ ବିନାଶ
କୋପ କରିଣ ବୋଇଲା ଶୁଣ ପୀତବାସ ।
ମୋ ଆଗେ ମୋହର ପୁତ୍ର ମରିଇଲେ ହରି
ତୋ ଆଗେ ତୋ ପୁତ୍ରେ ଯାନ୍ତୁ ଶମନ ନଗରୀ
ତାହାର ବଚନ କେବେ ନୋହିଲା ମେଣ୍ଟନ
ଆବର ବଚନେକ ସେ କହିଥିଲା ପୁଣ ।
ବୋଇଲା ହେ ନାରାୟଣ ଏହା ଜାଣିଥିବୁ
ମୋହର ଏ ବଚନକୁ ଦୃଢ଼ ତୁ ମଣିବୁ ।
ମୋହର ମୃତ୍ୟୁ ବେଳକୁ ଏକ କେହି ନାହିଁ
ତୋ ମୃତ୍ୟୁବେଳେ ସଙ୍ଗରେ ନ ଥିବେଟି କେହି
ଏମନ୍ତ ବୋଲିଣ ମୋତେ ଦେଇଅଛି ଶାପ
ସେହିକଥା କେତେବେଳେ ନ ହୋଇବ ଲୋପ
ମନେ ମନେ ଏସନକ ଭାଳି ହୃଷୀକେଶୀ
ଏମନ୍ତ ବେଳେ ପଦ୍ମନ ମିଳିଲାକ ଆସି ।
ତାକୁ ଦେଖି ଜଗନ୍ନାଥ କୋପଭରା ହେଲେ
ସୁଦର୍ଶନ ଚକ୍ରକୁ ସେ ବେଗେ ଫିଙ୍ଗି ଦେଲେ
ପଦ୍ମନର ଗ୍ରୀବାଦେଶେ ପଡ଼େ ଚକ୍ରଧର
ତାହାର ମୁଣ୍ଡ ଛିଡ଼ିଲା ପଡ଼ିଲା ଭୂମିର ।
ପଦ୍ମନର ଶିର ଛେଦ ଚକ୍ର ଚଳିଗଲା
ଶ୍ରୀକୃଷ୍ଣ ହସ୍ତକୁ ଆଉ ଲେଉଟି ନଇଲା ।
କ୍ଷୀରେକ ମଧ୍ୟେ ବିଷ୍ଣୁଙ୍କ ଶୟନ ମନ୍ଦରେ
ପ୍ରବେଶ ହୋଇଲା ସେହୁ ଯାଇଁ ଧାଇଁକାରେ

ଚକ୍ରାପତି ମହାପ୍ରଭୁ ପଦ୍ମନେ ନାଶିଲେ
ବିକଳ ହୋଇଣ କୃଷ୍ଣ ଅନେକ ଭାଳିଲେ ।
ଚଉଦିଗରେ କ୍ଷଣେ ବୁଲି ବେଗେ ଗଲେ ଚଳି
ଶିଆଳିର ଲତା ଏକ ଦେଖି ବନମାଳୀ ।
ଖଟ ହୋଇ ପରସ୍ପେ ସେ ହୋଇଛି ପ୍ରତ୍ୟକ୍ଷ
ଦେଖିକରି ସନ୍ତୋଷ ଯେ ଲଭିଲେ ପଦ୍ମାକ୍ଷ
ମହା ଶୋକ ମନ ମଧ୍ୟେ ଜନ୍ମିଲା ତାଙ୍କର
ପଦ୍ମଲୋଚନୁ ତାଙ୍କର ବହେ ଅଶ୍ରୁନୀର ।
ପାଦର ଉପରେ ପାଦ ପାଦେକ ଦେଇଣ
ଶିଆଳୀ ଲତା ଉପରେ କଲେକ ଶୟନ ।
ଦକ୍ଷିଣା ପବନ ଚକ୍ଷୁ ବହେ ଧୀର ଧୀର
ପୂର୍ବେ ମୁଣ୍ଡକରି ଶୋଇଲେକ ଦାମୋଦର
ସମସ୍ତରେ ମହାନିଦ୍ରା ଚକ୍ଷୁ ପ୍ରବେଶିଲା
ଆବଶ୍ୟ ଜନ୍ମାନ୍ତେ ନିଦ୍ରା ନୟନେ ଘାରିଲା ।
କ୍ଷଣକାଳ ଚକ୍ଷୁ ବୁଜି ଚକ୍ଷୁ ନିଦ୍ରାଗଲେ
ଚନ୍ଦ୍ରାଭରେ ନୟନ ମେ ଫେଡ଼ିଣ ଚାହିଁଲେ
ଏମନ୍ତେଣ ରାତ୍ର ଗଲା ପ୍ରହରେକ ବହି
ଦଇବର ମାୟା କେବେ ଅନ୍ୟଥା ନୁହଇ ।
ଦେବର ମାୟା ଲାଗିଲା ଜରା ଶବରକୁ
ଭାରଯାର ନାମ ଧରି ଡାକିଲା ପାଶକୁ ।
ବୋଇଲା ବଚନ ମୋର ଶୁଣ ପ୍ରାଣମିତ
ଫିରିକ କାଠ ନାରାଚ ଦିଅ ମୋର ହାତ ।
ମୃଗୟା କରିବା ମୁହିଁ ଏବେଣି ଯିବଇଁ
ହରିଣ ମୃଗ ପ୍ରଭୃତି ମାରି ଆଣିବଇଁ ।
ଶବରୁଣୀକି କହିଣ ବାହାର ହୋଇଲା
ଫିରିକ କାଠ ଧନୁରେ ଶର ଚଢ଼ାଇଲା ।
ସୁରେଶ୍ୱର ବନଯାକ ବୁଲିଲା ଶବର
କାହିଁ ନ ଦେଖିଲା ସେହୁ ହରିଣ ଶମ୍ବର ।
ଘସ ପ୍ରହରେକ ଥାଉଁ ବୁଲିଲା ବନସ୍ତ
କାହିଁ ନ ଦେଖିଲା ସେହୁ ଜୀବ ଜନ୍ତୁ ମାତ୍ର
ଦଇବୀ ଘଟନା ଶୁଣ ହେ ରାଜନ
ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ପୂର୍ଣ୍ଣିମାର ଦିନ ।
ଆୟୁଷ୍ମାନ ଯୋଗ ପୁଣି ରେବତୀ ନକ୍ଷତ୍ର
ମୀନ ଚନ୍ଦ୍ର ଯୋଗେ ଦିନ ଅଟଇ ପବିତ୍ର ।
ଶଙ୍କରର ବାରତୋଟି ସେ ଦିନ ଅଟଇ
ପୌର୍ଣ୍ଣମାସୀ ଦିବସରେ ଚନ୍ଦ୍ରକ୍ଷୟ ନାହିଁ ।

ସେ ରୂପରେ ପୃଥ୍ୱୀପାଳ ଶୁକଳ ଦିଶଇ
ହରିର ପଦପଦ୍ମେ ପୃଥ୍ୱୀ ଦେବୀ ଶୋଭାପାଇ
ବଜ ପାଦ୍ମବାକୁ ଆଜ ଅଛୁ ଗୃହଦଣ୍ଡ ।
ମୃଗ ନପାଇ ଶବର ମନରେ ବଖଣ୍ଡ ।
ଖୋଜ ଖୋଜ କଳ୍ପଦ୍ରୁର ତଳୁଁ ଚଳଗଲା
ପ୍ରଭୁଙ୍କ ବାମ ଚରଣ ଅଙ୍ଗୁଷ୍ଠି ଦେଖିଲା ।
ମୃଗର କର୍ଣ୍ଣ ପରାୟେ ମଣିଲା ଶବର
ଶରକୁ ସନ୍ଧାନ କରି ବିନ୍ଧିଲା ସତ୍ୱର ।
ପ୍ରଭୁଙ୍କ ଚରଣେ ଯାଇ ଯେଣୁ ସେ ବାଜିଲା
ତତକ୍ଷଣେ ତାହାଙ୍କର ନିଦ୍ରାଭଙ୍ଗ ହେଲା ।
କାଣ୍ଡ ଯାଇ ବାଜନ୍ତେଣ ଜାଣିଲେ ଶ୍ରୀହରି
ଜରା-କାଣ୍ଡ ବୋଲି ଜାଣିଲେକ ଦଇତ୍ୟାରି
ଏହି କାଣ୍ଡରେ ବାଳିକ ମାରିଥିଲି ମୁହିଁ
ଜାଣିଣ ଜରାଶବର ବିନ୍ଧିଲା ମୋତେହିଁ ।
ଏସନକ ବଚନକୁ କହି ନନ୍ଦନାନ
ଅଚେତନ ହୋଇ ଶୋଇଗଲେ ଭଗବାନ ।
ବାଣ ବିନ୍ଧି ସେ ଶବର ଧାଇଁଣ ଆଇଲା
ଶତଦଳ ପଦ୍ମପ୍ରାୟ ମୁଖ ନିରେଖିଲା ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋଭି
ଶିଆଳୀ ଲତା ମଧ୍ୟରେ ଅନନ୍ତ ଦେବ ଶୋଇ ।
ଦେଖିଣ ସେହି ଶବର ଚାଟକା ହୋଇଲା
ପାଦରେ କାଣ୍ଡ ଲାଗିଛି ନୟନେ ଦେଖିଲା ।
ହେ ଧର୍ମ ଦେବତା ବୋଲି ସ୍ମରଇ ହୃଦରେ
ବ୍ୟାଧ ଜାତିରେ ଜନମ ଲଭିଲି ମର୍ତ୍ତ୍ୟରେ ।
ଧିକ ଧିକ ମୋ ଜୀବନ ଅଛଇ ଜୀବିତ
ଜନ୍ତୁଙ୍କର ଶରୀରରେ କରି ଶରଘାତ ।
ସେମାନଙ୍କୁ ମାରିଣ ମୁଁ କରଇ ଭୋଜନ
ପାପିଷ୍ଠପାମର ମୁହିଁ ଅଟେ ଜାତି ହୀନ ।
ଏତେ ବଡ଼ ପ୍ରଭୁ ଠାରେ ଦ୍ରୋହ ଅର୍ଜିଲଇଁ
ସପତ ବ୍ରହ୍ମାଣ୍ଡ ମଧ୍ୟେ ରଖନ୍ତା କେ ନାହିଁ ।
ଜରାଶବର ବହୁତ ବିକଳ ହୋଇଲା
ଭୟକରି ପ୍ରଭୁଙ୍କର ପାଶକୁ ନଗଲା ।
ଖଣ୍ଡେ ଦୂରରେ ଥାଇଣ କରଇ ସେ ସ୍ତୁତି
ଦୟା ତୁମ୍ଭେ କର ମୋତେ କମଳାର ପତି
ଜରାଶବରର ମନ ଜାଣି ଭବଗ୍ରାହୀ
ଆସ ଆସ ଶବର ତୁ ଭୟ କର ନାହିଁ ।

ମୋହର ସନ୍ନିଧିକୁ ତୁ ଆସ ହେ ଶବର
ଭୟ କରିଣ ଶବର ନ ପଶେ ପାଖର ।
ଗୋବିନ୍ଦ ବୋଇଲେ ଜରା ନ କର ତୁ ଭୟ
ପୂର୍ବରୁ ଏହି କଥାର ହୋଇଛି ଉପାୟ ।
ଆଶ୍ୱାସ ବାକ୍ୟେ ଶବର ଚିତ୍ତ ଶାନ୍ତ ହେଲା
କରପଦ ଯୋଡ଼ିଣ ସେ କରତ ଲଭିଲା ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ରେ ଶବରମଣି
ହସ୍ତିନାର ଭୁବନକୁ ଯାଅ ତୁ ଏକ୍ଷଣି ।
ପଞ୍ଚପାଣ୍ଡବେ ଅଛନ୍ତି ହସ୍ତିନା ନଗରେ
ତାହାଙ୍କୁ ଘେନିଣ ତୁହି ମିଳିବୁ ଏଠାରେ ।
କରପଦ ଯୋଡ଼ିଣ ସେ କରତ ବୋଲଇ
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଶ୍ରୀପାଦପଦ୍ମରୁ ମୁହିଁ କାଢିବି ନାରାଜ
ଫୁଙ୍କିଣ ଘାଆ ଶୁଖାଇ ଦେବି ଦେବରାଜ ।
କାଣ୍ଡ ଘାଆ ଶୁଖିବାର ଜାଣଇ ମୌଷଧି
ତୁମ୍ଭେ ଆଜ୍ଞା ଦିଅ ମୋତେ କରୁଣାବାରିଧି ।
ଶବର ମୁଖରୁ ପ୍ରଭୁ ଏସନକ ଶୁଣି
ବୋଇଲେ ଶ୍ରୀଅଙ୍ଗ ତୁ ନ ଛୁଅଁ ବୀରମଣି ।
ବିଳମ୍ବ ନ କର ଯାଅ ହସ୍ତିନା ନଗର
ପାଣ୍ଡବଙ୍କୁ ଆଣି ଦିଅ ମୋହର ଛାମୁର ।
ଆମ୍ଭର ଶ୍ରୀଅଙ୍ଗ ଗୋଟି ଜଳୁଣ ଅଛଇ
ପାର୍ଥ ଛୁଅନ୍ତେ ଶୀତଳ ହେବ ମୋର ଦେହି ।
ଆଜ୍ଞା ପାଇଣ ଶବର ତ୍ୱରିତ ଉଠିଲା
ଶ୍ରୀଗୋବିନ୍ଦଙ୍କ ପୟରେ ଓଳଗି ଶୋଇଲା ।
ଫିରିକ କାଠନିର୍ମିତ ଧନୁ ଏକ ଧରି
ଉତ୍ତର ମୁଖ ହୋଇଣ ଚଳେ ମହାବଳୀ ।
ହସ୍ତିନା ନଗରେ ଯାଇ ହୋଇଲା ପ୍ରବେଶ
ଭୃତ୍ୟଜନଙ୍କୁ କହଇ କରିଣ ବିଶ୍ୱାସ ।
ଯୁଧିଷ୍ଠିରଙ୍କ ଛାମୁରେ ଜଣା ବେଗେ ଯାଇ
ଗୋବିନ୍ଦ ପାଖରୁ ଜଣେ ଦୂତ ଆସିଛଇ ।
ଏହା ଶୁଣି ଭୃତ୍ୟମାନେ ଭିତରକୁ ଗଲେ
କୃଷ୍ଣ ଦୂତ ଆସିଅଛି ବୋଲିଣ ବୋଇଲେ ।
ଯୁଧିଷ୍ଠିର ଆଜ୍ଞା ଦେଲେ ଭିତରକୁ ଆଣ
କିସ ଆଜ୍ଞା ଦେଇଛନ୍ତି ଦେବ ନାରାୟଣ ।
ଠାକୁରଙ୍କ ଆଜ୍ଞା ତୁମ୍ଭେ ଶୁଣ ହେ ଶବର
ଉତ୍ତର ଜଗଛଠାକୁ ଚଳ ତତପର ।

ରାଜା ଆଜ୍ଞାରେ ଶବର ତହୁଁ ବେଗେ ଚଳି
ଯୁଧିଷ୍ଠିରଙ୍କ ଛାମୁରେ କରେ ନିଜସ୍ଥଳ ।
କରପତ୍ର ଯୋଡ଼ିଣ ସେ ବୋଲଇ ବଚନ
ଆଜ୍ଞା କରନ୍ତନ୍ତି ମହାପ୍ରଭୁ ଭଗବାନ ।
ସୁରେଶ୍ୱର ବନମଧ୍ୟେ ଛନ୍ତି ଜଗନ୍ନାଥ
ଆଜ୍ଞା କରନ୍ତନ୍ତି ବେଗେ ଆସ ପାଣ୍ଡବନ୍ତ ।
ସ୍ୱର ଘର ନ ଆସିବେ ଯେବେ ତାହାଙ୍କର
କେବଳ ବେଗେ ଆସିବୁ ବାସବ କୁମର ।
ଆସ ଆସ ବେଗ ହୋଇ ନ ପାରିଲ ସତ୍ୱ
ବିଳମ୍ବରେ କୁପିତ ଯେ ହେବେ ଭାବଗ୍ରାହୀ ।
ଯୁଧିଷ୍ଠିର ନିରେଖିଲେ ଅର୍ଜ୍ଜୁନ ବଦନ
କି ନିମନ୍ତେ ନେଉଛନ୍ତି ପ୍ରଭୁ ନାରାୟଣ ।
ଅର୍ଜ୍ଜୁନ ପୁଚ୍ଛନ୍ତି ପୁଣ ହେ ଶବର ଭାଇ
କେବଣ କଥା ନିମନ୍ତେ ଡକରା ହୁଅଇ ।
ଶବର ବୋଇଲେ ମୁହିଁ ନ ଜାଣଇଁ କିଛି
ଆଜ୍ଞାରେ ତୁମ୍ଭଙ୍କୁ ନେବା ପାଇଁ ଆସିଅଛି ।
ବିସ୍ମୟରେ ବୋଲନ୍ତି ସେ ଅନ୍ୟ ବୃଶରାଇ
ଭୀମସେନ କହନ୍ତି ଯୁଧିଷ୍ଠିର ମୁଖ ଚାହିଁ ।
ସହଦେବଙ୍କୁ ପଚାର ଏହିର ବୃତ୍ତାନ୍ତ
କିମ୍ପାଇଁ ନେଉଅଛନ୍ତି ଦେବ ଜଗନ୍ନାଥ ।
ସୁରେଶ୍ୱର ବନମଧ୍ୟେ ଛନ୍ତି ଭାବଗ୍ରାହୀ
ଭଲ ପ୍ରାପ୍ତ ମୋତେ ଏହି କଥା ନ ଦିଶଇ ।
ତରକ କରିଣ ଏହୁ କଥାଏ କହିଲ
ଯୁଧିଷ୍ଠିରଙ୍କ ମନକୁ ସେ କଥା ରୁଚିଲା ।
ତହୁଁ ନକୁଳ ବୋଲଇ କହ ସହଦେବ
କିବାପାଇଁ ଡାକୁଛନ୍ତି କିମ୍ପା ବାସୁଦେବ ।
ଯୁଧିଷ୍ଠିର ଦେବଙ୍କର ଆଜ୍ଞା ପରମାଣେ
ସହଦେବ ଚାହିଁ କରି ବୋଇଲେ ତକ୍ଷଣେ ।
କର ଚାହିଁ ସହଦେବ ବିସ୍ମୟ ମଣିଲା
ଦୁଇ ଦଣ୍ଡ ପରଯନ୍ତ କଥା ନ କହିଲା ।
ତହୁଁ ଭୀମସେନ ବୋଲେ କହରେ କୁମାର
କି ନିମନ୍ତେ ନେଉଛନ୍ତି ପ୍ରଭୁ ଚକ୍ରଧର ।
ତହୁଁ ସହଦେବ ବୋଲେ ଶୁଣିମା ଗୋସାଇଁ
ବିପରୀତ କଥା ଗୋଟି ଉପୁଜି ଅଛଇ ।
ଶ୍ରୀଜଗନ୍ନାଥ ପ୍ରଭୁଙ୍କୁ ବିପତ୍ତି ପଡ଼ିଲା
ସନ୍ତରା ବନରେ କୃଷ୍ଣ ବଂଶ ନାଶ ଗଲା ।

ଏହି ଶବର କୃଷ୍ଣଙ୍କୁ ବିନ୍ଧିଅଛି ଶର
ଅର୍ଜ୍ଜୁନ ଠାକୁର ଗଲେ ଛାଡ଼ିବେ ଶରୀର ।
ତାଣ୍ଡ ଘାଆରେ ପ୍ରଭୁଙ୍କ ଜଳୁଅଛି ଦେହୀ
ଶିମ୍ପାଳୀ ଲତାରେ ଶୋଇଛନ୍ତି ଭାବଗ୍ରାହୀ ।
ଲକ୍ଷେ ଷାଠିଏ ସହସ ତାହାଙ୍କ ନନ୍ଦନ
ସନ୍ତରା ବନରେ ସର୍ବେ ଲଭିଲେ ନିଧନ ।
ଅନନ୍ତ ଚଳି ଗଲେଣି ତାଙ୍କ ନିଜଧାମ
ଜଳ ଉଦସ ଗ୍ରାସିଲେ ଦ୍ୱାରକା ଆଶ୍ରମ ।
ତାହାଙ୍କଠାକୁ ଅର୍ଜ୍ଜୁନ ଯିବେ ଯେତେବେଳେ
ଠାକୁରେ ବୋଲିବେ ପାର୍ଥ ଧରମୋତେ କୋଳେ
ତୋ ଦେହ ଲାଗି ଶୀତଳ ହେବ ମୋ ଶରୀର
ପାର୍ଥଅଙ୍ଗ ଲାଗି କୃଷ୍ଣ ଯିବେ ନିଜପୁର ।
ଅର୍ଜ୍ଜୁନ ଠାକୁର ଦେହେ ବିଷ୍ଣୁ କଳା ଅଛି
ତାହା ନହେଲେ କେମନ୍ତେ ଯିବେଟି ଶ୍ରୀହରି
ଅର୍ଜ୍ଜୁନ ଠାକୁର ତହିଁ ଯାନ୍ତୁ ଏହିକ୍ଷଣ
କେତେବେଳେ ନ ଛୁଇଁବେ ତାଙ୍କ ଦେହ ପୁଣି
ଗୁପ୍ତ କଥା କହନ୍ତେଣ ମାଦ୍ରୀର ନନ୍ଦନ
ଯୁଧିଷ୍ଠିର ମହାରାଜା ହରାଇଲେ ଜ୍ଞାନ ।
କି ବୁଦ୍ଧି କରିବା ବୋଲି କହନ୍ତି ବିସ୍ତର
ଶବର ବୋଲଇ ଉଠ ବିଳମ୍ବ ନ କର ।
ଶବର ବଚନେ ବୋଲୁଛନ୍ତି ପାଞ୍ଚଭାଇ
ଆସ୍ଥ ଯିବା ଯାଏ ଥିବେଟିକି ଭାବଗ୍ରାହୀ ।
ଶବର ବୋଲଇ ଦେବ ନ କର ହୋ ଚିନ୍ତା
ବେଗେ ଆସ ଦେଖିବଟି ଯେବେ ଜଗତ୍ପିତା
ଯୁଧିଷ୍ଠିର ପୁଚ୍ଛନ୍ତି ହୋ ଶୁଣ ସହଦେବ
କିମ୍ପାଇଁ ଶବର ଶର ବିନ୍ଧେ ବାସୁଦେବ ।
ଏଥିର ଚରିତ ମୋତେ କହ ହୋ ବୁଝାଇ
ସନ୍ଦେହର କଥା ମୁଁ ତୋ ମୁଖୁଁ ଶୁଣିବଇଁ ।
ଏହା ଶୁଣି ସହଦେବ କରକୁ ଚାହିଁଲା
ତ୍ରେତୟା ଯୁଗର କଥା ମାନ ବଖାଣିଲା ।
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଦଶରଥ ଗୃହେ ଜନ୍ମିଥିଲେ ଭାବଗ୍ରାହୀ ।
ରାବଣର ଭୟେ ଦେବେ ରହି ନ ପାରିଲେ
ବିଷ୍ଣୁ ପାଶେ ଯାଇ ସର୍ବେ ଗୁହାରି କରିଲେ
ମର୍ତ୍ତ୍ୟ ପୁରେ ଅବତାର ହେଲେ ନାରାୟଣ
ଦଶରଥ ରାଜାଙ୍କର ହୋଇଲେ ନନ୍ଦନ ।

ବାଳକାଳେ ବିଶ୍ୱାମିତ୍ର ଯାଗ ରକ୍ଷା କଲେ
ତାଡ଼କା ସୁବାହୁ ଯାଇ ନାରାଚେ ମାଇଲେ ।
ବାୟୁଶରେ ମାରୀଚକୁ ଦେଲେକ ଉଡ଼ାଇ
ଅସୁର ମାରଣ ଯାଗ ରଖି ରଘୁସାଇଁ ।
ସୁଖେ ଦେବତାଏ ହବିର୍ଭାଗ ପ୍ରାପ୍ତ ହେଲେ
ଋଷିମାନେ ଶ୍ରୀରାମଙ୍କ କଲ୍ୟାଣ ବାଞ୍ଛିଲେ ।
ବିଶ୍ୱାମିତ୍ର ଶସ୍ତ୍ର ଶାସ୍ତ୍ର ବିଦ୍ୟା ଶିଖାଇଲେ
ଶ୍ରୀରାମ ପାଦେ ଅହଲ୍ୟା ମୁକତି ଲଭିଲେ ।
ତଦନ୍ତରେ ମିଥିଳାକୁ ଗଲେ ରାମ ରାଣ
ତହିଁ ଯାଇଁ ଶିବଧନୁ କଲେକ ଭଗନ ।
ସୀତାଙ୍କୁ ବିବାହ ହୋଇ ତହୁଁ ବାହୁଡ଼ିଲେ
ପଥେ ପର୍ଶୁରାମଙ୍କର ଦର୍ପ ଚୂର୍ଣ୍ଣ କଲେ ।
ଅଯୋଧ୍ୟା କଟକେ ଆସି ହୋଇଲେ ପ୍ରବେଶ
ସୀତାଙ୍କୁ ଘେନିଣ ଦିନ ବଞ୍ଚି ରଘୁଶିଷ୍ୟ ।
ଏହିରୂପେ କିଛୁଦିନ ହୁଅନ୍ତେ ଅନ୍ତର
ଶ୍ରୀରାମଙ୍କୁ ରାଜା କର ବୋଲି ନୃପବର ।
କଇକେୟୀ ପାଶେ ରାଜା ସତ୍ୟ କରିଥିଲେ
ସତ୍ୟ ପାଳିବାକୁ ରାମ ବନବାସ ଗଲେ ।
ପିତାଙ୍କର ସତ୍ୟ କେଭେ ଅନ୍ୟଥା ନ କଲେ
ସୀତାଙ୍କୁ ଘେନିଣ ରାମ ବନବାସୀ ହେଲେ ।
ବନେ ଭ୍ରମିଣ ରହିଲେ ଗୋଦାବରୀ କୂଳ
ସୀତାଙ୍କୁ ହରାଇ ନେଲା ଦଶଗ୍ରୀବ ବଳ ।
ଲଙ୍କାଗଡ଼କୁ ନେଇଣ ଗୋପନେ ରଖିଲା
ଅଶୋକବନରେ ନେଇ ତାହାଙ୍କୁ ଥୋଇଲା ।
ମାୟା ମୃଗ ମାରିବାକୁ ଯାଇଥିଲେ ରାମ
ବାହୁଡ଼ି ଆସିଣ ତହିଁ ଦେଖିଲେ ଶ୍ରୀରାମ ।
ସୀତାଙ୍କୁ ନ ଦେଖି ରାମ ବିକଳ ହୋଇଲେ
ଘୋର ବନସ୍ତରେ ବୁଲି ତାହାଙ୍କୁ ଖୋଜିଲେ ।
ଜଟାୟୁ ପକ୍ଷୀ କହିଲା ରାମଙ୍କ ପାଶେଣ
ସୀତାଙ୍କୁ ଘେନିଗଲା ଲଙ୍କାର ରାବଣ ।
ବାର୍ତ୍ତା ପାଇ ରାମଚନ୍ଦ୍ର ବିସ୍ମୟ ହୋଇଲେ
ହା ସୀତା ହା ସୀତା ବୋଲି ଉଚ୍ଚରେ ରୋଦିଲେ
ଏହିପରି କିଛୁଦିନ ଗତ ହୋଇବାରେ
ଋଷ୍ୟମୂକ ପର୍ବତରେ ଶ୍ରୀରାମ ମିଳିଲେ ।
ବାଳି ଭୟରେ ସୁଗ୍ରୀବ ପର୍ବତରେ ଥିଲା
ବାଳୀର ଏ ଦୂତ ବୋଲି ଭୟେ ପଳାଇଲା ।

ହନୁମନ୍ତ ବୋଇଲା ତୁ କାହିଁକି ପଳାଉ
ଧନୁର୍ଦ୍ଧରଙ୍କୁ ଦେଖିଣ ମନେ ଭୟ ପାଉ ।
ଏତେ କହି ହନୁମନ୍ତ ହୋଇଲା ବାହାର
ଖଣ୍ଡେ ଦୂର ଯାଇକରି ଦେଖେ ରଘୁବୀର ।
ତହୁଁ ବ୍ରାହ୍ମଣ ସ୍ୱରୂପ ଗୋଟି ସେ ଧଇଲା
ଶ୍ରୀରାମଙ୍କର ସମ୍ମୁଖରେ ଯାଇଣ ମିଳିଲା ।
ମାରେଖି ଜାଣି ପାରିଲେ ପ୍ରଭୁ ରଘୁରାଣ
ସକଳ କଥା କହିଲା ତାଙ୍କୁ ହନୁମାନ ।
ହନୁମନ୍ତ ସଙ୍ଗେ ରାମ ଲକ୍ଷ୍ମଣ ଚଳିଲେ
ସୁଗ୍ରୀବର ସଙ୍ଗତରେ ମଇତ୍ର ହୋଇଲେ ।
ମଇତ୍ର ହୋଇ ରାମ କିଷ୍କିନ୍ଧ୍ୟାକୁ ଗଲେ
ସୁଗ୍ରୀବର ଦୁଃଖ ଦେଖି ବାଳିକି କୋପିଲେ ।
ଦୁଇଭାଇ ଡାକହାକ କରନ୍ତେ ସମର
ବାଳିକି ବିନ୍ଧିଲେ ରାମ ବାଛି ତୀକ୍ଷ୍ଣଶର ।
ସେ କାଣ୍ଡରେ ବାଳୀବୀର ଢଳିଣ ପଡ଼ିଲା
ଶ୍ରୀରାମଙ୍କୁ ଚାହିଁ ସେହୁ ଏମନ୍ତ କହିଲା ।
ମୁଁ ତୋହର କେତେବେଳେ ନୁହଇ ବଇରୀ
ଅକାରଣେ ମାଇଲୁ ତୁ ମୋତେ ଶସ୍ତ୍ର ଧରିଲେ
ଏତେ କହି ବାଳି ତହିଁ ହରାଇଲା ପ୍ରାଣ
କିଷ୍କିନ୍ଧ୍ୟାରେ ସୁଗ୍ରୀବକୁ କଲେକ ରାଜନ ।
ସୁଗ୍ରୀ ସତ୍ୟକଲା ଚତୁର୍ମାସ୍ୟା ଶେଷ ହେଲେ
ରାବଣେ ବଧି ସୀତାଙ୍କୁ ଆଣିବି ମୁଁ ବୋଲେ ।
ଏହା ଶୁଣି ରାମଚନ୍ଦ୍ର ତହୁଁ ଚଳିଗଲେ
ମାଲ୍ୟବନ୍ତ ପର୍ବତରେ ଯାଇଣ ମିଳିଲେ ।
ଚତୁର୍ମାସ୍ୟା ପାହିବାରେ ସୁଗ୍ରୀବ ଆଇଲା
ଶ୍ରୀରାମଚନ୍ଦ୍ର ଚରଣେ ଯାଇଣ ଖଟିଲା ।
ସେ ସୁଗ୍ରୀବ ଚତୁର୍ଦ୍ଦିଗେ ଦୂତ ବରଗିଲେ
ଲଙ୍କାପୁରେ ହନୁମନ୍ତ ସୀତା ଠାବକଲେ ।
ଋକ୍ଷକପି ଘେନି ରାମ ବାନ୍ଧି ସେତୁ ବନ୍ଧ
ଯାଇଣ ରହିଲେ ସୁବଳୟା ଗିରି ମଧ୍ୟ ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ସବୁଙ୍କୁ ମାଇଲେ
ରାମ ପାଦେ ବିଭୀଷଣ ଶରଣ ପଶିଲେ ।
ଆପଣେ ଶ୍ରୀରଘୁନାଥ ମାଇଲେ ରାବଣ
ସୀତାଙ୍କୁ ଘେନିଣ ତହୁଁ ବାହାରିଲେ ପୁଣ ।
ଅଯୋଧ୍ୟାପୁରେ ଆସିଣ ପ୍ରବେଶ ହୋଇଲେ
ସୀତାଙ୍କୁ ଘେନିଣ ରାମ ଅଭିଷେକ ହେଲେ ।

ଅଭିଷେକ ବିଧାନକୁ ସାରି ରଘୁନାଥ
ଆସ୍ଥାନ ଉପରେ ବିଜେ କଲେ ସୀତାକାନ୍ତ ।
ଋକ୍ଷ କପିମାନେ ଚହୁଁ ପାଖିଆରେ ରହି
ଆସ୍ଥାନ ତଳେ ରହିଲେ ସର୍ବେ ଲମ୍ବ ହୋଇ
ଜଣେ ଜଣେ ଋକ୍ଷ କପିମାନଙ୍କୁ ରାଘବ
ଶାଢ଼ୀ ପ୍ରସାଦ ତାହାଙ୍କୁ ଦିଅନ୍ତି ଶ୍ରୀମଗଣ ।
ସେ ଯାହାର ମନକଥା ସମସ୍ତ ଜାଣିଲେ
ଏକାନ୍ତ ସ୍ଥାନକୁ ଅଙ୍ଗଦକୁ ହକାରିଲେ ।
ବୋଇଲେ ଅଙ୍ଗଦ ଯାହା ବାଞ୍ଛା କଲ ମନେ
ସେ କଥା କହଇ ଶୁଣ ତୁହି ଏକମନେ ।
ଅକାରଣେ ତୋ ପିତାକୁ ଆମ୍ଭେ ନାଶ କଲୁ
କିଷ୍କିନ୍ଧ୍ୟାରେ ସୁଗ୍ରୀବକୁ ରାଜା କରାଇଲୁଁ ।
ଯଥାର୍ଥରେ ଆମ୍ଭେ ଅଟୁ ତୋ ପିତା ବଇରି
ପୁତ୍ର ହୋଇ ଯେବେ ପିତା କାର୍ଯ୍ୟ ସେ ନକରି
ସେହି ପୁତ୍ରଟିଗୋଟି ପଶୁ ସଙ୍ଗେ ଗଣ୍ୟହୋଇ
ଜୀବନ ଧରିବା ତାର ବୃଥା ଅଟଇ ।
ତୁ ଏବେ ଆମ୍ଭ ବଚନ ହେତୁ କରିଥିବୁ
ଯେମନ୍ତେ ପିତୃ ଋଣରୁ ମୁକତ ହୋଇବୁ ।
ଏହି ତ୍ରେତା ଯୁଗ ଗଲେ ଦ୍ୱାପର ଯୁଗରେ
ଆମ୍ଭେ ଜନ୍ମ ହେବୁ ଆସି ବସୁଦେବ ଘରେ
ପୃଥ୍ୱୀଭାର ନିବାରଣେ ମର୍ତ୍ତ୍ୟେ ହୋଇ ଜାତ
ଅନେକ ଅସୁରବଳ କରିବୁ ନିପାତ ।
ତହିଁର ଅନ୍ତରେ ପୁଣ ଯୁଗ ଶେଷ କାଳେ
ତୁହି ଜାତ ହେବୁ ବସୁ ଶବର ଗୃହରେ ।
ଜାରାଶବର ବୋଲିଣ ନାମ ହେବ ତୋର
ଏକଥାକୁ ହେତୁ କରିଥିବୁ ତୁ ମନର ।
ବାଳକ ମାଇଲା କାଣ୍ଡ ତାକୁ ତୋଳିଦେଲେ
ଦ୍ୱାପରରେ ପିତୃ କାର୍ଯ୍ୟ କରିବୁ ବୋଇଲେ
ବ୍ରହ୍ମଶାପ ଫଳେ ମୋର ପୁତ୍ର ଚୂର୍ଣ୍ଣ ହୋଇ ।
ସକଳବଳେ ମରିବେ ହଣା ହଣି ହୋଇ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଏକାବେଳକରେ ସର୍ବେ ହାରିବେ ଜୀବନ ।
ତେତେବେଳେ ଯାଇ ଆମ୍ଭେ ଶୀଆଳଳତାରେ
ସୁଖେ ନିଦ୍ରା କରିଥିବୁ ତହିଁର ଉପରେ ।
ସେତେବେଳେ ମୃଗଧ୍ୟାରେ ତୁହି ଆସିଥିବୁ
ମୃଗ ଶମ୍ବର ନ ପାଇ ବିମନ ହୋଇବୁ ।
ପାଦପରେ ପାଦ ଦେଇ ମୁଁ ଥିବି ଶୋଇ
ଶ୍ରୀଚରଣ ଗୋଟି ହଲାଉଥିବି ମୁହିଁ ।
ମୃଗ କଣ୍ଠ ପ୍ରାପ୍ତ ତାହା ମଣିବୁ ମନରେ
ଏ ନାରାଚ ପ୍ରହାରିବୁ ଆମ୍ଭର ପଦରେ ।
ବାମ ପାଦରେ କନିଷ୍ଠ ଅଙ୍ଗୁଳିରେ ଯାଇ
ବାଜନ୍ତେ ତୁ ପିତୃଋଣ ଶୁଝିବୁ ତନୟୀ ।
ଏତେ କହି ଅଙ୍ଗଦକୁ ମେଲାଣି ସେ ଦେଲେ
ଯେଉଁରୂପେ ପ୍ରଭୁ ତାକୁ ଆଜ୍ଞା ଦେଇଥିଲେ
ସେ କାଳର କଥା ଏବେ ସ୍ୱରୂପ ଘଟିଲା
ଶବର ରୂପ ଧରିଣ ଅଙ୍ଗଦ ଜନ୍ମିଲା ।
ନୋହିଲେ କୃଷ୍ଣଚନ୍ଦ୍ରଙ୍କୁ ବିନ୍ଧନ୍ତା କି ସେହି
ଦେବାଧି ଦେବତାଙ୍କର ପ୍ରଭୁ ଯେ ଅଟଇ ।
ଏହା ଶୁଣି ଯୁଧିଷ୍ଠିର ଅର୍ଜୁନେ ବୁଝିଲେ
ସହଦେବ ମୁଖୁ ଯହୁଁ ଏସନ ଶୁଣିଲେ ।
ତହୁଁ ପାଣ୍ଡୁସୁତମାନେ ଏକହିତ ହୋଇ
ସୁରେଶ୍ୱର ଅରଣ୍ୟକୁ ଯାଆନ୍ତି ଚଳାଇ ।
ଆଗେ ଆଗେ ଶବର ଯେ କଢ଼ାଉଛି ବାଟ
ପଛରେ ଗୋଡ଼ାଇଛନ୍ତି ପାଣ୍ଡୁଙ୍କର ଭଟ ।
ଯେଉଁଠାରେ ପଡ଼ିଛନ୍ତି ପ୍ରଭୁ ନାରାୟଣ
ସେ ସ୍ଥାନେ ମିଳିଲେ ଯାଇ ପାଣ୍ଡୁଙ୍କର ନାନ ।
ଦେଖିଲେ ଭୂମିରେ ଶୋଇଛନ୍ତି ନାରାୟଣ
ଜାରାଶବର ନାରାଚ ପାଦରେ ବାଜିଣ ।
ପଦ୍ମଲୋଚନରୁ ବହୁଅଛି ଅଶ୍ରୁଧାର
ପାଣ୍ଡବ ଆଗମ ବୁଝି ଅଛନ୍ତି ଶ୍ରୀଧର ।
ବେନଗୋଟି ନୟନକୁ କୃଷ୍ଣ ଛନ୍ତି ବୁଜି
ନାରାଚ ଆଘାତ ଚିହ୍ନ ଅଙ୍ଗୁଳିରେ ରାଜି ।
ଏମନ୍ତବେଳେ ମିଳିଲେ ତହିଁ ପାଞ୍ଚ ଭାଇ
ଦେଖି ଭୀମ ଅର୍ଜୁନାଦି ପ୍ରଣମନ୍ତି ଯାଇ ।
ପାଣ୍ଡବଙ୍କର ଆସିବା ଜାଣି ଦାମୋଦର
ଚକ୍ଷୁ ଫେଡ଼ି ନିରେଖିଲେ ବଦନ ତାଙ୍କର ।
ଦେଖିଲେ ପାଦର ତଳେ ଭଲେ ଅରଜୁନ
ଗଦ ଗଦ ହୋଇ ତାଙ୍କୁ ବୋଲନ୍ତି ବଚନ
ସତ୍ୱର ଆସ ହେ ପାର୍ଥ ଜୀବକ ମୋହର
ନାରାଚ ଆଘାତେ ଜଳୁଅଛି ମୋ ଶରୀର ।
ତୋହର ଅଙ୍ଗ ଲାଗନ୍ତେ ଶୀତଳ ହୋଇବ
ବୁଝି ରହିଅଛି କେବେ ମିଳିବୁ ମୋ ଠାବ ।

ଅନେକ ଭକଲେ ଡାକ ଦ୍ୟନ୍ତ ଜଗନ୍ନାଥ
ଜନ୍ମଛୁ ଶରୀର କୋଳେ ଧର ବାର ପାର୍ଥ ।
ବହୁତ ଭକଳ ହୋଇ ଡାକନ୍ତ ଗୋସାଇଁ
କେବେହେଁ ମେ ଅରଜୁନ ପାଶେ ନ ଆସଇ
ସହଦେବ ବାକ୍ୟ ଧରିଅଛୁ ଦୃଢ କର
ଛୁଇଁଲେ ମୁଁ ଜୀବନକୁ ଛାଡ଼ିବ ଦୈତାର ।
ତହୁଁ ଅର୍ଜୁନ ବୋଇଲେ ଶୁଣିମା ଗୋସାଇଁ
ଯୁଧିଷ୍ଠିରଙ୍କର ଛୁଇଁବାକୁ ଆଜ୍ଞା ନାହିଁ ।
ଏହା ଶୁଣିଣ କୁପିତ ହେଲେ ଜଗନ୍ନାଥ
ବୋଇଲେ ଜାରଜାତକା ଅଟୁ ପାଣ୍ଡୁ ସୁତ ।
ତୁମ୍ଭପାଇଁ ମୁହିଁ କେତେ ଦୁଃଖ ପାଇନାହିଁ
ପ୍ରାଣ ଯିବାବେଳେ ମୋତେ ନ ଛୁଇଁଲୁ ତୁହି
ଏମନ୍ତ ପ୍ରକାରେ ଗାଳି ଦେଲେକ ବହୁତ
ବୋଇଲେ ଜାରଜାତକା ନାହିଁ କୁଳଗୋତ ।
ଏସନକ ପରକାରେ ବହୁ ଗାଳିଦେଲେ
କେବେହେଁ ଅର୍ଜୁନ ତାଙ୍କ ଅଙ୍ଗ ନ ଛୁଇଁଲେ
ଅର୍ଜୁନ ଅଙ୍ଗରେ ଏକ କଳା ଥୋଇଛନ୍ତ
ପଞ୍ଚଦଶ କଳା ସେନ ଆପେ ଜନ୍ମିଛନ୍ତ ।
ଅରଜୁନ ନ ଛୁଇଁଲେ ଯହୁଁ ତାଙ୍କ ଗାତ
ପ୍ରାଣ ଭକଳରେ କୃଷ୍ଣ ହୋଇ ଉଦ୍ଦଣ୍ଠିତ ।
ଜାଣିଲ ଅର୍ଜୁନ ମୋତେ ନ ଛୁଇଁଲ ଭୟେ
ତେଣୁ ଛଦ୍ମେ ଡାକ ଦ୍ୟନ୍ତ ପ୍ରଭୁ ଦେବରାୟେ
ଡାକ ଡାକ ଜଗନ୍ନାଥ ନୟଶ ହୋଇଲେ
ଅର୍ଜୁନ ବୀରର ଦୃଢ଼ ବଚନ ଜାଣିଲେ ।
ବୋଲନ୍ତ ଅର୍ଜୁନ ଯେବେ ନ ଛୁଇଁବୁ ମୋତେ
ଧନୁତୂଳ ଗୋଟିକ ତୁ ଦଅ ମୋର ହସ୍ତେ ।
ଗୋବିନ୍ଦର ମାୟା ପାର୍ଥ ଜାଣି ନ ପାରିଲେ
ଧନୁତୂଳ ଗୋଟିକ ସେ ବଢ଼ାଇଣ ଦେଲେ ।
ଧନୁତୂଳ ଗୋଟି ହରି ଧରି ବାମକରେ
ଅର୍ଜୁନର ମୁଖକୁ ସେ ଚାହିଁଲେ ସଧୀରେ ।
ବୋଇଲେ ଅର୍ଜୁନ ତୁହି କଥାଏ କରିବୁ
ଦ୍ୱାରକା ଭୁବନକୁ ତୁ ଏହିକ୍ଷଣି ଯିବୁ ।
ମୋହର ଭାର୍ଯ୍ୟା କୁଟୁମ୍ବ ଆଣିବୁ ସମ୍ଭାଳ
ହସ୍ତିନାପୁରେ ଥୋଇବୁ ତାଙ୍କୁ ଯତ୍ନକରି ।
ତୋଠାରୁ ବିଶ୍ୱାସୀ ଆଉ ନାହିଁ ମୋର କେହି
ଯେତେବେଳେ କୁଟୁମ୍ବ ମୋ ଆଣିବୁ କଢ଼ାଇ ।
ତକ୍ଷଣେ ଦ୍ୱାରକାପୁର ଜଳେ ବୁଡ଼ିଯିବ
ତେଡ଼େ ବଡ଼ ନଗ୍ର ଜଳେ ନିମଗ୍ନ ହୋଇବ ।
ମୋହର ଏହି ବଚନ ଦୃଢ଼ କରି ଘେନ
ଏତେ ବୋଲି ଜୀବନକୁ ତେଜିଲେ ମୋହନ ।
ଶୁଣ ହୋ ପରୀକ୍ଷ ରଜା ଶୁକମୁନି କହି
ଯେତେବେଳେ ଦେହ ଛାଡ଼ିଗଲେ ଶ୍ରୀହରି
ନିଜ ସ୍ଥାନେ ଯାଇଣ ସେ ହୋଇଲେ ପ୍ରବେଶ
ନିଶ୍ଚିନ୍ତ ହୋଇ ଶୟନ କଲେ ପୀତବାସ ।
ଏକାହୋଇ ଶୋଇଲେ ସେ ସଙ୍ଗେ କେହିନାହିଁ
କମଳାଦେବୀ ଅଛନ୍ତି ମର୍ତ୍ତ୍ୟେ ଦେହବହି ।
କଳେବର ଛାଡ଼ି ହରି ଗଲେ ନିଜ ଧାମ
ପିଣ୍ଡଗୋଟି ପଡ଼ି ରହେ ମର୍ତ୍ତ୍ୟ ଭୁବନେଣ ।
ଛାମୁରେ ଠିଆ ହୋଇଣ ଅଛନ୍ତ ଅର୍ଜୁନ
ଆକୁଳରେ ପଣ୍ଡୁସୁତେ କରନ୍ତ ରୋଦନ ।
ହା ଜଗନ୍ନାଥ ଅନାଥ କରି କେଣେ ଗଲୁ
ଏ ଭବ ସମୁଦ୍ରେ ଆମ୍ଭ ଭେଳା ବୁଡ଼ାଇଲୁ ।
ଅନାଥର ନାଥ ତୁମ୍ଭେ କରୁଣା ସାଗର
ପଞ୍ଚ ପାଣ୍ଡବେ ତୁମ୍ଭର ସର୍ବଦା କିଙ୍କର ।
ସମସ୍ତେ କହନ୍ତ ତୁମ୍ଭେ ପାଣ୍ଡବଙ୍କ ହରି
ତୁମ୍ଭ ସକାଶୁ ପାଣ୍ଡବେ କାହାକୁ ନ ଡ଼ରି ।
ଯୁଧିଷ୍ଠିରଦେବ ରାଜସୂୟ ଯାଗ କଲେ
ତୋହର ଆଜ୍ଞାରେ ଲକ୍ଷେ ରଜା ପ୍ରବେଶିଲେ
ତୋ ହେତୁ ଆମ୍ଭ ମହିମା ଗୋଟି ବିକାଶିଲ
ଏତେ କହି ପାର୍ଥବୀର ବହୁତ ରୋଦିଲ ।
ତୋହରହିଁ ଆଜ୍ଞାରେ ଯେ ଆମ୍ଭଙ୍କ ହିଂସ୍ରେ
କ୍ଷତ୍ରିୟ ସମ ନୋହିଲେ ସମର କ୍ଷେତ୍ରରେ ।
ଏବେ ତ ଅନାଥ କରି ଗଲ ଜଗନ୍ନାଥେ
କେସନେ ରହିବେ ଏବେ କହ ପଣ୍ଡୁସୁତେ ।
ଦିବସରେ ଆମ୍ଭଙ୍କୁ ତ ଲାଗେ ଅନ୍ଧକାର
ରାଜ୍ୟ ଛାଡ଼ି ଆମ୍ଭେ ଯିବା ପଶିବୁଁ ବନର ।
ସହଦେବ ବୋଇଲେ ହୋ କାନ୍ଦନାହିଁ କେହି
ଶ୍ରୀକୃଷ୍ଣ ପିଣ୍ଡଗୋଟିକ ଦଗ୍ଧ କରି ଦେଇ ।
ସହଦେବଙ୍କ ବଚନେ ଯୁଧିଷ୍ଠି ବୋଲନ୍ତ
ଚିନ୍ତାକଲେ ଶବ୍ଦ ଛିଦ୍ର ପାଇବେ ଏଥାନ୍ତ ।
ଏ କଥା ଭାବ ପାଣ୍ଡବେ ଶୋକ ନିବାରିଲେ
ଦାହ କରିବା ନିମନ୍ତେ ମନ ବଳାଇଲେ ।

ଚନ୍ଦନକାଠରେ ଖଟ ନିର୍ମାଣ କରାଇ
କୃଷ୍ଣଙ୍କର ମୃତପିଣ୍ଡ ଶୁଆଇଲେ ତହିଁ ।
ସୁରେଶ୍ୱର ଅରଣ୍ୟକୁ ଚାରି କୋଶ ଦୂର
ପିଣ୍ଡ ଘେନି ଚଳିଗଲେ ପଣ୍ଡୁଙ୍କ କୁମର ।
ପର୍ବତକୁ କୋଣେ ଛଡ଼ା ଅଟେ ମହୋଦଧି
ତହିଁରେ ପିଣ୍ଡ ଦହିଲେ ସ୍ୱର୍ଗପଥ ଭେଦି ।
ନୀଳଗିରିର ମଧ୍ୟରେ କଳ୍ପବଟ ଅଛି
ଏଣେ ମହୋଦଧି ତୀର୍ଥ ତାହାକୁ ଘେରିଛି ।
ସେ ସ୍ଥାନକୁ ଯାଇ କରି ମରେ ଯେଉଁ ଜନ
ଅମର ବୈକୁଣ୍ଠେ ଯାଇ ବସଇ ତକ୍ଷଣ ।
ପାରିଜାତ ପୁଷ୍ପ ସେହି ମଥାରେ ବାନ୍ଧଇ
ସର୍ବଦା କାଳେ ଅମୃତ ଭୋଗ ସେ କରଇ ।
ଦେବତାଙ୍କର ସଙ୍ଗରେ ନିତ୍ୟ ବସିଥାନ୍ତି
ନକ୍ଷତ୍ର ମଧ୍ୟରେ ଇନ୍ଦ୍ର ସଂସାର ଦେଖନ୍ତି ।
ସେ ପ୍ରାଣୀକି ଯମଦେବ କେବେ ନ ଦଣ୍ଡଇ
ବଟସାଗର ମଧ୍ୟରେ ଯେ ଜନ ମରଇ ।
ସ୍ୱର୍ଗକୁ ଗିବାକୁ ସେହି ସ୍ଥାନେ ଅଛି ଦ୍ୱାର
ଚେଣ୍ଟୁକରି .ନାମଗୋଟି ଅଟେ ସ୍ୱର୍ଗଦ୍ୱାର ।
ଏସନକ ଭେଦ ତହିଁ ପାଣ୍ଡବେ ଜାଣିଲେ
ପ୍ରଚଣ୍ଡ ଅନଳ ନେଇ ପିଣ୍ଡ ଦାହ କଲେ ।
ଅନଳ ଯହୁଁ ଲାଗିଲା ପ୍ରଭୁଙ୍କ ଶରୀରେ
ଲୋମେକ ନ ଟଳିବାର ପାଣ୍ଡବେ ଦେଖିଲେ
ଅନଳେ ସ୍ୱର୍ଣ୍ଣ ଦହିଲା ପରାୟେକ ହୋଇ
ଉଜ୍ଜ୍ୱଳ ହୋଇ ଉଠଇ ପ୍ରଭୁଙ୍କର ଦେହି ।
ସାତ ଦିବସ ସେମାନେ ଶରୀର ଦହିଲେ
ଲୋମେକ ନପୋଡ଼ିବାର ସେମାନେ ଦେଖିଲେ
ପୁଣିହିଁ ଚନ୍ଦନ କାଷ୍ଠ ଘୃତ ପୁଟେ ଆଣି
ବର୍ଷା ହେଲା ପ୍ରାୟେ ଘୃତ ନଉଡ଼ନ୍ତି ପୁଣି ।
ଏମନ୍ତ ପ୍ରକାରେ ପାଞ୍ଚ ରାତ ଗଲା ବହି
ପ୍ରଭୁଙ୍କର ନିଜ କାୟା ଦଗଧ ନୁହଇ ।
ନିରସ୍ତ ହୋଇଣ ତହୁଁ ପାଣ୍ଡବେ ରହିଲେ
ଦଇବ ମାୟା ତହିଁରେ ମୋହିତ ହୋଇଲେ
ମାୟା ଶରୀର ତାଙ୍କର ଦହିଯ୍ୟ ନୋହିଲା
ମାୟା ଶରୀରର ଲୋମ ଗୋଟେ ନ ପୋଡ଼ିଲା
ମହାଶୂନ୍ୟ ପୁରୁଷଟି ଯାର ଅନ୍ତ ନାହିଁ
ସଂସାର ନିମନ୍ତେ ପାଦ ପାଣି ଚକ୍ଷୁ ବହି ।
ନାସିକା ଶ୍ରବଣ ଚକ୍ଷୁ ଅଧର ସହିତେ
ଏହା ବହିଥିଲେ ଦୈତ୍ୟ ନିବାରଣ ଅର୍ଥେ ।
ଯେତେବେଳେ ପୃଥ୍ୱୀଭାର ହୋଇଲା ଉଶ୍ୱାସ
ତେତେବେଳେ ନାରାୟଣ କଲେ ସ୍ୱର୍ଗବାସ
ଅଣାକାର ପୁରୁଷ ଯେ ବର୍ଣ୍ଣ ଗୃହ କଲେ
ଅଲକ୍ଷଣ ରୂପ ସେହି ଆପେ ପ୍ରକାଶିଲେ ।
ପାଣି ପବନ କାହିଁରେ ନୁହନ୍ତି ସେ କ୍ଷୟ
ବାଇ ପ୍ରାପ୍ତ ହୋଇଛନ୍ତି ପଣ୍ଡୁଙ୍କ ତନୟ ।
ନିରାକାର ପୁରୁଷ ଯା ଆକାରହିଁ ନାହିଁ
ଅଛିଦ୍ର ପୁରୁଷ ସେହି ଛିଦ୍ର କ ଅଛଇ ।
ଶୁଣ ପରୀକ୍ଷ ରାଜନ ଗୋବିନ୍ଦର ମାୟା
କେବେ ଦହିଯ୍ୟ ନୋହିଲା ତାହାଙ୍କର କାୟା
ମହା ବିସ୍ମୟ ପାଇଲେ ପଣ୍ଡୁଙ୍କ କୁମରେ
ନିବୁଦ୍ଧି କରିବା ବୋଲି ଭାଳନ୍ତି ମନରେ ।
ଆକାଶରୁ ଏରୂପରେ ଶୁଭିଲା ଶବଦ
ବାଇ ହୋଇଲ କି ତୁମ୍ଭେ ଯୁଧିଷ୍ଠିର ଦେବ
ଏ ବାଇ ବୁଦ୍ଧି ତୁମ୍ଭଙ୍କୁ କିଏ ଅବା ଦେଲା
ଦାହ କରିବାକୁ ଜଗତ୍‌ବନ୍ଦ୍ୟଙ୍କୁ କହିଲା ।
ଅଗ୍ନି ପବନ ପାଣିରେ ବିନାଶ ନୁହଇ
ତୁମ୍ଭେ ଦହନ କରୁଛ ବାଇପ୍ରାପ୍ତ ହୋଇ ।
ଶୀତଳ କରି ହୋ ଅଙ୍ଗ ତୀର୍ଥର ଜଳରେ
ସମୁଦ୍ରରେ ମେଲି ଦେଇ ଯାଅ ନିଜପୁରେ ।
ସାତ ରାତ ସାତଦିନ ଦାହ ତୁମ୍ଭେ କଲ
ଲୋମେକ ଜଳାଇ ଅଙ୍ଗମଧ୍ୟୁଁ ନ ପାରିଲ ।
ଆକାଶବାଣୀ ଶୁଣିଲେ ଯହୁଁ ପଞ୍ଚବୀରେ
ସମୁଦ୍ରରେ ମେଲି ଦେଇ ଗଲେ ନିଜ ପୁରେ
ପୁଣିହିଁ ଦଇବ ବାଣୀ ହୋଇଲା ତତ୍‌କ୍ଷଣେ
ଏହି ପିଣ୍ଡ ଲାଗିବ ଯେ ଏ ବାଙ୍କି ମୁହାଣେ ।
କଳିଯୁଗ ପ୍ରବେଶନ୍ତେ ଏ ନୀଳଗିରିରେ
ବଉଦ୍ଧ ରୂପ ଧାରଣ କରିବେ. ତହିଁରେ ।
ଥୋକାଏ ଦିନ ତାହାଙ୍କୁ ଶବର ପୂଜିବ
ପଛେ ଇନ୍ଦ୍ରଦ୍ୟୁମ୍ନ ରାଜା ପ୍ରାସାଦ କରିବ ।
ଏହି ରୂପେ ହୋଇବେ ଯେ ଚତୁର୍ଦ୍ଧା ମୂରତି
ଦାରୁବ୍ରହ୍ମ ସ୍ୱରୂପରେ ହେବେ ଜଗତପତି ।
ଏତେ କହି ଦେବତାଏ ଅନ୍ତର୍ଦ୍ଧାନ ହେଲେ
ପିଣ୍ଡ ପକାଇ ପାଣ୍ଡବେ ତୀର୍ଥେ ସ୍ନାନ କଲେ ।

ହସ୍ତିନା ନଗରକୁ ସେ ଗଲେ ସ୍ତ୍ରୀଙ୍କ ଘେଇ
ଆଜ୍ଞା ପ୍ରମାଣେ ଅର୍ଜୁନ ଦ୍ୱାରକା ଚଳଇ ।
ପରୀକ୍ଷିତ ପଚାରନ୍ତି ଶୁକମୁନି ପାଶ
କଥାଏ ମୁହିଁ ପୁଛଇ ଶୁଣ ବ୍ରହ୍ମଶିଷ୍ୟ ।
ଗୋଟିଏ କଥା ମୋହର ପଡ଼ିଲା ମନର
ତୁମ୍ଭେ ସର୍ବଜ୍ଞ ପୁରୁଷ ଅବଧାନ କର ।
ଯେତେବେଳେ ପାଣ୍ଡବଙ୍କୁ ଶବର ଆଣିଲା
ଜଗନ୍ନାଥଙ୍କ ଛାମୁରେ ଭେଟି ଆଣିକଲା ।
ଶବର କ କାର୍ତ୍ତି କଲା ସେଠାବରେ ରହି
ସେହି କଥା ଗୋଟିଏ ହେ ପଚାରୁଛି ମୁହିଁ ।
ପରୀକ୍ଷିତ ପଚାରନ୍ତେ ଶୁକ ହାସ୍ୟ କଲେ
କରକୁ ବହିଣ ମୁନି ବଚନ ଭାଷିଲେ ।
ପାସୋରି ଥିବାରୁ ଆମ୍ଭେ ନ କହିଲୁ ତାହା
ତୋ'ର ଯେବେ ଶ୍ରଦ୍ଧା ହେଲା ଶୁଣ ନରନାହା
ଯେତେବେଳେ ପାର୍ଥ ଧନୁ ବଢାଇଣ ଦେଲା
ଅର୍ଜୁନ ଦେହରୁ ବିଷ୍ଣୁ କଳା ଛାଡ଼ିଗଲା ।
ଗୋବିନ୍ଦ ବୋଇଲେ ଏବେ ଦେହ ଛାଡ଼ିବିଁ
ଦେଖିଲେ ଶବର କରଯୋଡ଼ିଣ ଅଛଇ ।
ଶବରର ମନକଥା ଜାଣି ଦାମୋଦର
ହସ୍ତ ଠାରିଣ କହନ୍ତି ଭୟ ତୁ ନ କର ।
ପୂର୍ବଜନ୍ମେ ଥିଲୁ ତୁହି ଆମ୍ଭର ଭକତ
ପିତୃରିଣ ଶୁଝିବାକୁ ଜନ୍ମି ଅଛୁ ଏଥ ।
ଏହି ଦେହ ଘେନି ତୁହି ଯାଅ ସ୍ୱର୍ଗପୁର
ନକ୍ଷତ୍ର ହୋଇବୁ ଯାଇ ଆକାଶ ପଥର ।
ଆମ୍ଭେ ତିନି ମୂରତି ଯେ ହେବୁଁ ଆକାଶରେ
ନକ୍ଷତ୍ର ହୋଇ ଉଦୟ ହୋଇବୁ ଶୂନ୍ୟରେ ।
ଆମ୍ଭର ପାଖରେ ଥାଇ ଉଦେ ହେଉଥିବୁ
ଯୁଗ ଯୁଗାନ୍ତର କାଳେ କ୍ଷୟ ତୁ ନୋହିବୁ ।
ଏତେକ କହିଣ ଦେବ ଛାଡ଼ିଲେ ଶରୀର
ସେହି ଦେହରେ ଶବର ଗଲା ଶୂନ୍ୟପୁର ।
ନକ୍ଷତ୍ର ହୋଇଣ ସେହି ଦିଶିଲା ଶୂନ୍ୟରେ
ଏ ପର୍ଯ୍ୟନ୍ତ ଅଛଇ ସେ ପ୍ରଭୁଙ୍କ ସଙ୍ଗରେ ।
ଶୁଣିଲଟିକି ହେ ପରୀକ୍ଷିତ ମହୀପାଳ
ସେହି ବେଳରେ ଶବର ଗଲା ସ୍ୱର୍ଗ ଆଳ ।
ଜୟ ଜୟ ଜଗନ୍ନାଥ ଜଗତ ଜୀବନ
ଜଗତର ହିତେ ତୋର ଶଙ୍ଖ ଚକ୍ର ଚିହ୍ନ ।
ସଂସାର ଜନମାନଙ୍କୁ ନିସ୍ତାରିବା ପାଇଁ
ବଉଦ୍ଧ ରୂପ ତୁ ବହୁ କମଳାର ସାଇଁ ।
ତେଣୁ ନୀଳଗିରିରେ ତୁ ବିହାର କରିବୁ
ନାସିକା ଶ୍ରବଣ ପାଦ ପାଣି ନ ବହିବୁ ।
ନୀଳଗିରି ଶିଖରେ ତୁ ବିମ୍ବାଧର ବହି
ଅମୃତ ପାନ କରିବୁ ପ୍ରଭୁ ସର୍ବଗ୍ରାହୀ ।
ଅତି ଜ୍ଞାନହୀନ ମୁହିଁ ଅଚ୍ୟୁତ ଅଟଇ
ଶ୍ରୀରଙ୍ଗାଚରଣ ବନ୍ଧୁ ମୋର ଆଶ୍ରା ନାହିଁ ।

---

## ସମୁଦ୍ର ଜଳରେ ଦ୍ୱାରକା ନିମଗ୍ନ ଓ ପ୍ରଭାସ ତୀର୍ଥରେ ଅଷ୍ଟପାଟବଂଶୀଙ୍କର ଦେହତ୍ୟାଗ

ଶୁକମୁନି ଚରଣରେ କରିଣ ବିନତି
କରଯୋଡ଼ି ପଚାରଇ ପରୀକ୍ଷିତ ନୃପତି ।
ଏଥୁଅନନ୍ତରେ କିସ ହୋଇଲା ଗୋସାଇଁ
ସାବଧାନେ କହ ମୋତେ ସୁପ୍ରସନ୍ନ ହୋଇ ।
ଶୁକ କହନ୍ତି ରାଜନ ଶୁଣ ସାବଧାନେ
ଅର୍ଜୁନ ବୀର ଚଳଇ ଦ୍ୱାରକା ଭୁବନେ ।
ବୀରପାଣ୍ଡବେ ରହିଲେ କୁଞ୍ଜୀଗଳ ଦେଶେ
ଦୁଃଖରେ ଦିନ ବଞ୍ଚନ୍ତି ମନର ବିରସେ ।
ମାତାଙ୍କ ଛାମୁରେ ଯାଇ ବାରତା କହିଲେ
କୃଷ୍ଣଅବସାନ ଶୁଣି କୁନ୍ତୀ ଶୋକ କଲେ ।
ଶ୍ରୀକୃଷ୍ଣର ନାମ ଗୁଣି ବହୁତ ରୋଦନ୍ତି
ଏବେ ଅନାଥ ହୋଇଲା ଯୁଧିଷ୍ଠି ନୃପତି ।
ମନ ଦୁଃଖ କରି ପାର୍ଥ ଭରିତେ ଚଳିଲା
ଅତି ଦୁଃଖେ ଦ୍ୱାରକାରେ ପ୍ରବେଶ ହୋଇଲା
ନନ୍ଦ ବସୁଦେବଙ୍କୁ ସେ ଡାକି ସନ୍ନିଧିର
ଦେବକୀ ଯଶୋମତୀଙ୍କ ବସାଇ ପାଖରେ ।
ଓଳଗି ହୋଇଣ ସେହୁ କହଇ ବଚନ
ସାତଦିନ ହେଲା କୃଷ୍ଣ ଛାଡ଼ିଲେ ଜୀବନ ।
ଲକ୍ଷେ ଷାଠିଏ ସହସ୍ର ଅଂଶୀ ଯେ ନନ୍ଦନ
ଆପେ ହଣାହଣି ହୋଇ ତେଜିଲେ ଜୀବନ ।
ସର୍ପ ସ୍ୱରୂପ ଧରିଣ ବଳରାମ ଗଲେ
ତାହାଙ୍କର ପୁତ୍ରମାନେ ଦେହତ୍ୟାଗ କଲେ ।
ବଂଶ ବିନାଶ କରିଣ ଦେବ ଚକ୍ରଧର
ଶବରବାଣରେ ହତ ହେଲେ ଦାମୋଦର ।

ଶୁଣି ନନ୍ଦ ଯଶୋମତୀ ହୋଇଲେ ବିକଳ
ଦେବକୀ ବସୁଦେବ ଯେ ଲୋଟନ୍ତି ଭୂତଳ ।
ହା କୃଷ୍ଣ ହା କୃଷ୍ଣ ବୋଲି କରନ୍ତି ରୋଦନ
ଅନାଥ କରିଣ କେଣେ ଗଲୁ ଜନାର୍ଦ୍ଦନ ।
ପୁତ୍ର ନାତି ସଙ୍ଗେ ଘେନି ଆପେ ଚଳିଗଲୁ
ଅକୂଳ ସମୁଦ୍ରେ ଆମ୍ଭ ଭେଳା ବୁଡ଼ାଇଲୁ ।
ଏକକୁ ଆରେକ ଧରି କରନ୍ତି କାରୁଣ୍ୟ
ବାରତା ପ୍ରାପ୍ତ ହୋଇଲେ ଉଗ୍ରସେନ ରାଣ ।
ଇନ୍ଦୁମତୀଙ୍କ ଧୃତିତ କରନ୍ତି ରୋଦନ
ଏରୂପେ ଉତ୍ସନ୍ନ ହେଲା ଦ୍ୱାରକା ଭୁବନ ।
ସମସ୍ତେ ଶୁଣି ବହୁତ ବିକଳ ହୋଇଲେ
ଶ୍ରୀକୃଷ୍ଣର ନାମ ଧରି ଅନେକ କାନ୍ଦିଲେ ।
ଶ୍ରୀକୃଷ୍ଣର ମାତାମାନେ ଯାଇ ସ୍ନାନ କଲେ
ଶୁଣିକରି ବନ୍ଧୁମାନେ ଶଙ୍କୁଳ ଅଇଲେ ।
ଶୁଣ ଆହେ ପରୀକ୍ଷିତ ଏଥୁ ଅନନ୍ତରେ
ଅର୍ଜ୍ଜୁନ ପ୍ରବେଶ ହେଲେ କୃଷ୍ଣର ମନ୍ଦିରେ ।
ଷୋଳ ସହସ୍ର ନାୟିକା ଅଷ୍ଟ ପାଟବଂଶୀ
ଦାସୀ ପରିବାରୀ ଘେନି ଏକସ୍ଥାନେ ବସି ।
କୃଷ୍ଣ ଗୁଣ ଗୁଣି ସର୍ବେ ରୋଦନ କରନ୍ତି
ପୁତ୍ରଙ୍କର ଗୁଣ ଗୁଣି ରୁକ୍ମିଣୀ ରୋଦନ୍ତି ।
ଏମନ୍ତ ସମୟେ ଯାଇଁ ଅର୍ଜ୍ଜୁନ ମିଳିଲେ
ରୁକ୍ମିଣୀ ସତ୍ୟଭାମାଙ୍କୁ ନମସ୍କାର କଲେ ।
ମସ୍ତକେ ହସ୍ତ ଦେଇଣ ବୋଲଇ ବଚନ
ସାତ ଦିନ ହେଲା କୃଷ୍ଣ ତେଜିଲେ ଜୀବନ ।
ପୁତ୍ର ନାତି ଯେତେ ଥିଲେ ସର୍ବେ ନାଶଗଲେ
ଆପେ ପ୍ରଭୁ ନାରାୟଣ ବଂଶ ନାଶ କଲେ ।
କୃଷ୍ଣଙ୍କର ନାରୀମାନେ ସର୍ବେ ଶୋକ କରି
ଉଚ୍ଚସ୍ୱରରେ କାନ୍ଦନ୍ତି ପାର୍ଥ ପାଦ ଧରି ।
ପ୍ରବୋଧ ଦେଇ ଅର୍ଜ୍ଜୁନ ଶୋକ ଶାନ୍ତ କଲେ
ବୋଇଲେ କୃଷ୍ଣର ଆଜ୍ଞା ଶୁଣ ତୁମ୍ଭେ ଭଲେ
ଚାଲ ଚାଲ ସର୍ବେ ଯିବା ହସ୍ତିନା ନଗର
ଆଜ୍ଞା ମୋତେ ଦେଇଛନ୍ତି ପ୍ରଭୁ ଦାମୋଦର
ରୁକ୍ମିଣୀଦେବୀ ବୋଲନ୍ତି ପାର୍ଥ ମୁଖ ଚାହିଁ
ଏତେଦିନେ ପୁତ୍ରକଷ୍ଟ ଦେଲେ ଭାବଗ୍ରାହୀ ।
ଏବେ କସ କରିବୁଁ ହୋ ବୋଲ ମହାବୀର
ହୃଦୟରେ ଆମ୍ଭଙ୍କୁ ତ ଦିଶେ ଅନ୍ଧକାର ।

ଅର୍ଜ୍ଜୁନ ବୋଲନ୍ତି ତୁମ୍ଭେ ଶୁଣ ସ୍ଥିର ହୋଇ
ଗୁପ୍ତକଥା କହିଛନ୍ତି ପ୍ରଭୁ ଭାବଗ୍ରାହୀ ।
ସପତ ଦିନେ ଦ୍ୱାରକା ଜଳେ ଯିବ ନାଶ
ଭବିଷ୍ୟତ କଥା କହିଗଲେ ପୀତବାସ ।
ଦୈବର ଘଟନା ଏହା କେ କରିବ ଆନ
ହସ୍ତିନା ପୁରକୁ ଏବେ ଚାଲ ଗୋ ବହନ ।
ସମୁଦ୍ର ଆସିବ ଏହିକ୍ଷଣି କଂସ୍ଥ ଘୋଟି
ଏକ୍ଷଣି ଜାଣ ବୁଡ଼ିବ ଦ୍ୱାରକା ନଗ୍ରଟି ।
ଏହା ଶୁଣିଣ ଚକିତ ହୋଇଲେ ରୁକ୍ମିଣୀ
ଧନ୍ୟ ଧରି ଉଭାଛନ୍ତି ବୀର ଚୂଡ଼ାମଣି ।
ସମସ୍ତଙ୍କୁ ଘେନି ବୀର ବାହାର ହୋଇଲା
ଗୋବିନ୍ଦ ଗୋବିନ୍ଦ ସ୍ମରି ପଥ କଢ଼ାଇଲା ।
ପଶ୍ଚିମକୁ ମୁଖ କରି ଯାନ୍ତି ନାରୀମାନେ
ଧନୁ ଧରି ଆଗେ ବାଟ କଢ଼ାନ୍ତି ଅର୍ଜ୍ଜୁନେ ।
ଦ୍ୱାରକା ପୁରରୁ ବେଗେ ଗଲେ ପଥ ବାହି
ପ୍ରଭାସ ନାମକ ତୀର୍ଥେ ପ୍ରବେଶିଲେ ଯାଇ ।
ଅର୍ଜ୍ଜୁନ ମୁଖକୁ ଚାହିଁ ରୁକ୍ମିଣୀ ବୋଲନ୍ତି
କ୍ଷଣେ ରହ ଅର୍ଜ୍ଜୁନ ହୋ ସ୍ନାନ କରୁ ଏଥି ।
ଅର୍ଜ୍ଜୁନ ବୋଇଲେ ଏଥେ ତୁମ୍ଭେ ସ୍ନାନ କର
ବିଧବା ଅବସ୍ଥାରୁ ଯେ ସର୍ବେ ମୁକ୍ତ ପାର ।
ପୁଣି ପାର୍ଥ ବୋଲଇ ମୁଁ କରିବି ସ୍ନାହାନ
ତେବେ ମୋର ପାପରାଶି ହୋଇବ ଦହନ
ଏତେକ ବୋଲି ଅର୍ଜ୍ଜୁନ ଜଳରେ ବୁଡ଼ିଲା
ଗାଣ୍ଡୀବ ଧନୁ ଗୋଟିକ କୂଳରେ ଥୋଇଲା ।
ଗୋବିନ୍ଦ ଗୋବିନ୍ଦ ସ୍ମରି ଜଳରେ ବୁଡ଼ଇ
ସ୍ନାନସାରି ବେଗେ ଆସି କୂଳରେ ମିଳଇ ।
ଅଷ୍ଟ ପାଟବଂଶୀମାନେ ଏଥୁ ଅନନ୍ତରେ
ନାରାୟଣଙ୍କୁ ସୁମରି ପଶିଲେ ଜଳରେ ।
ତାଙ୍କ ସଙ୍ଗତେ ପଶିଲେ ସକଳ ନାୟିକା
ପୋଇଲି ପରିବାରୀ ଏ ଯେତେ ଥିଲେ ସଖା ।
କୃଷ୍ଣ କୃଷ୍ଣ ବୋଲି ପଶିଲେକ ଜଳେ ଯାଇ
ହରି ହରି ଶବଦରେ କର୍ମ ଉଚ୍ଚାରଇ ।
କୃଷ୍ଣ କୃଷ୍ଣ ଶବଦ ଯେ ସ୍ୱର୍ଗକୁ ଶୁଭିଲା
ଦେବଗଣଙ୍କ ମନରେ ଉଲ୍ଲାସ ଜନ୍ମିଲା ।
ଶ୍ରୀକୃଷ୍ଣଙ୍କ ନାରୀମାନେ କରନ୍ତି ସ୍ନାହାନ
ଅଧାସ୍ୱର୍ଗେ ଥାଇ ଦେଖୁଛନ୍ତି ଦେବଗଣ ।

ଦଇବ ରଚନା କଥା କେ କରିବ ଆନ
ଏକାବେଳକେ ସମସ୍ତେ ପଶିଲେ ଜଳେଣ ।
ତେଣେ ଶ୍ରୀହରି ଗୋଟିଏ ମାୟା ରଚିଲେ
ଏକାବେଳକେ ବୁଡ଼ିଲେ କେହି ନ ଦେଖିଲେ
ଭୀଷଣ ଆକାର ଧରି ଉଠିଲ ଲହରୀ
ବୃଷ୍ଣି ଅନ୍ଧକ ଅର୍ଜୁନ ସଙ୍ଗେ ଗଲେ ବୁଡ଼ି ।
ଯହିଁରେକ ପରଯନ୍ତେ ଅର୍ଜୁନ ଖୋଜିଲେ
କନ୍ୟାଙ୍କ ମଧ୍ୟରୁ ଜଣେ କେହି ନ ଉଠିଲେ ।
ଦେଖି ଅନେକ ବିକଳ ହେଲେ ମହାବୀର
ଏତେକ ଭିଆଣ ଚିନ୍ତା କଲେ ଚକ୍ରଧର ।
ଦେଖୁଁ ଦେଖୁଁ କନ୍ୟାମାନେ ଜଳରେ ଭାସିଲେ
ଗୋବିନ୍ଦଙ୍କୁ ସୁମରଣ ପାର୍ଥ ଚଳିଗଲେ ।
କୂଳରେ ଯେଉଁ ଗାଣ୍ଡୀବ ଧନୁ ଥିଲେ ଥୋଇ
ଯାଇଣ ସେହି ଧନୁକୁ ଅର୍ଜୁନ ଟେକିଲେ ।
ଉଠାଇ ନ ପାରି ପାର୍ଥ ବିମୁଖ ହୋଇଲ
କୃଷ୍ଣ ତେଜ ଯେଣୁକରି ଶରୀରରୁ ଗଲ ।
ତେଣୁକରି ବୀରବର ହୋଇଲ ଦୁର୍ବଳ
ହୃଦଗତେ ସୁମରଇ ଦେବକୀର ବାଳ ।
ଗୋବିନ୍ଦ ସୁମରି ଧନୁ ଦୁଇହସ୍ତେ ନେଲ
ମଥାର ଉପରେ ନେଇ ତାହାକୁ ଥୋଇଲ ।
ମନେ ବିଚାରେ ଯେ ଧନୁ ଧରଇ ମୋ ହାତ
ସେହି ଗାଣ୍ଡୀବ ଧନୁକୁ ଧଇଲ ମୋ ମାଥ ।
କୃଷ୍ଣଙ୍କ ଗୁଣ ସୁମରି ପଥେ ଚଳିଗଲ
ହସ୍ତିନା ନଗରେ ଯାଇ ପ୍ରବେଶ ହୋଇଲ ।
ଯୁଧିଷ୍ଠିରଙ୍କୁ ଦେଖିଣ ଓଳଗି ମେଲଇ
ବେନି ହସ୍ତେ ଧନୁଶର ମଥାରୁ ଓହ୍ଲାଇ ।
ଯୁଧିଷ୍ଠିରଙ୍କ ଛାମୁରେ ସମସ୍ତ କହିଲ
କୃଷ୍ଣ ନାରୀମାନେ ଜଳେ ଭାସିଲେ ବୋଇଲ ।
ଶୁଣି ଯୁଧିଷ୍ଠିର ରାଜା ବହୁ ଶୋକ କଲେ
ଅନାଥ ହୋଇଲୁଁ ବୋଲି ବଚନ ଭାଷିଲେ ।
କୃଷ୍ଣ ନାମ ସୁମରଣ ରହିଲେ ସ୍ୱଦେଶ
ଗୋବିନ୍ଦଙ୍କ ପାଦପଦ୍ମେ ଲଗାଇ ବିଶ୍ୱାସ ।
ଶୁଣ ଆହେ ପରୀକ୍ଷିତ ଭଣି ଶୁକ ଯତି
ଏଥୁ ଅନନ୍ତରେ ପୁଣ ହେଲ ଯେଉଁ ରୀତି ।
ଯେତେବେଳେ କୃଷ୍ଣ ନାରୀମାନେ ଭାସିଗଲେ
କ୍ଷୀର ସମୁଦ୍ର ତଟରେ ନିରଞ୍ଜନ ଥିଲେ ।
ବରୁଣ ଦେବତାଙ୍କୁ ସେ ସନ୍ନିଧିକୁ ନେଇ
ବୋଇଲେ କଥା ଗୋଟିଏ କର ଜଳସାଇଁ ।
କୁଶସ୍ଥଳୀ ଦ୍ୱାରକା ତୁ ଜଳେ ବୁଡ଼ାଇବୁ
ନିହସ୍ୟ ଦ୍ୱାରକାପୁର ପାଣିରେ ପାଡ଼ିବୁ ।
ଆଜ୍ଞା ପାଇଣ ବରୁଣ ବେଗ ହୋଇଗଲେ
ସମସ୍ତ ଦ୍ୱାରକାପୁର ଜଳେ ବୁଡ଼ାଇଲେ ।
ଜଳମଗ୍ନ ହେଲ ଯହୁଁ ଦ୍ୱାରକା ନଗର
ପ୍ରଜାଜନମାନେ ତହୁଁ ଭାସିଲେ ଜଳର ।
ଉଗ୍ରସେନ ବସୁଦେବ ସମସ୍ତେ ଭାସିଲେ
ନନ୍ଦ ଯଶୋଦାଙ୍କ ଷୋଳସହସ୍ର ଗୋପୀମାନେ ।
କହି ଅବା କେ ପାରିବ କେଣେ ଗଲେ ଭାସି
ଦଇବ ବଳେ ଲଗିଲ ଆସି କାଳଫାଶୀ ।
କୁଶସ୍ଥଳୀ ଦ୍ୱାରକା ଯେ ଜଳେ ଭାସିଗଲ
ରଙ୍ଗାଅବତାର ଏହିଠାରୁ ଶେଷ ହେଲ ।
ଦ୍ୱାପର କଥା ଶୁଣିଲ କ ହୋ ନୃପସାଇଁ
ରଙ୍ଗାଅବତାର କଥା ବିଚିତ୍ର ଅଟଇ ।
ଶୁଣିକରି ନୃପବର କୃତ୍ୟକୃତ୍ୟ ହେଲ
ମୁନିଙ୍କ ଚରଣ ବେନି ହସ୍ତରେ ଧଇଲ ।
ତୁମ୍ଭର ପ୍ରସାଦେ ମୁହିଁ କୃତାର୍ଥ ହୋଇଲି
ମଧୁର ମଙ୍ଗଳ କଥା ଶ୍ରବଣେ ଶୁଣିଲି ।
ଦେବକୀ ନନ୍ଦନ ପାଦପଦ୍ମରେ ନମଇଁ
ରଙ୍ଗାବତାର ହୋଇଲୁ ପ୍ରଭୁ ଭବଗ୍ରାହୀ ।
ଦୈତ୍ୟ ବିନାଶ କରନ୍ତେ ନାମ ଦଇତ୍ୟାରି
ଦଇତ୍ୟାରି ବାନା ଗୋଟି ବହୁ ମଧୁହାରୀ ।
ପୃଥିବୀର ମହାଭାର ଉଶ୍ୱାସ କରଣ
ଅନ୍ତେ ବୈକୁଣ୍ଠପୁରକୁ ଗଲ ହୋ ଆପଣ ।
ଯାଇଣ କ୍ଷୀର ସମୁଦ୍ରେ ନିଶ୍ଚିନ୍ତେ ଶୋଇଲ
ଲକ୍ଷ୍ମୀ ସରସ୍ୱତୀଙ୍କି ଯେ ପାଦେ ଖଟାଇଲ ।
କଳିଯୁଗ ନୀଳଗିରି ଶିଖରେ ବସିବ
ଭବ ଭୟ ନାଶି ମ୍ଲେଚ୍ଛ ଜନଙ୍କୁ ତାରିବ ।
ଲକ୍ଷ୍ମୀ ନାରାୟଣ ପାଦପଦ୍ମେ ମୋର ଆଶ
ଅଚ୍ୟୁତଦାସଙ୍କୁ ରଖ କମଳା ବିଳାସ ।

——

## ନୀଳାଚଳରେ ଶବରର ବିଷ୍ଣୁ-ପ୍ରତିମା ପୂଜା ଓ ଦାରୁବ୍ରହ୍ମ ରୂପେ ଜଗନ୍ନାଥଙ୍କର ଅବସ୍ଥିତି

ଏଥୁଅନନ୍ତରେ ଶୁଣ ପରୀକ୍ଷ ନୃପତି
ଶୁକ ମହାମୁନିଙ୍କର ଚରଣେ ନମନ୍ତି ।
ସାବଧାନେ ମୋ ବଚନ ଶୁଣ ମୁନିବର
କଥାଏ ପୁଚ୍ଛିବି ମୁହିଁ ଅବଧାନ କର ।
ଦ୍ୱାପର ଯୁଗ ଯେ ଶେଷ ହୋଇଲା ଗୋସାଇଁ
କଳିର ପୂର୍ବବୃତ୍ତାନ୍ତ କହ ଭବତ୍ରାହି ।
ଦୟା କରି କହ ମୋତେ ହେ ମୁନିପୁଙ୍ଗବ
ତେବେ ମହାପାପ ମୋର ଛେଦନ ହୋଇବ
ରାଜାର ବଚନେ ଶୁକ ଅଳପ ହସିଲେ
ନରବରଙ୍କୁ ବୁଝିଣ ବଚନ ଭାଷିଲେ ।
କୃଷ୍ଣଙ୍କୁ ପାଣ୍ଡବମାନେ ସମୁଦ୍ରେ ମେଲିଲେ
ଭସି ଭସି ଦେବ ବାଙ୍କିମୁହାଣେ ଲଗିଲେ ।
ଦଇବ ଘଟନା କଥା କେ କରିବ ଆନ
ଆପେ ନାରାୟଣ ଯାହା କରିଛନ୍ତି ଭିଆଣ ।
ଶୁଣ ପରୀକ୍ଷ ରାଜନ ପୁଣ୍ୟମୟ ଧ୍ୱନି
ସେ ଜରାଶବର ପ୍ରଭୁଙ୍କର ଆଜ୍ଞା ଘେନି ।
ବଇକୁଣ୍ଠପୁରେ ଯାଇ ବସିଲେ ନିଶ୍ଚିନ୍ତେ
ଆପେ ତାଙ୍କୁ ଆଜ୍ଞା ଦେଇ ଗଲେ ଜଗନ୍ନାଥେ
ତାର ପୁତ୍ର ଅଟେ ବସୁ ନାମରେ ଶବର
ସୁରେଶ୍ୱର ବନମଧ୍ୟେ ଅଟେ ତାର ଘର ।
କନ୍ଦମୂଳ ଫଳମୂଳ ବନରୁ ଆଣଇ
ପତ୍ନୀ ସଙ୍ଗତରେ ତାହା ଭକ୍ଷଣ କରଇ ।
ପୂର୍ବଭାଗ୍ୟ କଥା ତାର ଅଛଇ ମନର
ଅନୁକ୍ଷଣେ ବିଷ୍ଣୁ କଥା ସ୍ମରେ ହୃଦର ।
ଚତୁଁ ବୃତ୍ତକୋଣ ନୀଳସୁନ୍ଦର ପର୍ବତ
ପ୍ରତିଦିନ ସେ ବନକୁ ଆସଇ କିରାତ ।
ବାଉଁଶ ଗୁଣ ଧାମଣ କାନ୍ଧରେ ଲଗାଇ
ମୃଗ ଶମ୍ବର ମାରିଣ ଆଶ୍ରମେ ଆସଇ ।
ଏହାପର ପ୍ରତିଦିନ ଶବର କରଇଁ
ପର୍ବତ ଶିଖରେ ବୁଲି ବୁରି ହଟେ ବୁହିଁ ।
ଅଳପ ବଟରତଳେ ଥାଇ ଠଣା ଗୋଟି
ଦୈବବଳରେ ତାହାକୁ ଦିଶେ ଦେବଗୋଟି ।

ମୃତ ଶବର କେମନ୍ତେ ସେ କଥା ଜାଣିବ
ବିଷ୍ଣୁ ସ୍ଥାନ ବୋଲିଣ ସେ ନ ଜାଣେ ଭାବ
ଗନ୍ଧ ଚନ୍ଦନ କର୍ପୂର ଆଚ୍ଛାଦିତ ହୋଇ
ବଟ ବୃକ୍ଷ ତଳେ ଠଣା ଗୋଟିଏ ଅଛଇ ।
ସେ ଗଛ ମୂଳକୁ ଗଲେ ତା ଦେହ ବାସଇ
ବିଷ୍ଣୁଙ୍କର ସ୍ଥାନ ସେହୁ ଜାଣି ନ ପାରଇ ।
ଏମନ୍ତ ପ୍ରକାରେ କେତେଦିନ ବହିଗଲା
ଏକ ଦିନରେ ଶବର ପୁଣି ଯାଇଥିଲା ।
ସେ ଦିନ ସେ ବଟତଳେ ବସିଲାକ ଯାଇ
ଆଗେ ଦେଖିଲା ଚନ୍ଦନ ବୃକ୍ଷେକ ଅଛଇ ।
କୁଣ୍ଡ ଗୋଟିଏ ଦେଖିଲା ଅଛଇ ତା ତଳେ
ସେ କୁଣ୍ଡଟି ପରିପୂର୍ଣ୍ଣ ହୋଇଅଛି ଜଳେ ।
ତା ଉପରେ ଏକ ବୃଦ୍ଧ କାକ ବସିଥିଲା
ନିଦ ଲାଗନ୍ତେ ସେ କାକ ତହିଁରେ ପଡ଼ିଲା ।
ଚତୁର୍ଭୁଜ ହୋଇଣ ସେ ବୈକୁଣ୍ଠକୁ ଯାଇ
କଳ୍ପବଟ ତଳେ ଥାଇ ଶବର ଦେଖଇ ।
କାକ ଚତୁର୍ଭୁଜ ହେଉଁ ତରସ୍ତ ହୋଇଲା
ଦେବତାର ସ୍ଥାନ ବୋଲି ମନେ ବିଚାରିଲା ।
ଦଇବ ବଳେ ତାହାକୁ ନିଦ୍ରା ଆକର୍ଷଇ
ସେଠାରେ ଶୋଇଲା ଦକ୍ଷିଣକୁ ଶିର ଦେଇ ।
ସ୍ୱପନରେ ତାକୁ ଦେଖା ଦେଇ ଚକ୍ରଧର
ବୋଇଲେ ଆମ୍ଭର ବାକ୍ୟ ଶୁଣ ହୋ ଶବର
ଏହିକ୍ଷଣି ତୁହି ବାଙ୍କିମୁହାଣକୁ ଯିବୁ
ଆମ୍ଭ ରୂପ ସମୁଦ୍ରର କୂଳରେ ଦେଖିବୁ ।
ପ୍ରତିମା ଗୋଟିକ ତୁହି ଘେନିଆସ ଯାଇ
କ୍ଷଣେ ନ ରହି ଏକ୍ଷଣି ଯାଅ ବେଗେ ଧାଇଁ ।
ରୂପ ଗୋଟି ଆଣି ବଟତଳରେ ଥୋଇବୁ
କନ୍ଦମୂଳ ଭୋଗ ଦେଇ ଆମ୍ଭଙ୍କୁ ପୂଜିବୁ ।
ଏ ନୀଳସୁନ୍ଦର ଗିରି ଆମ୍ଭ ରମ୍ୟ ଭୂମି
ଏଠି ବିହରନ୍ତି ଦେବେ ଗୁପ୍ତଭାବେ ପୁଣି ।
କେବେହେଁ ମୁଁ ଏହି ସ୍ଥାନ ଛାଡ଼ି ନ ପାରଇ
କୋଟି କୋଟି ଯୁଗ ଏଥେ ଗଲାଣି ଯେ ବହି ।
ଗୋଲୋକ ଭୂମି ଏ ଅଟେ ମୋର ରମ୍ୟସ୍ଥଳ
ବିଧାଙ୍କୁ ଘେନିଣ ମୁହିଁ କରଇ ବିହାର ।
ଏ ଭୋଗ ଭୁଞ୍ଜିବା ପାଇଁ ଥୋକେହେବନ ମନ
ପ୍ରତିଦିନ ଭୋଗ ଦେଇ କରିବୁ ପୂଜନ ।

ପ୍ରତିମା ଆଣିଣ ତୁହି ଥୁଅ ବଟତଳ
ସେ ପ୍ରତିମା ଯୋଗେ ତୋର ହେବ ବାଞ୍ଛଫଳ ।
ଆମ୍ଭର ଆଜ୍ଞାରେ ତୁହି ଏହିକ୍ଷଣି ଯିବୁ
ବିଳମ୍ବ କଲେ ନଷ୍ଟମ୍ଭୁ ଉପୁରଣି ନେବୁ ।
ଏତେକ କହିଣ ପ୍ରଭୁ ଅନ୍ତର୍ଦ୍ଧାନ ହେଲେ
ନାରାୟଣ ଯାଇ ବାଙ୍କିମୁହାଣେ ଲଗିଲେ ।
ଚେତଣ ଶବରମଣି ଉଠଇ ତକ୍ଷଣେ
ବିଚାର କରଇ ସେହି ଆପଣାର ମନେ ।
ସ୍ୱପ୍ନଯୋଗେ ମୁହିଁ ବିଶ୍ୱମୂର୍ତ୍ତି ଦେଖିଲଇଁ
ସତ୍ୟ ବୋଲି କି ପ୍ରକାରେ ଏହା ଜାଣିବଇଁ ।
ଯେବଣ ପୁରୁଷ ମୋତେ ଏହା କହିଥିଲେ
ସେ ପୁରୁଷ ବର୍ତ୍ତମାନ କେଉଁଠାକୁ ଗଲେ ।
ମନେ ମନେ ଏହି କଥା ବିଚାରେ ଶବର
ଆଜ୍ଞା ମୋତେ ଦେଇଗଲେ ଦେବଚକ୍ରଧର ।
ଦେବତାଙ୍କସ୍ଥାନ ବୋଲି ଜାଣି ନ ପାରଇ
ଦେଖିଲଇଁ କାଳ ଗଲା ଚତୁର୍ଭୁଜ ହୋଇ ।
ପୁଣ ପୁଣ ଏହି କଥା ବିଚାରେ ମନରେ
ବାଙ୍କିମୁହାଣ ପାଖକୁ ଯିବି ମୁହିଁ ଥରେ ।
ଏତେ ବିଚାରି ଶବର ବାହାର ହୋଇଲା
ବାଙ୍କିମୁହାଣ ପାଖରେ ଉଇତ ମିଳିଲା ।
ଦେଖିଲା ବିଷ୍ଣୁ ପ୍ରତିମା ଗୋଟିଏ ଭାସୁଛି
ଶଙ୍ଖଚକ୍ର ଗଦାପଦ୍ମ ଦେହରେ ବହିଛି ।
କୋଟିଏ ଚନ୍ଦ୍ର କି ସେହିଠାରେ ଅଛି ଉଇଁ
ଏସନେକ ରୂପ ଗୋଟି ତହିଁ ଅଛି ରହି ।
ନାସିକା ଶ୍ରବଣ ଚକ୍ଷୁ କିଛି ଦିଶୁନାହିଁ
ଦେଖିଣ ଶବର ମନେ ବିଚାର କରଇ ।
କେମନ୍ତ ପ୍ରକାରେ କନ୍ଦମୂଳ ଏ ଭକ୍ଷିବ
ଏହି କଥା ଗୋଟି ମୋତେ ଅଟେ ଅସମ୍ଭବ ।
ଶବରର ମନକଥା ଜାଣି ନାରାୟଣ
ଶୂନ୍ୟରେ ଥାଇଣ ପ୍ରଭୁ କହନ୍ତି ବଚନ ।
ପାଦ ପାଣି ନାହିଁ ବୋଲି ଭାବିଲୁ ଶବର
ତୋହର ହସ୍ତ ଲାଗନ୍ତେ ହୋଇବ ବାହାର ।
କିଛି ନ ବିଚାର ତୁହି ମୋତେ ଘେନିଚାଲ
କେମନ୍ତେ ପୂଜିବୁ ବୋଲି ବିଚାରୁ ମନର ।
ମନ୍ତ୍ର କିଛି ଜାଣୁ ନାହିଁ କରୁଅଛୁ ଭୟ
ତହିଁର ବିଚାର ଆମ୍ଭେ କହିବା ଥୋକାଏ ।

ଶିଆଳୀ ପତରେ ଦନା ଗୋଟିଏ କରିବୁ
ଏହିରୂପେ ଦନା ତିନଗୋଟି ସଜାଡ଼ିବୁ ।
ସେ କନ୍ଦମୂଳ ରୋହିଣୀ କୁଣ୍ଡରେ ଧୋଇବୁ
ଦନାରେ ପୂରାଇ ଆମ୍ଭ ଛାମୁରେ ଥୋଇବୁ ।
ହସ୍ତରେ ଧରି କରିବୁ ଆମ୍ଭ ତାକୁ ଗ୍ରାସ
ତାଳି ମାରିଣ ବୋଲିବୁ ଭୁଞ୍ଜ ପୀତବାସ ।
ଚନ୍ଦନ ବୃକ୍ଷରୁ ଖଣ୍ଡେ ଭାଙ୍ଗିଣ ଆଣିବୁ
ମର୍କତ ଶିଳା ଉପରେ ତାହାକୁ ଘଷିବୁ ।
ସେ ଚନ୍ଦନ ଆମ୍ଭ ଅଙ୍ଗେ ବୋଳିବୁ ତୁ ନେଇ
ତୁଳସୀ ଆଦର ଫୁଲ ଶିରେ ଦେବୁ ଥୋଇ ।
ବୃକ୍ଷରୁ ବକଳ ଆଣି ପିନ୍ଧାଇଣ ଦେବୁ
ଏହି ପ୍ରକାରେ ଆମ୍ଭଙ୍କୁ ପୂଜା ତୁ କରିବୁ ।
ରୋହିଣୀ କୁଣ୍ଡ ମଧ୍ୟରୁ ଆଣିଥିବୁ ଜଳ
ସେ ଜଳେ ଆମ୍ଭର ଅଙ୍ଗ କରିବୁ ନିର୍ମଳ ।
ଆଦର କଥା ଗୋଟିଏ କରିବୁ ଶବର
କନ୍ଦମୂଳେ ପକାଇବୁ ତୁଳସୀ ପତର ।
ଏତେକରେ ସନ୍ତୋଷ ଯେ ହେବ ଆମ୍ଭଦେହି
କିଛି ନ ଭାଳ ଆମ୍ଭଙ୍କୁ ନଅ ଏଥୁ ବହି ।
ବିଚାରୁଛୁ ଶ୍ରୀଅଙ୍ଗ ମୁଁ କେମନ୍ତେ ଛୁଇଁବଇଁ
ତୁ ଛୁଇଁଲେ ପୁଲକିତ ହେବ ଆମ୍ଭ ଦେହି ।
ତୁ ଆମ୍ଭ ସେବକ ସିନା ଅଟୁରେ କିରାତ
ତୋହର ଛୁଅନ୍ତେ ଅଙ୍ଗ ହେବ ପୁଲକିତ ।
ଶୂନ୍ୟରେ ଏହି ଶବଦ ଶୁଭିଲାକ ଯହୁଁ
ମନ ମଧ୍ୟରେ ଉସତ ହୋଇଲାକ ତହୁଁ ।
ଜଳର ଭିତରେ ଯେଉଁ ପ୍ରଭୁ ଭାସୁଥିଲେ
ତତକ୍ଷଣେ ଆସିଣ ସେ କୂଳରେ ଲଗିଲେ ।
ଧାଇଁଯାଇଣ ଶବର ଧରେ କୋଳକରି
ବେନି ହସ୍ତେ ଧରି ବକ୍ଷେ ଲଦି ଧୀରେ କରି ।
ଯେତେବେଳେ ସେ ଶବର ପ୍ରଭୁଙ୍କୁ ଛୁଇଁଲା
ପାଦ ପାଣି ତାହାଙ୍କର ସମସ୍ତ ଦିଶିଲା ।
ନାସିକା ଶ୍ରବଣ ଚକ୍ଷୁ ସକଳ ଦିଶଇ
ଚତୁର୍ଭୁଜ ମୂର୍ତ୍ତି ଦେଖାଇଲେ ସବଗ୍ରାହୀ ।
ଘେନିଣ ନୀଳସୁନ୍ଦର ପର୍ବତକୁ ଗଲା
ବଟମୂଳେ ଦିବ୍ୟସ୍ଥାନ ଗୋଟିଏ ରଚିଲା ।
ଜଗତବନ୍ଦ୍ୟ ପ୍ରଭୁଙ୍କୁ ତହିଁରେ ବସାଇ
ଜଳ ନିମନ୍ତେ ରୋହିଣୀ କୁଣ୍ଡକୁ ଚଳଇ ।

ଜଳ ଆଣି ପ୍ରଭୁଙ୍କୁ ସେ ସ୍ନାନ କରାଇଲା
ଗଛରୁ ବକଳ ଆଣି ତାଙ୍କୁ ପିନ୍ଧାଇଲା ।
ଚନ୍ଦନ ଗଛରୁ କାଠ ଖଣ୍ଡିଏ ଭାଙ୍ଗଇ
ମର୍କତ ଶିଳା ଉପରେ ତାହାକୁ ଘଷଇ ।
ପ୍ରଭୁଙ୍କର ଶ୍ରୀଅଙ୍ଗରେ ବୋଳିଲାକ ନେଇ
ତୁଳସୀପତ୍ରଗୁଡ଼ିଏ ତୋଳିଣ ଆଣଇ ।
ପ୍ରଭୁଙ୍କର ମଥାପରେ ଏକ ନେଇ ଦେଲା
ପତ୍ରକର ତିନିଗୋଟି ଦନା ନିର୍ମାଣିଲା ।
କନ୍ଦମୂଳଗୁଡ଼ିଏ ସେ ଖୋଳିଣ ଆଣଇ
ରୋହିଣୀ କୁଣ୍ଡରେ ତାକୁ ଯତନେ ଧୁଅଇ ।
ତୁଳସୀର ପତ୍ର ସେହି ଦନାରେ ପକାଇ
ବୋଲଇ ମନ୍ତ୍ର ମୁହିଁ ତ କିଛି ନ ଜାଣଇ ।
ସନ୍ତୋଷ ହୋଇଣ ଏହା ଭୁଞ୍ଜ କମଳାକ୍ଷ
ମୋହର ଦୋଷ କ୍ଷମିବ ନୋହିବ ବିମୁଖ ।
ତହୁଁ ସନ୍ତୋଷ ଲଭିଣ ଦେବ ନାରାୟଣ
ଆନନ୍ଦ ମନରେ ତାହା କରନ୍ତି ଭୋଜନ ।
ଦେଖିଣ ଶବର ମନେ ଆନନ୍ଦ ଲଭିଲା
ନମସ୍କରି ବୋଲିଣ ସେ ପାଦରେ ଶୋଇଲା ।
ରବି ଅସ୍ତ ହେଲା ସନ୍ଧ୍ୟା ଆସି ହେଉଅଛି
ବୋଇଲା ଆଜ୍ଞା ହୋଇଲେ ଯିବି ଗିରିବସ୍ତି ।
ତାକୁ ହସ୍ତ ଟାରିଦେଲେ ଦେବ ଗିରିଧର
ଆଜ୍ଞା ପାଇଣ ଶବର ଗଲା ନିଜପୁର ।
ଶୁଣିଲଟିକ ହୋ ପରୀକ୍ଷିତ ନୃପବର
ଏସନକ ପରକାରେ ଦେବ ଚକ୍ରଧର ।
ପ୍ରତିଦିନ ସେ ଶବର ଆସିଣ ପୂଜଇ
ଶ୍ରୀଜଗନ୍ନାଥ ଭୁଞ୍ଜନ୍ତି ଆନନ୍ଦିତ ହୋଇ ।
ଏହିପରି କେତେଦିନ ତହିଁ ବହିଗଲା
ଶବର ପୂଜନ୍ତେ ମନେ ସନ୍ତୋଷ ଜନ୍ମିଲା ।
ଗୋବିନ୍ଦଙ୍କୁ ସେ ଶବର ନିରତେ ପୂଜଇ
କଳିଯୁଗୁଁ ଦଶସହସ୍ର ବର୍ଷ ଗଲା ବହି ।
ଶୁଣିକରି ପରୀକ୍ଷିତ କୃତକୃତ୍ୟ ହେଲା
ମୁନିଙ୍କ ଚରଣ ତଳେ ଦଣ୍ଡବତ କଲା ।
ଶୁଣିଲଇଁ ମୁହିଁ ସାତଖଣ୍ଡ ହରିବଂଶ
ପାପ ଅତିପାତକାଦି ହେଲା ମୋର ଧ୍ୱଂସ ।
ତୁମ୍ଭ ପ୍ରସାଦେ କୃତାର୍ଥ ହୋଇଲଇଁ ମୁହିଁ
ଆବର ଭବିଷ୍ୟ କଥା ମୁହିଁ ପୁଛୁଅଇଁ ।

ମୁନି ବୋଇଲେ ଭବିଷ୍ୟ ପଚାରିଲୁ ମୋତେ
ଯାହା ଦୃଶ୍ୟ ହେଲା କିଛି କହି ଦେବା ତୋତେ
ଏହି ପରକାରେ କେତେ ଦିନ ଗଲା ବହି
ପ୍ରତ୍ୟହ ଶବର ନୀଳଗିରିକି ଆସଇ
କନ୍ଦମୂଳ ଭୋଗ ଦେଇ ବିଷ୍ଣୁ ପୂଜାକରେ
ଭୁଞ୍ଜନ୍ତି ଶ୍ରୀଜଗନ୍ନାଥ ଆନନ୍ଦ ମନରେ ।
ଦିନକରେ ତାର ଭାର୍ଯ୍ୟା ପଚାରଇ ତୋଷେ
ତୋ ଦେହେ ନିତ୍ୟ ଚନ୍ଦନ ଗନ୍ଧ କର୍ପୂର ବାସେ
ତହୁଁ ଶବର ବୋଇଲା ଶୁଣ ପ୍ରାଣସହି
ନୀଳଗିରି ବନେ ଜଗନ୍ନାଥଙ୍କୁ ପୂଜଇ ।
ଏହି କଥା ଗୋଟି ପକ୍ଷି ନ ଜାଣନ୍ତି ଆନ
ତୋହର ଆଗେ କହିଲି ଗୁପତ ବଚନ ।
ସ୍ତ୍ରୀ ସେ ବୋଇଲା ମୋତେ ତା ଦେଖାଇବ ନେଇ
ଶବରୀକି ଘେନିଣ ସେ ନୀଳଗିରି ଯାଇ ।
ପ୍ରବେଶିଣ ନିତ୍ୟ କର୍ମ ସମସ୍ତ ସାରିଲା
ରୋହିଣୀ କୁଣ୍ଡକୁ ଯାଇ ଜଳ ସେ ଆଣିଲା ।
ଜଳ ନେଇ ପ୍ରଭୁଙ୍କର ଶିରରେ ଢାଳଇ
ଖଣ୍ଡେ ନୂତନ ବକଳ ତାହାଙ୍କୁ ପିନ୍ଧାଇ ।
ଅଗୁରୁ ଚନ୍ଦନ ଘଷି ଲେପେ ଶ୍ରୀଅଙ୍ଗରେ
ତୁଳସୀର ପତ୍ର ଆଣି ଦିଏ ମସ୍ତକରେ ।
ତିନିଗୋଟି ଦନାରେ ସେ ଦିଅଇ ଭୋଜନ
ଆପଣେ ତାହା ଭୁଞ୍ଜନ୍ତି ପ୍ରଭୁ ନାରାୟଣ ।
ଖଣ୍ଡେଦୂରେ ଥାଇ ତାହା ଶବରୀ ଦେଖିଲା
ଚାରି କୋଟି ଜନ୍ମ ପାପ ଦହନ ହୋଇଲା ।
ଏଥୁ ଅନନ୍ତରେ ରାୟେ ଶୁଣ ଦିବ୍ୟ ରସ
ଶବର ଶବରୀ ଦୁହେଁ ଗଲେ ନିଜ ବାସ ।
ରଜନୀ ପ୍ରଭାତେ ପୁଣି ଅଇଲା ଶବର
ନିତ୍ୟକର୍ମ ବେଭାରେ ସେ ପୂଜେ ଦାମୋଦର
ତିନି ଦନା କନ୍ଦମୂଳ ସମ୍ମୁଖରେ ଥୋଇଲା
ଏକାନ୍ତ ଭକ୍ତିରେ ତାହା ସମର୍ପଣ କଲା ।
ପ୍ରତିଦିନ ଶ୍ରୀହସ୍ତରେ ନେଉଥାନ୍ତି ହରି
ସେ ଦିନ ନ ନେଲେ ତାହା ରହିଲା ସେପରି
ଏହା ଦେଖି ଦୁଃଖମନେ ବୋଲଇ କିରାତ
ପ୍ରତ୍ୟହ ଶ୍ରୀହସ୍ତ ପାତି ଭୁଞ୍ଜନ୍ତି ଅଚ୍ୟୁତ ।
ମୁଁ ତ ଜାଣିବାରେ କରିନାହିଁ ଅପରାଧ
ଆଜ କିମ୍ପାଁ ନ ଭୁଞ୍ଜିଲେ ପ୍ରଭୁ କରି କ୍ରୋଧ ।

ଶବର ବଚନ୍ତୁ ଭାବ ଜାଣି ନାରାୟଣ
ଶୂନ୍ୟରେ ଥାଇଣ ପ୍ରଭୁ କହନ୍ତି ବଚନ ।
ଶିଘ୍ରଗତେ ଇଚ୍ଛା ଆମ୍ଭର ହେଲା ଏତେକାଳ
ଏଥିପାଇଁ ଚିନ୍ତା ତୁମ୍ଭ ନ କର ଶବର ।
ଶୂନ୍ୟବାଣୀ ଶୁଣି ଶାନ୍ତ ଶବର ହୋଇଲା
ଗୋବିନ୍ଦଙ୍କର ଚରଣେ ଚିତ୍ତ ଲଗାଇଲା ।
ଯେ ସମୟେ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରଭୁ ଆଜ୍ଞା ଦେଲେ
ନୀଳଗିରିରେ ଦେଉଳ ତୋଳାଅ ତୁ ଭଲେ
ଆଜ୍ଞା ପାଇ ନରପତି ବହନ ଉଠିଲା
ଆଠ ସୈନ୍ୟ ସଜ କରି ବେଗେ ଦାହାରିଲା
ନୀଳଗିରି ପାଞ୍ଚକୋଶ ପ୍ରଦକ୍ଷିଣ କଲା
ବୁଲି ବୁଲିଣ ଅପୋଡ଼ା ଭୂମି ଠିକ କଲା ।
ଅପୋଡ଼ା ଭୂମି ନୃପତି ଚିହ୍ନି ଠାବ କରି
ପ୍ରାସାଦ ଗୋଟିଏ ତୋଳାଇଲେ ଦଣ୍ଡଧାରୀ
ସେହି କ୍ଷେତ୍ର ଅଟଇ ଯେ ଶଙ୍ଖର ଆକାର
ଘେରା ମାଳାରେ ଦେଉଳ ତୋଳାଇ ଅପାର
ଅଟ୍ଟାଳିକା ଦେଉଳ ସେ ନିର୍ମା କରାଇଲା
ଦେବତା ନାହାନ୍ତି ବୋଲି ମନରେ ଭାଳିଲା
ଯେଉରୂପ ଶବର ବଟମୂଳେ ପୂଜୁଥିଲା
ସେହି ପ୍ରତିମା ଗୋଟିକ ଗୁପତ ହୋଇଲା ।
ସେ ଚନ୍ଦନ କାଷ୍ଠରେ ଦାରୁବ୍ରହ୍ମ ହେଲେ
ବାଙ୍କି ମୁହାଁଣ ସମୁଦ୍ରେ ଯାଇଣ ଲାଗିଲେ ।
ନୃପତିଙ୍କି ସ୍ୱପନରେ କହିଲେ ଶ୍ରୀଧର
ମୋତେ ଏ ସ୍ଥାନରୁ ନେଇ ଦେଉଳରେ ଭର
ସେ ଦାରୁକୁ ରତ୍ନସିଂହାସନେ ସେ ଥୋଇଲେ
ଆପଣା ଇଚ୍ଛାରେ ପ୍ରଭୁ ନିର୍ମିତ ହୋଇଲେ ।
ଚତୁର୍ଦ୍ଧା ମୂରତି ଚିହ୍ନି ହେଲେ ଭଗବାନ
ବଳଭଦ୍ର ଜଗନ୍ନାଥ ଭଦ୍ରା ସୁଦର୍ଶନ ।
କପାଟ ଫିଟାଇ ରଜା ନୟନେ ଦେଖିଲା
କୋଟି କୋଟି ଜନମର ପାତକ ଧ୍ୱଂସିଲା ।
ଛତିଶ ନିୟୋଗ କରି ଭୋଗ ସେ ଖଞ୍ଜାଇ
ଦର୍ପ ଧୂପ ଖାଞ୍ଚ ଅବକାଶକୁ କରାଇ
ସେ କ୍ଷେତ୍ରର ଜଗୁଆଳ ହେଲେ ଛଅ ଜଣ
ମାର୍କଣ୍ଡେଶ୍ୱର ରହିଲେ ଉତ୍ତର ପାଶେଣ ।
ଯମେଶ୍ୱର ରହି ଶଙ୍ଖ ଦକ୍ଷିଣ ବଗରେ
ଲକ୍ଷ୍ମେଶ୍ୱର ରହିଲେ ଶଙ୍ଖର ମୁଣ୍ଡରେ ।
ବାଲୁକେଶ୍ୱର ରହିଲେ ଶଙ୍ଖର ନାଭିରେ
କପାଳମୋଚନ ରହି ଶଙ୍ଖର ପେଟରେ ।
ନୀଳକଣ୍ଠେଶ୍ୱର ରହି ଶଙ୍ଖର ମଧ୍ୟରେ
ଶଙ୍ଖର ଛଅ ସ୍ଥାନରେ ଛ ଲିଙ୍ଗ ରହିଲେ ।
ଏମନ୍ତେଣ ପ୍ରଭୁଙ୍କର ନିଜସ୍ଥାନେ ଖଟି
ସେବକ ରହିଲେ ଦେବ ତିନିଶହ କୋଟି
ନୀଳାଚଳେ ଜଗନ୍ନାଥ ଏମନ୍ତେ ରହିଲେ
ଯେ ପରୀକ୍ଷ ଭବିଷ୍ୟ ତୁ ଶୁଣିଲୁ କି ଭଲେ ।
ଆଗତ ଭବିଷ୍ୟ କଥା କହି ମହାମୁନି
ଅନ୍ତର୍ଦ୍ଧାନ ହେଲେ କୃଷ୍ଣ ନାମ ଗୁଣ ଗୁଣି ।
ବନ୍ଦଇ ଶ୍ରୀ ଜଗନ୍ନାଥ କମଳାର ସାଇଁ
ଆରତ ଜନଙ୍କ ଦୁଃଖ ଫେଡ଼ ଭାବଗ୍ରାହୀ ।
ରତ୍ନ ସିଂହାସନ ପରେ ବିଜେ ଚକ୍ରଧର
ଶଙ୍ଖ ଚକ୍ର ଗଦା ପଦ୍ମ ଧରିଛ ହସ୍ତର ।
ଭକ୍ତ୍ୟ ଜନଙ୍କଇ ଦୁଃଖ ଦେଖି ଜଗନ୍ନାଥ
ତାଙ୍କ ଦୁଃଖରେ ଦୁଃଖିତ ହେଉ ତୁ ନିଶ୍ଚିତ
ଯେଣୁ ଦୀନ ଜନଙ୍କର ଦୁଃଖ ଖଣ୍ଡୁ ତୁମ୍ଭ
ଦୀନବନ୍ଧୁ ନାମ ଗୋଟି ତୋହର ଅଟଇ ।
ମୁହିଁ ଅତି ଦୀନହୀନ ଅଟେ ଅରକ୍ଷିତ
ଜଗନ୍ନାଥ ବିନୁ ନୋହେ କାହାର ଆଶ୍ରିତ ।
ଅଧମ ଦେଖିଣ ମୋତେ ତୁମ୍ଭେ ଦୟା କଲ
ମୁକତି ପାଇବା ପଥ ଆଣି ଦେଖାଇଲ ।
ରଣପୁର ମଧ୍ୟ ଗ୍ରାମେ ବାସ କରିଥାଇ
ପଦ୍ମ ନରେନ୍ଦ୍ର ପୋଷନ୍ତି ଅନ୍ନ ବସ୍ତ୍ର ଦେଇ
ଶୂଦ୍ର ମଧ୍ୟରେ ଗଣନା ମୁହିଁ ତ ଅଟଇ
ଭାଷା ଗୋଟି ପାଇଅଛୁ ଗୋପ କୁଳେ ଥାଇ
ସବୁ ଗୋପାଳ ମାନଙ୍କୁ ନାମ ଭାଷା ହୁଏ
ଶ୍ରୀକୃଷ୍ଣ ପାଦ ପଦ୍ମରେ ଚିତ୍ତ ମୋର ଥାଏ ।
ତେଣୁ ଗୋପାଳ କୁଳରେ ବୋଲାଇ ମହନ୍ତ
ଦୟାକରିଛନ୍ତି ମତେ କମଳାର କାନ୍ତ ।
ଗୋପୀନାଥ ଚରଣକୁ ସଦା ମୋର ଆଶ
ଅଚ୍ୟୁତ ଦାସ କହିଲୁ ଭାଷ ଗୀତବାସ ।
ସପ୍ତଖଣ୍ଡ ଏହିଠାରେ ହୋଇଲା ସମ୍ପୂର୍ଣ୍ଣ
ଦୋଷ ମୋର ନ ଧରିବ ଆହେ ସୁଜ୍ଞଜନ ।

## ସପ୍ତମ ଖଣ୍ଡ ସମାପ୍ତ

ମୁଦ୍ରାକର—ଶ୍ରୀ କମଳଲୋଚନ ଗରବଡୁ, ଶ୍ରୀରାଧାରମଣ ପ୍ରେସ, କଟକ—୧୯୮୬